ତରୁଣ ଭାରତୀ

# ତୋତ୍ତୋ-ଚ୍ୟାନ୍

ତେତ୍‌ସୁକୋ କୁରୋୟାନାଗି



ତରୁଣ ଭାରତୀ

# ତୋତୋ-ଚାନ୍

## ଝରକା ପାଖର କୁନି ଝିଅଟି




ତେତ୍‌ସୁକୋ କୁରୋୟାନାଗି

ଅନୁବାଦ

ବିନୟକୃଷ୍ଣ ପଟ୍ଟନାୟକ

ନିଖିଳ ମୋହନ ପଟ୍ଟନାୟକ

ଚିତ୍ର

ଚିହିରୋ ଇୱାଶାକି






ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ଏହି ପୁସ୍ତକଟି ପରିବେଶ ସହାୟକ ପୁନଃ ଉତ୍ପାଦିତ କାଗଜରେ ମୁଦ୍ରିତ ।

ଏହି ଓଡ଼ିଆ ଅନୁବାଦଟି ଡରୋଥି ବ୍ରିଟନ୍‌ଙ୍କ ଦ୍ୱାରା ହୋଇଥିବା ମୂଳ ଜାପାନୀ ବହିର ଇଂରାଜୀ ରୂପାନ୍ତର ଉପରେ ଆଧାରିତ ।

ISBN 81-237-1815-2

1996 (ଶକାବ୍ଦ 1918)

Totto-chan (*Oriya*)
ଟ 38.00
ନିର୍ଦ୍ଦେଶକ, ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110016 କର୍ତ୍ତୃକ ପ୍ରକାଶିତ ।

# ସୂଚୀପତ୍ର

# ମୁଖବନ୍ଧ

ତୋମୋଏ ନାମକ ସ୍କୁଲ ଓ ତା'ର ପ୍ରତିଷ୍ଠାତା ତଥା ପରିଗ୍ରାଳକ ସୋସାକୁ କୋବାୟାଶିଙ୍କ ବିଷୟରେ ଲେଖିବା ପାଇଁ ଅନେକ ଦିନରୁ ମୋର ବଡ ଇଚ୍ଛା ଥିଲା ।

ଏଥିରୁ କିଛି ବି ମୋର ମନଗଢା ନୁହେଁ । ଏସବୁ ଘଟଣା ସତରେ ଘଟିଥିଲା ଓ ଭାଗ୍ୟକୁ ସେଥିରୁ ମୁଁ ଅନେକ କିଛି ମନେ ରଖିପାରିଛି । ଏଗୁଡିକୁ ଲେଖିବା ଫଳରେ ଗୋଟିଏ ବାକିଆ ଶପଥକୁ କିଛିଦୂର ପୂରଣ କରିହେବ ବୋଲି ମୁଁ ଭାବୁଛି । ପିଲାବେଳେ ମୁଁ ଶ୍ରୀ କୋବାୟାଶିଙ୍କୁ କଥା ଦେଇଥିଲି ଯେ ବଡ ହେଲେ ମୁଁ ତୋମୋଏରେ ପଢାଇବି । କିନ୍ତୁ ଏହି ଶପଥଟି ପୂରା କରିବା ସମ୍ଭବ ହୋଇନାହିଁ । ତାହା ବଦଳରେ ଶ୍ରୀ କୋବାୟାଶିଙ୍କ ଚମତ୍କାର ବ୍ୟକ୍ତିତ୍ୱ, ପିଲାଙ୍କ ପାଇଁ ଗଭୀର ସ୍ନେହ ଓ ତାଙ୍କ ଶିକ୍ଷାର ଧାରା ବିଷୟରେ ମୁଁ ଯେତେ ଅଧିକ ସମ୍ଭବ ଲୋକଙ୍କୁ ଜଣାଇବାକୁ ଚେଷ୍ଟା କରିଛି ।

1963 ମସିହାରେ କୋବାୟାଶି ମରିଗଲେ । ଆଜି ଯଦି ସେ ବଞ୍ଚିଥା'ନ୍ତେ ମୋତେ ଆହୁରି କେତେ କ'ଣ କହି ପାରିଥା'ନ୍ତେ । ମୁଁ ଲେଖିଲାବେଳେ ବୁଝିପାରୁଛି ଯେ ଅନେକ ଘଟଣା ମୋ ପାଇଁ ପିଲାବେଳର ମଧୁର ସ୍ମୃତି ଭଳି ରହିଛି । କିନ୍ତୁ ସେସବୁ ପ୍ରକୃତରେ ଥିଲା ଶ୍ରୀ କୋବାୟାଶିଙ୍କର ସୁଚିନ୍ତିତ ଯୋଜନା । ତା'ପଛରେ ତାଙ୍କର କିଛି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିଥିଲା । ବେଳେବେଳେ ମୁଁ ଭାବେ, ''ଶ୍ରୀ କୋବାୟାଶି ବୋଧେ ଏଇଆ ଭାବିଥିବେ'' କିମ୍ବା, ''ଆରେ, ସେ ଏଭଳି ଭାବୁଥିଲେ !'' ତାଙ୍କର ପ୍ରତି କଥାର

ନୂଆ ଅର୍ଥ ବୁଝି ମୁଁ ଆଶ୍ଚର୍ଯ୍ୟ ହେଉଛି । ପରମ ସନ୍ତୋଷ ପାଇବା ସାଙ୍ଗେ ସାଙ୍ଗେ କୃତଜ୍ଞ ମଧ୍ୟ ହେଉଛି ।

ଆଉ ମୋ ପାଇଁ ତାଙ୍କର କଥା , ''ତୁମେ ସତରେ ଜଣେ ସୁନାଝିଅ, ଜାଣିଛ ନା ?'' ମୋତେ ଜୀବନରେ ଆଗେଇନେବା ପାଇଁ କେତେ ଯେ ଜରୁରୀ ଥିଲା ତା', କଳନା କରିବା ସମ୍ଭବ ନୁହେଁ । ମୁଁ ଯଦି ତୋମୋଏକୁ ଯାଇନଥା'ନ୍ତି ବା ଶ୍ରୀ କୋବାୟାଶିଙ୍କୁ ଭେଟିନଥା'ନ୍ତି ମୁଁ ବୋଧେ ସବୁଦିନ ପାଇଁ ''ଗନ୍ଧିଆ ଝିଅ'' ହୋଇ ରହିଯାଇ ଥା'ନ୍ତି । ହୀନମନ୍ୟତା ଓ ଗୋଳମାଳିଆ ଚିନ୍ତାର ଶିକାର ହୋଇଯାଇଥା'ନ୍ତି ।

1945 ମସିହାରେ ଟୋକିଓ ସହର ଉପରେ ବୋମା ମାଡବେଳେ ତୋମୋଏ ଜଳି ନଷ୍ଟ ହୋଇଯାଇଥିଲା । ଶ୍ରୀ କୋବାୟାଶି ତାଙ୍କ ନିଜ ପଇସାରେ ଏହି ସ୍କୁଲଟି ଗଢ଼ିଥିଲେ । ଏହାକୁ ପୁଣି ଗଢ଼ିବାକୁ ଅନେକ ସମୟ ଲାଗିଥିଲା । ଯୁଦ୍ଧ ପରେ ସେହି ପୁରୁଣା ଜାଗାରେ ସେ ଗୋଟିଏ ପ୍ରାକ୍ ପ୍ରାଥମିକ ଶିକ୍ଷା ଅନୁଷ୍ଠାନ ଆରମ୍ଭ କରିଥିଲେ । ସେ ସମୟରେ ସେ କୁନି-ଟାଚି ସଙ୍ଗୀତ ମହାବିଦ୍ୟାଳୟରେ ଶିଶୁ ଶିକ୍ଷା ବିଭାଗର ମୂଳଦୁଆ ପକାଇବାରେ ସାହାଯ୍ୟ କରୁଥିଲେ । ସେଠାରେ ସେ ଇଉରିଦ୍‌ମିକ୍ସ୍ ମଧ୍ୟ ପଢ଼ାଉଥିଲେ ଏବଂ କୁନି-ଟାଚି ପ୍ରାଥମିକ ସ୍କୁଲକୁ ଗଢ଼ିବାରେ ଲାଗିପଡିଥିଲେ । ଅଣସ୍ତରି ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା । ତାଙ୍କର ଆଦର୍ଶ ସ୍କୁଲକୁ ପୁଣି ଗଢ଼ିବାର ସ୍ୱପ୍ନ ଅପୂରା ରହିଗଲା ।

ତୋମୋଏ ଗାକୁଏନ୍ ଥିଲା ଟୋକିଓ ସହରର ଦକ୍ଷିଣ ପଶ୍ଚିମ ଭାଗରେ । ଟୋୟୋକୋ ରେଳ ଲାଇନର ଜିଉଗାଓକା ଷ୍ଟେସନଠାରୁ ଏହା ତିନି ମିନିଟର ଚଲାବାଟ ଥିଲା । ଏବେ ଏହି ଜାଗାଟିରେ 'ମୟୂର' ବଜାର ଚାଲିଛି । କେବଳ ପୁରୁଣା ସ୍ମୃତିଦ୍ୱାରା ଟାଣି ହୋଇ ଏବେ ଦିନେ ମୁଁ ସେହି ଜାଗାକୁ ଯାଇଥିଲି । ଯଦିଓ ମୁଁ ଜାଣିଥିଲି ଯେ ସେଠି ସ୍କୁଲ ବା ହତାର ଚିହ୍ନ କିଛି ବି ନାହିଁ । ଆଗରୁ ଯେଉଁଠି ରେଳଡବାରେ ଶ୍ରେଣୀ ଚାଲିଥିଲା ଓ ଖେଳପଡିଆ ଥିଲା ମୁଁ ସେ ପାଖ ଦେଇ ଧୀରେ ଧୀରେ ଗାଡି ଚଳାଉଥାଏ । ଗାଡିଷ୍ଟାଣ୍ଡ ଜଗୁଆଳ ମୋ ଗାଡି ଦେଖି ପାଟି କଲା, ''ଆସ ନାହିଁ, ଆସ ନାହିଁ । ଷ୍ଟାଣ୍ଡରେ ଆଉ ଜାଗା ନାହିଁ ।''

କହିବାକୁ ଇଚ୍ଛା ହେଲା , ''ମୁଁ ଗାଡି ରଖିବାକୁ ଆସିନି । କେବଳ ମୋ ସ୍ମୃତିକୁ ଉଖାରୁଛି ।'' କିନ୍ତୁ ସେ କିଛି ବୁଝି ପାରିନଥା'ନ୍ତା । ତେଣୁ ମୁଁ ଚାଲିଗଲି । କିନ୍ତୁ ମୋର ମନ ମରିଗଲା ଓ ଆଖିରୁ ଲୁହ ବୋହିଗଲା ।

ମୁଁ ନିଶ୍ଚିତ ଯେ ପୃଥିବୀ ସାରା ଅନେକ ଭଲ ଶିକ୍ଷକ ଅଛନ୍ତି । ନିଜର ଉଚ୍ଚ ଆଦର୍ଶ ଓ ପିଲାଙ୍କ ପାଇଁ ଗଭୀର ସ୍ନେହକୁ ନେଇ ଆଦର୍ଶ ସ୍କୁଲ ଗଢ଼ିବା ପାଇଁ ସ୍ୱପ୍ନ ଦେଖନ୍ତି । ଆଉ ମୁଁ ଜାଣିଛି ଏହି ସ୍ୱପ୍ନକୁ ସାକାର କରିବା କେତେ କଷ୍ଟର କଥା । ବର୍ଷ ବର୍ଷର ପଢ଼ା ଓ ଚିନ୍ତା ପରେ ଶ୍ରୀ କୋବାୟାଶି 1937 ମସିହାରେ ତୋମୋଏ ଆରମ୍ଭ କରିଥିଲେ । 1945 ମସିହାରେ ଏହା ପୋଡି ଯାଇଥିଲା, ତେଣୁ ତା'ର ଜୀବନ ଅଳ୍ପ ଦିନର ଥିଲା ।

ମତେ ଲାଗୁଛି ଯେ ମୁଁ ଯେଉଁ ସମୟରେ ସେଠାରେ ପଢୁଥିଲି ସେତେବେଳେ

ଶ୍ରୀ କୋବାୟାଶିଙ୍କ ଉତ୍ସାହ ସବୁଠାରୁ ଅଧିକ ଥିଲା । ତାଙ୍କ ଯୋଜନାଗୁଡ଼ିକ ପୂରା ବିକଶିତ ହୋଇସାରିଥିଲା । ଯୁଦ୍ଧ ଯୋଗୁଁ ଏ ବିରାଟ କ୍ଷତି ନହୋଇଥିଲେ କେତେ ଯେ ଅଧିକ ପିଲା ତାଙ୍କ ଯତ୍ନ ଓ ସ୍ନେହ ପାଇ ପାରିଥା'ନ୍ତେ ସେ କଥା ଭାବିଲେ ମୋତେ ବହୁତ ଖରାପ ଲାଗେ । ଏହି ବହିଟିରେ ମୁଁ ଶ୍ରୀ କୋବାୟାଶିଙ୍କ ଶିକ୍ଷା ପଦ୍ଧତିକୁ ବୁଝାଇବାକୁ ଚେଷ୍ଟା କରିଛି । ସେ ବିଶ୍ୱାସ କରୁଥିଲେ ଯେ ପ୍ରତ୍ୟେକ ପିଲା ସ୍ୱାଭାବିକ ଭାବରେ ଭଲ ଗୁଣ ନେଇ ଜନ୍ମ ହୁଏ । ତା'ର ପରିବେଶ ଓ ବଡଙ୍କର ପ୍ରଭାବ ଠିକ ନଥିଲେ ଏହା ଅତି ସହଜରେ ନଷ୍ଟ ହୋଇଯାଏ । ପିଲାଙ୍କର ଭଲ ଗୁଣକୁ ଚିହ୍ନିବା ଓ ବଢାଇବା ତାଙ୍କର ଲକ୍ଷ୍ୟ ଥିଲା, ଯେପରି ଏହି ପିଲାମାନେ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ନେଇ ବଢି ଉଠିବେ ।

ଶ୍ରୀ କୋବାୟାଶି ସ୍ୱାଭାବିକତାକୁ ବେଶୀ ମୂଲ୍ୟ ଦେଉଥିଲେ ଏବଂ ଗ୍ରହୁଁଥିଲେ ଯେ ପ୍ରାକୃତିକ ଭାବରେ ପିଲାଙ୍କର ବିକାଶ ହେଉ । ପ୍ରକୃତିକୁ ବି ସେ ବହୁତ ଭଲ ପାଉଥିଲେ । ତାଙ୍କ ସାନ ଝିଅ ମିୟୋ-ଗ୍ୱନ ମତେ କହୁଥିଲା ଯେ ତା'ର ପିଲାଦିନେ ଶ୍ରୀ କୋବାୟାଶି ତାକୁ ବୁଲେଇ ନେବାବେଳେ କହୁଥିଲେ , ''ଗ୍ୱଲ, ଆମେ ପ୍ରକୃତିର ଛନ୍ଦଗୁଡ଼ିକୁ ଖୋଜିବା ।''

ବଡ ଗଛ ପାଖକୁ ନେଇ ସେ ତାକୁ ଦେଖାଇବେ ପବନରେ ପତ୍ର ଓ ଡାଳ କିପରି ଦୋହଲୁଛନ୍ତି । ପତ୍ର, ଡାଳ ଓ ଗଣ୍ଡି ଆଦିର ସମ୍ପର୍କକୁ ସେ ବୁଝାଇଦେବେ । ପୁଣି ପବନର ବେଗ ସହିତ ପତ୍ର ହଲିବା ବଦଳୁଥିବା କଥା ମଧ୍ୟ ଦେଖାଇଦେବେ । ସ୍ଥିର ହୋଇ ଠିଆ ହୋଇ ସେମାନେ ଏଭଳି କେତେ କ'ଣ ଲକ୍ଷ୍ୟ କରିବେ । ପବନ ବହୁନଥିଲେ ସେମାନେ ଟିକିଏ ପବନ ହେବା ଯାଏଁ ମୁଣ୍ଡ ଟେକି ଅପେକ୍ଷା କରିବେ । ଖାଲି ପବନ ନୁହେଁ, ନଦୀକୁ ମଧ୍ୟ ସେମାନେ ଦେଖୁଥିଲେ । ପାଖରେ ବୋହୁଥିବା ତାମା ନଦୀ କୂଳକୁ ଯାଇ ସେମାନେ ପାଣିର ସୁଅକୁ ଗ୍ରହିଁ ରହୁଥିଲେ । ମିୟୋ-ଗ୍ୱନ କହୁଥିଲା ଯେ ଏସବୁ କାମ ତାଙ୍କୁ କେବେ ବି ଚିଟା ଲାଗୁନଥିଲା ।

ପାଠକମାନେ ଆଶ୍ଚର୍ଯ୍ୟ ହେଉଥିବେ ଯେ ଯୁଦ୍ଧ ସମୟରେ ଏପରି ମୁକ୍ତ ଚିନ୍ତାଧାରାର ଅଣପାରମ୍ପରିକ ସ୍କୁଲଟିଏ ଚଳାଇବାକୁ ଅନୁମତି ମିଳିଲା କିପରି ? ପ୍ରକୃତରେ ଶ୍ରୀ କୋବାୟାଶି ପ୍ରଗ୍ୱରକୁ ଭଲ ପାଉନଥିଲେ । ଯୁଦ୍ଧ ଆଗରୁ ମଧ୍ୟ ଏହାର କୌଣସି ଫଟୋ ବା ବିଶେଷତା ଉପରେ ଲେଖା ପ୍ରକାଶ ପାଉନଥିଲା । ତେଣୁ ପଗ୍ୱଶରୁ କମ ପିଲାଙ୍କର ଏପରି ସ୍କୁଲଟି ଉପରେ କାହାରି ଆଖି ପଡିନଥିଲା । ଆଉ ଏକ କାରଣ ହୋଇପାରେ ଯେ ଶିକ୍ଷା ମନ୍ତ୍ରଣାଳୟରେ ଶିକ୍ଷାବିତ କୋବାୟାଶିଙ୍କ ପାଇଁ ବେଶ ସମ୍ମାନ ଥିଲା ।

ପ୍ରତିବର୍ଷ ନଭେମ୍ବର 3 ତାରିଖରେ ସ୍କୁଲର ସେହି ଆକର୍ଷଣୀୟ ସ୍ପୋର୍ଟସ୍ ଦିନର ମଧୁର ସ୍ମୃତି ମନେ ପଡିଯାଏ । ତୋମୋଏରୁ ବାହାରିଥିବା ପିଲାମାନେ ସେହି ଖୁସିଦିନରେ କୁହେନ୍‌ବୁତ୍‌ସୁ ମନ୍ଦିରରେ ଏକାଠି ହୁଅନ୍ତି । ଏବେ ସମସ୍ତେ ଗ୍ୱଳିଶ ବର୍ଷ ଟପିଲେଣି, ଅନେକ ପଗ୍ୱଶ ପାଖେଇଲେଣି । ଆମର ଛୁଆମାନେ ବି ବଡ ହେଲେଣି, ତଥାପି ସେହି ପୁରୁଣା ଦିନର ଡାକ ନାଆଁରେ ଆମେ ଡକାଡକି ହେଉ । ଶ୍ରୀ କୋବାୟାଶି

ଛାଡି ଯାଇଥିବା ଅନେକ ମଧୁର ସ୍ମୃତିରୁ ଏହି ମିଳନ ଗୋଟିଏ ।

ହଁ, ଏକଥା ସତ ଯେ, ପ୍ରଥମ ପ୍ରାଥମିକ ସ୍କୁଲରୁ ମୋତେ କାଢି ଦିଆଯାଇଥିଲା । ସେ ସ୍କୁଲ ବିଷୟରେ ମୋର ବିଶେଷ କିଛି ମନେନାହିଁ, ମା' ମୋତେ ବାଜାବାଲା ଓ ଡେସ୍କ ବିଷୟରେ କହୁଥିଲେ । ମୁଁ ବିଶ୍ୱାସ କରି ପାରିଲିନାହିଁ ଯେ ମୋତେ ସ୍କୁଲରୁ ତଡି ଦିଆଯାଇଥିଲା । ମୁଁ କ'ଣ ସତରେ ଏତେ ଦୁଷ୍ଟ ଥିଲି ? କିନ୍ତୁ ପାଞ୍ଚବର୍ଷ ତଳେ ମୁଁ ଗୋଟିଏ ଦୂରଦର୍ଶନ କାର୍ଯ୍ୟକ୍ରମରେ ଜଣଙ୍କୁ ଭେଟିଲି । ସେ ମୋତେ ସେତେବେଳେ ଚିହ୍ନିଥିଲେ । ସେ ମୋ ଉପର ଶ୍ରେଣୀର ଶିକ୍ଷୟିତ୍ରୀ ଥିଲେ । ତାଙ୍କ କଥା ଶୁଣି ମୁଁ ଅବାକ ହୋଇଗଲି ।

ସେ କହିଲେ , "ତୁମେ ପାଖ କୋଠରୀରେ ଥିଲ । ଯେବେ ବି ସେ ବାଟରେ ଯାଉଥିଲି ଦୁଷ୍ଟାମୀ ପାଇଁ ତୁମକୁ ବାରଣ୍ଡାରେ ଛିଡା କରାଯାଇଥିବାର ଦେଖିଛି । ତୁମେ ସବୁବେଳେ ଅଟକାଇ ପଚାରୁଥିଲ ତୁମକୁ କାହିଁକି ବାହାରେ ଠିଆ କରାଯାଇଛି ଓ ତୁମେ କ'ଣ ଭୁଲ କରିଛ । ତୁମେ ଥରେ ମୋତେ ପଚାରିଥିଲ, "ଆପଣଙ୍କୁ ବାଜାବାଲା କ'ଣ ଭଲ ଲାଗନ୍ତିନାହିଁ ?" ତୁମକୁ କିଭଳି ବୁଝାଇବି ସେକଥା ଭାବି ପାରୁନଥିଲି । ତେଣୁ ତୁମେ ବାହାରେ ଥିଲେ ମୁଁ ସେବାଟେ ଯାଉନଥିଲି । ବେଳେବେଳେ ତୁମ ଶ୍ରେଣୀ ଶିକ୍ଷକ ତୁମ ବିଷୟରେ କହୁଥିଲେ । ସେ କହୁଥିଲେ, "ମୁଁ ବୁଝିପାରୁନି ସେ କାହିଁକି ଏମିତି ହେଉଛି ।" ତେଣୁ ପରେ ତୁମକୁ ଯେତେବେଳେ ଦୂରଦର୍ଶନରେ ଦେଖିଲି, ମୁଁ ସାଙ୍ଗେ ସାଙ୍ଗେ ଚିହ୍ନିପାରିଲି । ବହୁତ ଦିନ ହୋଇଗଲାଣି । କିନ୍ତୁ ତୁମର ପ୍ରଥମ ଶ୍ରେଣୀ ସମୟର କଥା ମୋର ପରିଷ୍କାର ମନେ ଅଛି ।"

ମୋତେ ବାରଣ୍ଡା ବାହାରେ ଠିଆ କରାଯାଉଥିଲା ? ମୋର ଏକଥା ଜମା ମନେନଥିଲା । ଶୁଣିକରି ମୁଁ ଆଶ୍ଚର୍ଯ୍ୟ ହେଲି । ସେହି ଉଦାର ମହିଳାଙ୍କର ବାଳ ପାଚି ଯାଇଥିଲା । କିନ୍ତୁ ତାଙ୍କର ମୁହଁରୁ ତାଙ୍କୁ ଏତେ ବୟସ ବୋଲି ଜଣା ପଡୁନଥିଲା । ସେ କଷ୍ଟ କରି ଏହି ସକାଳୁଆ କାର୍ଯ୍ୟକ୍ରମ ପାଇଁ ନଆସିଥିଲେ ମୁଁ ସ୍କୁଲରୁ ତଡା ଖାଇଥିବା କଥା ବିଶ୍ୱାସ କରିନଥା'ନ୍ତି । ଆଉ ଏଠାରେ ମୁଁ ମୋର ମା'ଙ୍କ ପ୍ରତି ବି ଆନ୍ତରିକ କୃତଜ୍ଞତା ଜଣାଉଛି । କାରଣ ମୋତେ କୋଡିଏ ବର୍ଷ ବୟସରେ ଯାଇ ସେ ଏ କଥା କହିଲେ ।

ଦିନେ ସେ ମୋତେ ପଚାରିଲେ, "ତୁ ଜାଣିଛୁ କାହିଁକି ତୁ ପ୍ରାଥମିକ ସ୍କୁଲ ବଦଳାଇଥିଲୁ ? "ମୁଁ ଯେତେବେଳେ ନା ବୋଲି କହିଲି, ସେ ବିଶେଷ ଗୁରୁତ୍ୱ ନ ଦେଇ କହିଲେ, "କାରଣ ତତେ ପ୍ରଥମ ସ୍କୁଲରୁ ବାହାର କରି ଦିଆଯାଇଥିଲା ।"

ସେତେବେଳେ ସେ ମୋତେ କହି ପାରିଥାନ୍ତେ, "ତୁ ଏବେ କ'ଣ କରିବୁ ଯେ ? ତତେ ଏବେ ଗୋଟିଏ ସ୍କୁଲରୁ ବାହାର କରିଦିଆଗଲା । ଆଉଟିରୁ ବି ଯଦି ସେମାନେ ବାହାର କରିଦିଅନ୍ତି, ତେବେ ତୁ କୁଆଡେ ଯିବୁ ?"

ମା' ଯଦି ମୋତେ ସେପରି କହିଥା'ନ୍ତେ ତେବେ ପ୍ରଥମ ଦିନ ତୋମୋଏ ଗାକୁଏନ୍‌ର ଫାଟକ ଟପି ପଶିଲା ବେଳେ ମୋତେ କେତେ ଅଡୁଆ ଓ ଡର ଲାଗୁଥା'ନ୍ତା । ଫାଟକର ଚେରଲଗା ଖୁଣ୍ଟ ଓ ରେଳଡବାର ଶ୍ରେଣୀଘରଗୁଡିକ ମୋତେ ଏତେ ଚମତ୍କାର

ଲାଗିନଥା'ନ୍ତା । ଏଭଳି ଜଣେ ମା'ଙ୍କୁ ପାଇଥିବା ମୋ ପାଇଁ ବଡ ଭାଗ୍ୟର କଥା ଥିଲା । ଯୁଦ୍ଧ ସମୟରେ ତୋମୋଏରେ ଅଳ୍ପ କେତୋଟି ଫଟୋ ଉଠାଯାଇଥିଲା । ସେଗୁଡିକ ଭିତରୁ ସ୍କୁଲ ଛାଡିବା ବେଳର ଫଟୋଗୁଡିକ ସବୁଠାରୁ ଭଲ ଥିଲା । ସାଧାରଣତଃ ଶେଷବର୍ଷର ପିଲାମାନେ ଆସେମ୍ବ୍ଲି ଘର ସାମନା ପାହାଚରେ ବସି ଫଟୋ ଉଠାଉଥିଲେ । କିନ୍ତୁ ସେ ପିଲାମାନେ ଧାଡି କରୁ କରୁ ପାଟି କରୁଥିଲେ, "ଆସ, ଫଟୋ ଉଠାଇବା ।" ତେଣୁ ଅନ୍ୟ ଶ୍ରେଣୀର ପିଲାମାନେ ବି ମିଶି ଯାଉଥିଲେ । ତେଣୁ କିଏ ଶେଷ ବର୍ଷର ପିଲା କହିବା ସମ୍ଭବ ହେଉନଥିଲା । ଏକାଠି ହେଲାବେଳେ ଆମେ ଏ ବିଷୟରେ ଜୋର ଆଲୋଚନା କରୁ । ଫଟୋ ନିଆଯିବା ସମୟରେ ଶ୍ରୀ କୋବାୟାଶି କେବେ କିଛି କହୁନଥିଲେ । ସେ ବୋଧେ ଭାବୁଥିଲେ ଯେ ଖାଲି ଶେଷ ବର୍ଷ ଛୁଆଙ୍କର ଠୁଙ୍କା ଫଟୋ ନନେଇ ସବୁ ପିଲାଙ୍କର ହସ ଖୁସିର ଫଟୋ ନେବାଟା ବେଶୀ ଭଲ । ଏବେ ସେ ଫଟୋଗୁଡିକରୁ ତୋମୋଏର ଅସଲ ରୂପ ଜାଣିହୁଏ ।

ତୋମୋଏ ବିଷୟରେ ଆହୁରି ଅନେକ କଥା ଲେଖି ପାରିଥା'ନ୍ତି । କିନ୍ତୁ ମୁଁ ଖୁସି ହେବି ଯଦି ଲୋକମାନେ ବୁଝିବେ ଯେ ଠିକ ଦିଗଦର୍ଶନ ପାଇଲେ ତୋତୋ-ଚ୍ୟାନ ପରି ଛୋଟିଆ ଝିଅଟିଏ ମଧ୍ୟ ସମସ୍ତଙ୍କ ସହ ମିଳିମିଶି ଚଳିଲା ଭଳି ମଣିଷଟିଏ ହୋଇପାରିବ ।

ମୁଁ ଏ ବିଷୟରେ ନିଶ୍ଚିତ ଯେ ତୋମୋଏ ଭଳି ଅଧିକ ସ୍କୁଲ ଯଦି ଏବେ ଥା'ନ୍ତା, ତେବେ ଆଜି ଏତେ ହିଂସା ବ୍ୟାପିନଥା'ନ୍ତା ବା ଏତେ ପିଲା ଅଧାରୁ ସ୍କୁଲ ଛାଡୁନଥା'ନ୍ତେ । ଛୁଟି ପରେ ବି ତୋମୋଏର ପିଲାମାନେ ଘରକୁ ଯିବାକୁ ଚାହୁଁନଥିଲେ । ଆଉ ସକାଳୁ ସ୍କୁଲ ଆସିବା ପାଇଁ କାହାକୁ ତର ସହୁନଥିଲା । ଏହା ସେଭଳି ସ୍କୁଲଟିଏ ଥିଲା ।

ସୋସାକୁ କୋବାୟାଶି, ଯେ ଅନ୍ତରର ପ୍ରେରଣା ଓ ଦୂରଦୃଷ୍ଟି ବଳରେ ଏଭଳି ଚମତ୍କାର ସ୍କୁଲଟିଏ ଗଢିଥିଲେ, ଜନ୍ମ ହୋଇଥିଲେ 1893 ମସିହା ଜୁନ 18 ତାରିଖ ଦିନ । ଟୋକିଓର ଉତ୍ତର ପଶ୍ଚିମ ଦିଗରେ ତାଙ୍କର ଗାଁ ଥିଲା । ସେ ପ୍ରକୃତି ଓ ସଙ୍ଗୀତକୁ ଅତିଶୟ ଭଲ ପାଉଥିଲେ । ତାଙ୍କର ଘର ପାଖରେ ଗୋଟିଏ ନଦୀ ବହୁଥିଲା ଓ ଦୂରରେ ହାରୁନା ପାହାଡ ଦିଶୁଥିଲା । ପିଲାବେଳେ ସେ ନଦୀ କୂଳରେ ଠିଆ ହେଉଥିଲେ ଓ ନଦୀର କୁଳୁକୁଳୁ ଶବ୍ଦକୁ ସଙ୍ଗୀତ ମନେ କରି ନିର୍ଦ୍ଦେଶନା ଦେଉଥିଲେ ।

ଗୋଟିଏ ଗରିବ ଚାଷୀ ପରିବାରର ଛଅଟି ପିଲାଙ୍କ ଭିତରେ ସେ ସବା ସାନ ଥିଲେ । ପ୍ରାଥମିକ ଶିକ୍ଷା ପରେ ଗୋଟିଏ ସ୍କୁଲରେ ତାଙ୍କୁ ସହକାରୀ ଶିକ୍ଷକ ଭାବେ କାମ କରିବାକୁ ପଡିଥିଲା । ଏହା ପାଇବା ପାଇଁ ଯେଉଁ ଯୋଗ୍ୟତା ଦରକାର, ତାହା ହାସଲ କରିଥିବା ଅଳ୍ପ ବୟସର ପିଲାଟି ପାଇଁ ଗୋଟିଏ ବଡ ସଫଳତା ଥିଲା । ଏଥିରୁ ତାଙ୍କର ଅସାଧାରଣ ପ୍ରତିଭା ଜଣାପଡିଥିଲା । ଅଳ୍ପ ଦିନ ଭିତରେ ସେ ଟୋକିଓରେ ଗୋଟିଏ ପ୍ରାଥମିକ ସ୍କୁଲରେ ଶିକ୍ଷକର ସ୍ଥାନ ପାଇଲେ । ଏଠାରେ ସେ ଶିକ୍ଷକତା କରିବା ସହିତ ସଙ୍ଗୀତ ଶିକ୍ଷା କଲେ । ଶେଷରେ ଏହା ତାଙ୍କ ଅଭିଳାଷ ପୂରଣ କରିବାରେ ସାହାଯ୍ୟ କଲା । ଏହା ଫଳରେ ସେ ଜାପାନର ପ୍ରମୁଖ ସଙ୍ଗୀତ

ଅନୁଷ୍ଠାନ ଏବେକାର ଟୋକିଓ ଗ୍ରୁକଳା ଓ ସଙ୍ଗୀତ ବିଶ୍ୱବିଦ୍ୟାଳୟରେ ଯୋଗ ଦେଇପାରିଲେ । ସ୍ନାତକ ଶିକ୍ଷା ପରେ ସେ ସିନେଇ ପ୍ରାଥମିକ ସ୍କୁଲରେ ଜଣେ ସଙ୍ଗୀତ ଶିକ୍ଷକ ଭାବରେ ଯୋଗଦେଲେ । ପ୍ରାଥମିକ ଶିକ୍ଷାର ଗୁରୁତ୍ୱ ବୁଝୁଥିବା ହାରୁଜି ନାକାମୁରା ନାମକ ଜଣେ ବିଖ୍ୟାତ ଲୋକ ଏହି ସ୍କୁଲଟି ଗଢିଥିଲେ । ସେ ଶ୍ରେଣୀରେ ପିଲା ସଂଖ୍ୟା କମ ରଖୁଥିଲେ । ପାଠ୍ୟକ୍ରମରେ ଯଥେଷ୍ଟ ସ୍ୱାଧୀନତା ଦେଲେ ପିଲାର ବ୍ୟକ୍ତିତ୍ୱ ଓ ଆତ୍ମବିଶ୍ୱାସ ବଢିପାରିବ ବୋଲି ସେ ବିଶ୍ୱାସ କରୁଥିଲେ । ସେ ସ୍କୁଲରେ କେବଳ ସକାଳ ବେଳା ପାଠ ପଢାଯାଉଥିଲା । ଉପର ବେଳାରେ ବୁଲାବୁଲି, ଗଛ ସଂଗ୍ରହ କରିବା, ଚିତ୍ର ଆଙ୍କିବା, ଗୀତ ଗାଇବା, ପ୍ରଧାନ ଶିକ୍ଷକଙ୍କଠୁ କୌଣସି ବିଷୟରେ ଶୁଣିବା ଆଦି କରାଯାଉଥିଲା । ଶ୍ରୀ କୋବାୟାଶିଙ୍କୁ ଏହି ଧାରା ବିଶେଷ ପ୍ରଭାବିତ କରିଥିଲା । ପରେ ତୋମୋଏରେ ଏହିଭଳି ପାଠ୍ୟକ୍ରମ ସେ ଚଳାଇଥିଲେ ।

ସେଠାରେ ସଙ୍ଗୀତ ଶିଖାଇଲା ବେଳେ ଶ୍ରୀ କୋବାୟାଶି ପିଲାଙ୍କ ପାଇଁ ଗୋଟିଏ ନାଟିକା ଲେଖିଥିଲେ । ଏହା ଜଣେ ଶିଳ୍ପପତି ବ୍ୟାରନ ଇୱାସାକିଙ୍କ ମନକୁ ବେଶ୍ ଛୁଇଁଥିଲା । ତାଙ୍କ ପରିବାର ମିତ୍ସୁବିଶି ନାମକ ବିରାଟ ଶିଳ୍ପ ପ୍ରତିଷ୍ଠାନ ଗଢିଥିଲେ । ବ୍ୟାରନ ଇୱାସାକି କଳାକୁ ଖୁବ ପ୍ରୋତ୍ସାହନ ଯୋଗାଉଥିଲେ । ପ୍ରମୁଖ ଜାପାନୀ ସଙ୍ଗୀତକାର କୋଶାକ ୟାମାଦାଙ୍କୁ ସାହାଯ୍ୟ କରିବା ସହିତ ସ୍କୁଲଟିକୁ ମଧ୍ୟ ସେ ଆର୍ଥିକ ସାହାଯ୍ୟ ଦେଉଥିଲେ । ୟୁରୋପ ଯାଇ ସେଠାକାର ଶିକ୍ଷାପଦ୍ଧତି ବିଷୟରେ ଅଧିକ ଜାଣିବା ପାଇଁ ସେ ହିଁ ଶ୍ରୀ କୋବାୟାଶିଙ୍କୁ ସୁଯୋଗ ଦେଇଥିଲେ ।

1922ରୁ 1924 ଯାଏଁ ଦୁଇବର୍ଷ କାଳ ଶ୍ରୀ କୋବାୟାଶି ୟୁରୋପରେ କଟାଇଲେ । ବିଭିନ୍ନ ସ୍କୁଲ ବୁଲିଲେ ଓ ପ୍ୟାରିସରେ ଏମିଲ୍ ଜାକ୍ ଡାଲକ୍ରୋଜଙ୍କ ପାଖରେ ସଙ୍ଗୀତ ଅନୁସାରେ ଅଙ୍ଗଚାଳନା (ଇଉରିଦ୍‌ମିକ୍ସ୍) ଶିଖିଲେ । ସେଠାରୁ ଫେରି ସେ ଆଉଜଣକ ସହ ମିଶି ସିଜୋ ପ୍ରାକ୍ ପ୍ରାଥମିକଶାଳା ପ୍ରତିଷ୍ଠା କଲେ । ଆଗରୁ ମନରେ ଥିବା ପୁରୁଣା ଛାଞ୍ଚରେ ପିଲାଙ୍କୁ ନପକାଇବା ପାଇଁ ସେ ପ୍ରାକ୍ ପ୍ରାଥମିକ ଶିକ୍ଷକମାନଙ୍କୁ ସବୁବେଳେ କହୁଥିଲେ । ସେ କହୁଥିଲେ, "ତାଙ୍କୁ ପ୍ରକୃତି କୋଳରେ ଛାଡିଦିଅ । ସେମାନଙ୍କର ଉଚ୍ଚ ଆକାଂକ୍ଷାଗୁଡିକୁ ଚାପିଦିଅନାହିଁ । ସେମାନଙ୍କର ସ୍ୱପ୍ନ ତୁମ ସ୍ୱପ୍ନଠାରୁ ବଡ ।" ଜାପାନରେ ଏପରି ଶିଶୁଶାଳାଟିଏ ଆଗରୁ ନଥିଲା ।

1930ରେ କୋବାୟାଶି ୟୁରୋପରେ ଆଉ ଗୋଟିଏ ବର୍ଷ କଟାଇଲେ । ଡାଲକ୍ରୋଜଙ୍କ ସହିତ ସେ କିଛି ସମୟ କଟାଇଲେ ଓ ଅନେକ ଆଡେ ବୁଲି ଅନୁଧ୍ୟାନ କଲେ । ଫେରିବା ପରେ ନିଜର ସ୍କୁଲଟିଏ ଆରମ୍ଭ କରିବାକୁ ସେ ଠିକ କଲେ ।

1937ରେ ତୋମୋଏ ଗାକୁଏନ୍ ଆରମ୍ଭ କରିବା ସହିତ ସେ ଜାପାନ ଇଉରିଦ୍‌ମିକ୍ସ୍ ସଙ୍ଗଠନ ଆରମ୍ଭ କଲେ । ଜାପାନରେ ଇଉରିଦ୍‌ମିକ୍ସ୍‌ର ପ୍ରବର୍ତ୍ତକ ଭାବରେ ଏବଂ ଯୁଦ୍ଧ ପରେ କୁନି-ତାଚି ସଙ୍ଗୀତ ମହାବିଦ୍ୟାଳୟର କର୍ମୀ ହିସାବରେ ଅଧିକାଂଶ ଲୋକ ତାଙ୍କୁ ଜାଣନ୍ତି । ଆମପରି ଖୁବ କମ୍ ଲୋକ ତାଙ୍କ ଶିକ୍ଷା ପଦ୍ଧତିକୁ ପ୍ରତ୍ୟକ୍ଷ ଭାବରେ ଜାଣିବାର ସୁଯୋଗ ପାଇଛନ୍ତି । ଏହା ଅତି ଦୁଃଖର କଥା ଯେ ତୋମୋଏ ପରି ଆଉ ଏକ ସ୍କୁଲ ଗଢିବା ଆଗରୁ ତାଙ୍କର ମୃତ୍ୟୁ ହେଲା । ଏପରିକି

ତୋମୋଏ ଜଳୁଥିବା ସମୟରେ ବି ସେ ଆହୁରି ଭଲ ସ୍କୁଲଟିଏ ଗଢିବା କଥା ଚିନ୍ତା କରୁଥିଲେ । ଘ୍ରିଆଡର କୋଳାହଳ ଭିତରେ ବି ଦୃଢ ବିଶ୍ୱାସର ସହ ସେ ପଗ୍ଭରିଥିଲେ, ''ଏହାପରେ ଆମେ କେଉଁ ପ୍ରକାରର ସ୍କୁଲ ଗଢିବା ?''

ମୁଁ ଯେତେବେଳେ ଏ ବହିଟି ଲେଖିବାକୁ ଆରମ୍ଭ କଲି ଜାଣିବାକୁ ପାଇଲି ଯେ ମୋର କାର୍ଯ୍ୟକ୍ରମ ''ତେତ୍‌ସୁକୋ ରୁମ୍‌'' ର ପ୍ରଯୋଜକ ଗତ ଦଶ ବର୍ଷ ଧରି ଶ୍ରୀ କୋବାୟାଶିଙ୍କ ଉପରେ ଗବେଷଣା କରୁଥିଲେ । ସେ ଏହି ଶିକ୍ଷକଙ୍କୁ କେବେ ଭେଟିନଥିଲେ । ପିଲାଙ୍କ ଇଉରିଦ୍‌ମିକ୍‌ସ୍ ଶ୍ରେଣୀରେ ପିଆନୋ ବଜାଇବା ଜଣେ ମହିଳାଙ୍କଠାରୁ ସେ କୋବାୟାଶିଙ୍କ କଥା ଜାଣିବା ପରେ ତାଙ୍କର ଆଗ୍ରହ ବଢିଥିଲା । ମହିଳା ଜଣକ ଯେତେବେଳେ ପିଆନୋ ବଜାଇବା ଆରମ୍ଭ କଲେ ତାଙ୍କୁ ବେଗ କମାଇବାକୁ କୋବାୟାଶି କହିଥିଲେ, ''ପିଲାମାନେ ତ ସେପରି ଘ୍ରଲନ୍ତି ନାହିଁ ।'' ସେ ପିଲାଙ୍କ ଜୀବନ ପ୍ରତି ଏତେ ଧ୍ୟାନ ଦେଉଥିଲେ ଯେ ସେ ଜାଣିଥିଲେ ପିଲାଏ କିପରି ନିଃଶ୍ୱାସ ନିଅନ୍ତି ଓ କିପରି ଘ୍ରଲନ୍ତି । ମୁଁ ଆଶାକରୁଛି ଯେ ମୋର ପ୍ରଯୋଜକ କାଜୁହିକୋ ସାନୋ ଶୀଘ୍ର ତାଙ୍କ ବହି ଲେଖିବେ ଓ ଏହି ଚମତ୍କାର ଲୋକ ଜଣକ ବିଷୟରେ ଦୁନିଆକୁ ଆହୁରି ଅନେକ କଥା ଜଣାଇବେ ।

କୋଡିଏ ବର୍ଷ ତଳେ କୋଦାନ୍‌ସା ପ୍ରକାଶନର ଜଣେ ଉଦ୍‌ଯୋଗୀ ଯୁବ ସମ୍ପାଦକ ଗୋଟିଏ ମହିଳା ପତ୍ରିକାରେ ତୋମୋଏ ବିଷୟରେ ମୋର ଲେଖାଟିଏ ପଢିଥିଲେ । ହାତରେ ଥାକେ ଖାତା ଧରି ସେ ମୋତେ ଦେଖିବାକୁ ଆସିଲେ । ଲେଖାଟିକୁ ବହିଟିଏ କରିବାକୁ ସେ ମତେ କହିଲେ । ଅବଶ୍ୟ ସେ ଖାତାତକ ମୁଁ ଅନ୍ୟ କାମରେ ଲଗାଇ ଦେଲି । ତାଙ୍କ ଅନୁରୋଧ ରୂପ ନେବା ଆଗରୁ ସେ ଅନ୍ୟ ଆଡେ ଘ୍ରଲିଗଲେ । କିନ୍ତୁ ସେହି କାତ୍‌ସୁହିସା କାତୋ ହିଁ ଏହି ବହି ଲେଖିବାର ଚିନ୍ତା ଓ ବିଶ୍ୱାସ ମୋ ମନରେ ଭରିଥିଲେ । ଆଗରୁ ମୁଁ କିଛି ଲେଖିନଥିବାରୁ ପୂରା ବହିଟିଏ ଲେଖିବା ମୋତେ ଅସମ୍ଭବ ଲାଗିଲା । ଶେଷରେ କୋଦାନ୍‌ସାର କିଶୋରୀ ପତ୍ରିକାରେ ଧାରାବାହିକ ଭାବରେ ମୁଁ ଏହାକୁ ଲେଖିବା ଆରମ୍ଭ କଲି । ଫେବୃଆରୀ **1979**ରୁ ଡିସେମ୍ବର **1980** ଯାଏଁ ଏହି ଲେଖା ଘ୍ରଲିଲା ।

ପ୍ରତି ମାସର ଲେଖା ପାଇଁ ମୁଁ ଟୋକିଓର ନେରିମାକୁରେ ଥିବା ଚିହିରୋ ଇୱାସାକି ଚିତ୍ର ବହି ସଂଗ୍ରହାଳୟ ଯାଇ ଚିତ୍ର ବାଛୁଥିଲି । ଚିହିରୋ ଇୱାସାକି ପିଲାଙ୍କ ଚିତ୍ର କରିବାରେ ଅତି ଦକ୍ଷ ଥିଲେ । ମୋର ବିଶ୍ୱାସ ଯେ ପିଲାଙ୍କର ଏତେ ଜୀବନ୍ତ ଚିତ୍ର ଆଙ୍କିବାରେ ପୃଥିବୀରେ କେହି ତାଙ୍କୁ ବଳିଯିବେନାହିଁ । ଏହି ମହିଳାଜଣକ ପିଲାଙ୍କ ମନ ଓ ଚଳଣୀକୁ ଅତି ନିଖୁଣ ଭାବେ ଧରିପାରୁଥିଲେ । ତାଙ୍କ ଚିତ୍ରରେ ଛଅ ମାସ ଓ ନଅ ମାସ ବୟସର ଛୁଆ ଭିତରେ ଫରକ ବି ଧରିହେଉଥିଲା । ମୋର ବହିଟିରେ ତାଙ୍କ ଚିତ୍ରଗୁଡିକୁ ବ୍ୟବହାର କରି ମୁଁ କେତେ ଯେ ଖୁସି ତା' ଆପଣଙ୍କୁ କହିପାରିବିନି । ମୋର ବର୍ଣ୍ଣନା ସାଙ୍ଗକୁ ତାଙ୍କ ଚିତ୍ରଗୁଡିକ ଚମତ୍କାର ଭାବେ ଖାପ ଖାଇଯାଉଛି । ସେ **1974**ରେ ମରିଗଲେ, କିନ୍ତୁ ସମସ୍ତେ ମତେ ପଗ୍ଭରନ୍ତି ଯେ ସେ ବଞ୍ଚିଥିଲାବେଳେ କ'ଣ ମୁଁ ଏ ବହିଟି ଲେଖିବାକୁ ଆରମ୍ଭ କରିଥିଲି ? ଏଥିରୁ ଜଣାପଡେ ତାଙ୍କର

ଚିତ୍ରଗୁଡ଼ିକ କେତେ ବିବିଧ ଓ ସେଥିରେ ଜୀବନର ପ୍ରତିଫଳନ କେତେ ବାସ୍ତବ ।

ଚିହିରୋ ଇୱାସାକି ପ୍ରାୟ ସାତ ହଜାର ଚିତ୍ର ଛାଡ଼ି ଦେଇଯାଇଛନ୍ତି । ତାଙ୍କର ପୁଅ, ଯିଏକି ଏହି ଚିତ୍ର ସଂଗ୍ରହାଳୟର ଉପ-ପରିଚାଳକ, ଓ ବୋହୁଙ୍କ ସହଯୋଗ ଫଳରେ ମୁଁ ଅଧିକାଂଶ ଚିତ୍ର ଦେଖିବାର ସୁଯୋଗ ପାଇପାରିଛି । ଏହି ବହିରେ କିଛି ଚିତ୍ର ଛାପିବାର ଅନୁମତି ଦେଇଥିବାରୁ ମୁଁ ଶ୍ରୀମତୀ ଚିହିରୋଙ୍କ ସ୍ୱାମୀଙ୍କଠାରେ କୃତଜ୍ଞ । ବହି ଲେଖିବାଟା ତ୍ୱରାନ୍ୱିତ କରାଇଥିବାରୁ ଏହି ସଂଗ୍ରହାଳୟର ପରିଚାଳକ ନାଟ୍ୟକାର ତାଦାଶୁ ଇଜାୱାଙ୍କ ପ୍ରତି ମଧ୍ୟ ମୁଁ କୃତଜ୍ଞ ।

ମିୟୋ-ଚ୍ୟାନ ଓ ତୋମୋଏର ଅନ୍ୟ ସାଥିମାନେ ସ୍ୱାଭାବିକ ଭାବେ ମୋତେ ସାହାଯ୍ୟ କରିଛନ୍ତି । ଜାପାନୀ ସଂସ୍କରଣର ସମ୍ପାଦକ କେଇକୋ ଇୱାମୋତୋଙ୍କୁ ମୋର ହାର୍ଦ୍ଦିକ ଧନ୍ୟବାଦ । ସେ ସବୁବେଳେ କହୁଥିଲେ, ''ଆମେ ନିଶ୍ଚୟ ଏହାକୁ ଏକ ଚମତ୍କାର ବହି କରିବା ।''

ବହିଟିର ମୂଳ ଜାପାନୀ ନାମ ଆସିଛି କିଛି ବର୍ଷ ତଳେ ବିଶେଷ ଭାବରେ ଚଳୁଥିବା ଗୋଟିଏ ବୋଲିରୁ । 'ଝରକା ପାଖର ଲୋକ' କହିଲେ ସାଧାରଣ ଜୀବନରୁ ଦୂରରେ ଥିବା ମଣିଷକୁ ବୁଝାଉଥିଲା । ରାସ୍ତାର ବାଜାବାଲା ବା ଅନ୍ୟ ଘଟଣା ପ୍ରତି ଆଗ୍ରହ ଯୋଗୁଁ ମୁଁ ଝରକା ପାଖରେ ମୋ ନିଜ ଇଚ୍ଛାରେ ଛିଡ଼ା ହେଉଥିଲି । କିନ୍ତୁ ପ୍ରଥମ ସ୍କୁଲରେ ମୋତେ ସତରେ ଲାଗୁଥିଲା ଯେପରି ମୁଁ ସେହି 'ଝରକା ପାଖର ଲୋକ' ଭିତରୁ ଗୋଟିଏ । ସେ ସ୍କୁଲର ଚଳଣି ଭିତରକୁ ମୁଁ ପଶିପାରୁନଥିଲି - ତେଣୁ ଏକଲା ହୋଇ ରହିଯାଉଥିଲି । ବହିଟିର ନାଁରେ ଏହି ଅର୍ଥ ଲୁଚି ରହିଛି । ସେଥିରେ ଆଉ ଏକ ଅର୍ଥ ବି ରହିଛି, ତା' ହେଉଛି ସୁଖର ଝରକା ଯାହା ଶେଷରେ ତୋମୋଏରେ ମୋ ପାଇଁ ଖୋଲିଲା ।

ତୋମୋଏ ଏବେ ଆଉ ନାହିଁ । କିନ୍ତୁ ବହିଟି ପଢ଼ିବା ସମୟରେ ଏହା ଯଦି ଆପଣଙ୍କ ମନରେ କିଛିକ୍ଷଣ ପାଇଁ ଜିଇଁଉଠିଲା, ତେବେ ମୁଁ ବହୁତ ଖୁସି ହେବି ।

ଟୋକିଓ, **1982**

ତୋତ୍ତୋ-ଚ୍ୟାନ୍ ପ୍ରକାଶିତ ହେବାର ମାତ୍ର ତିନିବର୍ଷ ହୋଇଛି । କିନ୍ତୁ ଏହି ସମୟ ଭିତରେ ଅନେକ ଘଟଣା ଘଟିଛି ଯାହା କି ମୋତେ ବହୁତ ବିସ୍ମିତ କରିଛି ଏବଂ ଆନନ୍ଦ ମଧ୍ୟ ଯୋଗାଇଛି । ମୋର ପ୍ରିୟ ପ୍ରଧାନ ଶିକ୍ଷକ ଏବଂ ତୋମୋଏରେ ମୋର ଅଭୁଲା ସମୟ ବିଷୟରେ ଲେଖିଲାବେଳେ ମୁଁ ଜମା ଭାବିନଥିଲି ଯେ, ଏହା ସବୁଠାରୁ ବେଶୀ ବିକ୍ରି ହେବ । ପ୍ରଥମ ବର୍ଷ ହିଁ ଏଥିରୁ ପଇଁଚାଳିଶ ଲକ୍ଷ ଖଣ୍ଡ ବିକ୍ରି ହୋଇଥିଲା ଏବଂ ଏହି ସଂଖ୍ୟା ଏବେ ଷାଠିଏ ଲକ୍ଷରେ ପହଞ୍ଚି ସାରିଲାଣି । ଶୁଣିବାକୁ ପାଇଲି ଯେ ''ଜାପାନୀ ପ୍ରକାଶନ ଇତିହାସରେ ଏହା ଏକ ରେକର୍ଡ଼''; କିନ୍ତୁ ମୁଁ ଏହାକୁ ଗୁରୁତ୍ୱ ଦେଇନଥିଲି ।

ସାରା ଜାପାନର ବିଭିନ୍ନ ସ୍ଥାନରୁ ପ୍ରତିଦିନ ଅସଂଖ୍ୟ ଚିଠି ଆସିବାରୁ ମୁଁ ଅନୁଭବ କଲି ଯେ ସତରେ ଅନେକ ଲୋକ ମୋ ବହିଟି ପଢ଼ିଛନ୍ତି ।

5 ରୁ 103 ବର୍ଷ ଯାଏଁ ସବୁ ବୟସର ଲୋକଙ୍କଠାରୁ ମୁଁ ଚିଠି ପାଇଛି ଏବଂ ପ୍ରତିଟି ଚିଠି ମନଛୁଆଁ ଲାଗିଛି । ପ୍ରାଥମିକ ସ୍କୁଲ ପିଲାଙ୍କଠାରୁ ଅଧିକାଂଶ ଚିଠି ଆସିବା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଚୀନା ଲିପିର କଷ୍ଟକର ଶବ୍ଦଗୁଡ଼ିକ ପାଖରେ ସରଳ ଉଚ୍ଚାରଣ ଲେଖିଥିଲେ ମଧ୍ୟ ମୁଁ ଭାବିନଥିଲି ଯେ ଏତେ ଛୋଟପିଲା ବହିଟିକୁ ପଢ଼ିବେ । ଆଜିକାଲି ଲେଖା ବହିଠାରୁ ସମସ୍ତେ ଦୂରେଇ ଯାଉଥିବାବେଳେ ଶବ୍ଦକୋଷର ସାହାଯ୍ୟ ନେଇ ଦ୍ୱିତୀୟ ଶ୍ରେଣୀର ପିଲା ମଧ୍ୟ ଏହାକୁ ପଢ଼ିବା ମୋ ପାଇଁ ଅତି ଖୁସିର ବିଷୟ । ଦ୍ୱିତୀୟ ଶ୍ରେଣୀର ଜଣେ ଛାତ୍ରୀ ଲେଖିଥିଲା ଯେ, କୌଣସି ଶାରୀରିକ ଅସୁବିଧା ଥିବା ଛୁଆକୁ ଦେଖିଲେ ସେ ଭାବେ, "ଓଃ, ଏ ହେଉଛି ୟାସୁଆକି-ଚ୍ୱାନ୍" ବା "ସେ ବୋଧେ ତୋମୋଏରୁ ଆସିଛି ।" ତା'ପରେ ସେ ତା' ପାଖକୁ ଧାଇଁଯାଇ 'ହାଲୋ' ବୋଲି କହିବ । ପିଲାଟି ଯଦି 'ହାଲୋ' ବୋଲି ଉତ୍ତର ଦେବ, ସେ ଅତି ଖୁସି ହୋଇଯିବ । ତୋମୋଏ ପୁଣି ଚ୍ୱାଳିଶ ବର୍ଷ ତଳର କଥା ! ସତରେ ପିଲାମାନେ କି ଚମତ୍କାର !

ଅନେକ ପିଲା ଲେଖିଥିଲେ, ତୋମୋଏ ଜଳିଯିବା ପଢ଼ି ସେମାନେ ଅନୁଭବ କଲେ ଯେ ଯୁଦ୍ଧ ଜମା ଭଲନୁହେଁ । କେବଳ ଏହି କାରଣରୁ ବହି ଲେଖିବାଟା ଯଥାର୍ଥ ମନେ ହୁଅନ୍ତା । ଅବଶ୍ୟ ବହିଟି ଲେଖିଲାବେଳେ ମୁଁ ବେଶୀ ଭାବୁଥିଲି ସ୍କୁଲ ଶିକ୍ଷକ ଓ ଯୁବତୀ ମା'ମାନଙ୍କ କଥା । ସେମାନେ ଯଦି ଶ୍ରୀ କୋବାୟାଶୀଙ୍କ ବିଷୟରେ ପଢ଼ି ନିଜକୁ ନିଜେ କହନ୍ତେ, "ଆଃ ଏଭଳି ଜଣେ ନିଷ୍ଠାପର ମଣିଷ ଥିଲେ ଯିଏ ପିଲାଙ୍କୁ ସତରେ ଭଲ ପାଉଥିଲେ ଓ ବିଶ୍ୱାସ କରୁଥିଲେ ।" ତଥାପି ମୁଁ ଡରୁଥିଲି ଯେ ଶିକ୍ଷକମାନେ ଆଜିର ପ୍ରତିଦ୍ୱନ୍ଦ୍ୱିତାମୂଳକ ସମାଜରେ ଏହାକୁ ଏକ ଅତି ଆଦର୍ଶବାଦୀ ଚିନ୍ତାଧାରା କହି ଉଡ଼ାଇଦେବେ ।

ବାସ୍ତବରେ, ବହିଟି ବାହାରିଲା ପରେ, କେତେ ପ୍ରାଥମିକ ଶିକ୍ଷକ ଲେଖିଲେ ଯେ ପ୍ରତିଦିନ ପିଲାମାନେ ଖାଇବାବେଳେ ସେମାନେ ଏହି ବହିଟିକୁ ବଡ଼ପାଟିରେ ପଢ଼ି ଶୁଣାଉଥିଲେ । କିଛି ପ୍ରାଥମିକ ସ୍କୁଲର ଚିତ୍ର ଶିକ୍ଷକ ଲେଖିଲେ ଯେ ଶ୍ରେଣୀରେ ସେମାନେ ତୋତୋ-ଚ୍ୱାନ୍‌ର କିଛି ଅଂଶ ପଢ଼ି ଶୁଣାଉଥିଲେ ଏବଂ ସେମାନେ ଶୁଣିଥିବା କଥାର ଚିତ୍ର ଆଙ୍କିବାକୁ ପିଲାମାନଙ୍କୁ କହୁଥିଲେ । କେତେକ ମାଧ୍ୟମିକ ସ୍କୁଲର ଶିକ୍ଷକ ଲେଖିଲେ ଯେ ଏବେ ଶିକ୍ଷାର ଦୁରାବସ୍ଥାରେ ହତାଶ ହୋଇ ସେମାନେ ଶିକ୍ଷକତା ଛାଡ଼ିଦେବା ପାଇଁ ବିଚାରୁଥିଲେ । କିନ୍ତୁ ଶ୍ରୀ କୋବାୟାଶୀଙ୍କର କାମରୁ ପ୍ରେରଣା ପାଇ ପୁଣି ଥରେ ଚେଷ୍ଟା କରିବାକୁ ଠିକ୍ କଲେ । ଏପରି ଅନେକ ମନଛୁଆଁ ଚିଠି ପଢ଼ି ମୋ ଆଖିରେ ଲୁହ ଆସିଯାଇଛି, କାରଣ ମୁଁ ଅନୁଭବ କଲି ଯେ ଅନେକ ଲୋକ ଶ୍ରୀ କୋବାୟାଶୀଙ୍କ ପରି ଭାବୁଛନ୍ତି ।

ଶିକ୍ଷକମାନେ ମୋ ବହିକୁ ଅନେକ ଭାବରେ କାମରେ ଲଗାଉଥିଲେ । ଗତବର୍ଷ "କୃଷି ଶିକ୍ଷକ" ଅଧ୍ୟାୟଟି ତୃତୀୟ ଶ୍ରେଣୀ ଜାପାନୀ-ଭାଷା ପାଠ୍ୟ ପୁସ୍ତକରେ ରଖାଗଲା ଏବଂ ଚତୁର୍ଥ ଶ୍ରେଣୀର ଆଚ୍ୱର ବ୍ୟବହାର ପାଠ୍ୟପୁସ୍ତକରେ "ମଇଳା କୋତରା ସ୍କୁଲ"

ବିଷୟଟି ସ୍ଥାନ ପାଇଲା । କେତେକ ଦୁଃଖୀ ଭରା ଚିଠି ବି ଆସିଥିଲା । ଗୋଟିଏ ଯୁବ-ଅପରାଧୀ କେନ୍ଦ୍ରରେ ଅଟକଥିବା ଜଣେ ହାଇସ୍କୁଲ ଛାତ୍ରୀ ଲେଖିଥିଲେ, ''ତୋତୋ-ଗ୍ୱାନ୍‌ର ମା'ଙ୍କ ପରି ମା' ଏବଂ ଶ୍ରୀ କୋବାୟାଶିଙ୍କ ପରି ଜଣେ ଶିକ୍ଷକ ଥିଲେ, ମୁଁ ଏହି ଅବସ୍ଥାରେ ପହଞ୍ଚିନଥା'ନ୍ତି ।''

ତୋତୋ-ଗ୍ୱାନ ବହିଟି କାହିଁକି ସବୁଠୁ ବେଶୀ ବିକ୍ରି ହେଲା ? ଗଣ ମାଧ୍ୟମରେ ଏହି ପ୍ରଶ୍ନ ଉପରେ ଅନେକ ବିତର୍କ ଗ୍ୱଲିଲା । ''ତୋତୋ-ଗ୍ୱାନ୍ ଲକ୍ଷଣ'' ନାଁରେ 'ଆସିହି' ଖବର କାଗଜରେ ଏହି ବହିଟିର ପ୍ରଭାବ ସମ୍ପର୍କରେ ଲଗାତାର ଲେଖା ବାହାରିଲା । ଆଶ୍ଚର୍ଯ୍ୟର କଥା ଯେ ଜଣେ ଅଲଗା ପ୍ରକାଶକ ଏହା ବିଷୟରେ ପୂରା ନୂଆ ବହିଟିଏ ଛାପିଲେ । 'ତୋତୋ-ଗ୍ୱାନ୍ ଏକ ଅତି ଜନପ୍ରିୟ ବହିର କଥା' ନାମକ ଏହି ବହିଟିରେ 'ତୋତୋ-ଗ୍ୱାନ୍' ଏତେ ଭଲ ବିକ୍ରି ହେବାର ଘଟଣାକୁ ସବୁଦିଗରୁ ବିଶ୍ଳେଷଣ କରାଯାଇଥିଲା । ମୁଁ ଭାବୁଛି ଯେ ବହିଟିର ସଫଳତାର ଗୋଟିଏ ବଡ କାରଣ ହେଉଛି ତା'ର ପ୍ରକାଶନ ସମୟ । ବହିଟି ଛପାଯିବାବେଳେ ଜାପାନରେ ଶିକ୍ଷା ଏକ ସଙ୍କଟଜନକ ଅବସ୍ଥାରେ ପହଞ୍ଚିଥିଲା ଏବଂ ସମସ୍ତେ ଗ୍ୱହୁଁଥିଲେ ଯେ ଏ ସମ୍ପର୍କରେ କିଛି କରାଯିବା ଦରକାର । ତେଣୁ ଅନେକ ଲୋକ ଏହି ବହିକୁ ଶିକ୍ଷା ସମ୍ପର୍କୀୟ ଏକ ଗ୍ରନ୍ଥ ରୂପେ ପଢ଼ିଲେ । ଅବଶ୍ୟ ମୁଁ ଏଥିପାଇଁ ବହିଟିକୁ ଲେଖିନଥିଲି । ଆଉ ଗୋଟିଏ କାରଣ ହେଉଛି ଯେ ବହିଟି ବିଭିନ୍ନ ବୟସ ଏବଂ ଚିନ୍ତାଧାରାର ଲୋକଙ୍କର ପସନ୍ଦ ହେଲା । ତେଣୁ ଏହା ଏତେ ଅଧିକ ସଂଖ୍ୟାରେ ବିକ୍ରି ହୋଇପାରିଲା ।

ଜଣେ ମହିଳାଙ୍କ ଦ୍ୱାରା ଲିଖିତ ବହିଟି ଏତେ ଲୋକପ୍ରିୟ ହେବା ଘଟଣା ଏହା ଜାପାନରେ ପ୍ରଥମ । ଆରମ୍ଭରେ ଏ ବହିଟିପ୍ରତି ପୁରୁଷଙ୍କର ପ୍ରତିକ୍ରିୟା ପ୍ରତିକୂଳ ଥିଲା । ଯେଉଁ ପୁରୁଷମାନେ ସଦୟ ହୋଇ ଏହାର ସମୀକ୍ଷା କରୁଥିଲେ, ତାଙ୍କର ଆଲୋଚନାର ଆରମ୍ଭ ଏହିପରି ଥିଲା: ''ଝିଅଙ୍କ ରଚିର ମଲାଟ ଭଲ ଲାଗିଲାନାହିଁ,'' କିମ୍ବା, ''ଜଣେ ଲୋକପ୍ରିୟ ଅଭିନେତ୍ରୀଙ୍କ ଜନପ୍ରିୟ ଲେଖା ଭାବରେ ମୁଁ ଏହାକୁ ଗୁରୁତ୍ୱ ଦେଲିନାହିଁ ।'' ସେମାନେ କହିଗ୍ୱଲିଲେ, ''ମୁଁ ଏହାକୁ ପଢ଼ିନଥା'ନ୍ତି । କିନ୍ତୁ ଘର ଲୋକମାନେ କହିଲେ ବୋଲି ପଢ଼ିଲି ।'' ଅବଶ୍ୟ ସମୀକ୍ଷାଗୁଡ଼ିକ ଭଲ ଥିଲା । ପରିବାରର ଯେଉଁ ସଦସ୍ୟମାନେ ଏତେ ଉତ୍ସାହର ସହ ତୋତୋ-ଗ୍ୱାନ୍ ବହିକୁ ସୁପାରିଶ କଲେ, ସେମାନଙ୍କୁ ମୋର ହାର୍ଦ୍ଦିକ ଧନ୍ୟବାଦ ।

ବହିଟି ପ୍ରକାଶିତ ହେବା ଆଗରୁ ମୁଁ ଠିକ୍ କଲି ଯେ ବହି ବିକ୍ରିରୁ ଯେଉଁ ଟଙ୍କା ମିଳିବ, ସେଥିରେ ବଧିର ଅଭିନେତାଙ୍କୁ ନେଇ ଜାପାନରେ ପ୍ରଥମ ପେଷାଦାର ଥିଏଟର ପ୍ରତିଷ୍ଠା କରିବି । ଏହାକୁ ଏକ ସମାଜ କଲ୍ୟାଣ ଅନୁଷ୍ଠାନ ଭାବେ ଗ୍ରହଣ କରିବାକୁ ମୁଁ ସରକାରଙ୍କୁ ଆବେଦନ କଲି ଯେପରି ମୁଁ ମରିଯିବା ପରେ ବା ଅତି ବୁଢ଼ୀ ହୋଇ ଏହାକୁ ଚଳାଇ ନପାରିଲେ ମଧ୍ୟ ଏହା ଗ୍ୱଲିପାରିବ । ଏଭଳି ଆବେଦନ ଆଗରୁ ଆସିନଥିଲା । ତେଣୁ ଅନେକ ଅସୁବିଧା ଉପୁଜିଥିଲା । କିନ୍ତୁ ସମାଜ କଲ୍ୟାଣ କ୍ଷେତ୍ରରେ ମୋର ପଚିଶ ବର୍ଷରୁ ଅଧିକ କାମକୁ ସରକାର ବିଗ୍ୱରକୁ ନେଲେ ଓ ଶେଷରେ ଏଥିପାଇଁ ରାଜି ହେଲେ । ଏହି ଭାବରେ 'ତୋତୋ-ଗ୍ୱାନ୍ ପ୍ରତିଷ୍ଠାନ' ନାମକ ସମାଜ

କଲ୍ୟାଣ ଅନୁଷ୍ଠାନଟି ରୂପ ନେଲା । ଏହା ଆଶାତୀତ ସଫଳତା ଲାଭ କଲା ଏବଂ ଏହା ମାଧ୍ୟମରେ "ଜାପାନୀ ବଧିର ଥିଏଟର୍" ଗଢାଯାଇ ପାରିଲା । ଏବେ ତୋତ୍ତୋ ପ୍ରତିଷ୍ଠାନ ତାଲିମ କେନ୍ଦ୍ରରେ କୋଡିଏରୁ ଅଧିକ ବଧିର ଅଭିନେତା ତାଲିମ ପାଉଛନ୍ତି । ଏଠାରେ ସଙ୍କେତ ଭାଷା ମଧ୍ୟ ଶିଖାଯାଉଛି । ଗତ ଜୁଲାଇରେ ଆମର ବହୁଦିନର ଏକ ସ୍ୱପ୍ନ ସାକାର ହେଲା । ଇଟାଲୀର ପାଲେର୍ମୋଠାରେ ହୋଇଥିବା ଆନ୍ତର୍ଜାତିକ ମୂକ ଓ ବଧିର ସମାବେଶର ନାଟକ ଉତ୍ସବରେ ପଇଁଚାଳିଶଟି ଦେଶର ପ୍ରତିନିଧିଙ୍କ ଆଗରେ ଆମେ ଏକ କାୟୋଜେନ୍ ନାଟକ ପ୍ରଦର୍ଶନ କଲୁ । ପ୍ରଥମ ଥର ପାଇଁ ଜାପାନୀ ବଧିର ଅଭିନେତାମାନେ ବିଦେଶରେ କାର୍ଯ୍ୟକ୍ରମ କରିପାରିଲେ ଏବଂ ଏହା ସମ୍ଭବ ହୋଇପାରିଲା କେବଳ ଆପଣମାନେ ଏତେ ସଂଖ୍ୟାରେ ତୋତ୍ତୋ-ଚ୍ୱାନ୍ ବହି ପଢିଥିବାରୁ ।

ଦୁଇ ବର୍ଷ ତଳେ, ତୋତ୍ତୋ ପ୍ରତିଷ୍ଠାନ ଯୋଗୁଁ ଏବଂ ବହିଟିର ଲୋକପ୍ରିୟତା ଯୋଗୁଁ ମୁଁ ସମ୍ରାଟଙ୍କ ବାର୍ଷିକ ବସନ୍ତ ଉଦ୍ୟାନ ମିଳନକୁ ନିମନ୍ତ୍ରଣ ପାଇଲି । ସେଠାରେ ନୋବେଲ ପୁରସ୍କାର ବିଜେତା କେନ୍ଇଚି ଫୁକୁଇଙ୍କ ପରି ବ୍ୟକ୍ତି ଉପସ୍ଥିତ ଥିଲେ ଏବଂ ମୁଁ ଆଶାତୀତ ଆନନ୍ଦ ପାଇଲି ଯେତେବେଳେ ସମ୍ରାଟ ମୋତେ କହିଲେ, "ଆପଣଙ୍କ ବହିଟିର ଏତେ ଅଧିକା ଚାହିଦା ହେବା ପ୍ରଶଂସନୀୟ ।"

1981 ମସିହାଟିକୁ ଆନ୍ତର୍ଜାତିକ ବିକଳାଙ୍ଗ ବର୍ଷ ଭାବେ ପାଳନ କରାଯାଇଥିଲା । ଡିସେମ୍ବର 9 (ଜାପାନରେ ଏବେ ଏହାକୁ ବିକଳାଙ୍ଗ ଦିବସ କୁହାଯାଉଛି) ତାରିଖରେ ଜାପାନର ପ୍ରଧାନମନ୍ତ୍ରୀ ସୁଜୁକିଙ୍କଠାରୁ ମୁଁ ଏକ ପୁରସ୍କାର ପାଇଲି । ଶିଶୁପୁସ୍ତକ ଲେଖକ ୟୁଜୋ ୟାମାମୋତୋଙ୍କ ସ୍ମୃତିରେ "ଡ୍ରେସାଇଡ୍ ଷ୍ଟୋନ୍" ସାହିତ୍ୟ ପୁରସ୍କାର ସହ ମୁଁ ଆହୁରି ଅନେକ ପୁରସ୍କାର ବି ପାଇଛି ।

ତୋତ୍ତୋ-ଚ୍ୱାନ୍‌କୁ ନେଇ ସିନେମା, ଟେଲିଭିଜନ ନାଟକ, ଆନିମେସନ୍ ସିନେମା, ନାଟକ, କିମ୍ବା ଗୀତିନାଟ୍ୟ କରିବାକୁ ଅସଂଖ୍ୟ ଲୋକ ମୋତେ ଅନୁରୋଧ କରିଛନ୍ତି । କିନ୍ତୁ ମୋର ଧାରଣା ଯେ ଚିହିରୋ ଇୱାସାକିଙ୍କର ଚିତ୍ର ଏବଂ ପାଠକଙ୍କର ନିଜ କଳ୍ପନାରେ ରୂପ ନେଇଥିବା ଚରିତ୍ରଗୁଡିକୁ ଟପିବା କଷ୍ଟକର ହେବ, ତେଣୁ ମୁଁ ଅନୁରୋଧଗୁଡିକ ରକ୍ଷା କରିନାହିଁ । କିନ୍ତୁ ଏହି କାହାଣୀଟିକୁ ପୂରା ଯନ୍ତ୍ରସଙ୍ଗୀତ ରୂପ ଦେବା ପାଇଁ ଶିନ୍‌ସେଇ ନିହୋନ୍ ସିମ୍ଫୋନୀ ଅର୍କେଷ୍ଟ୍ରାର ପ୍ରସ୍ତାବରେ ମୁଁ ରାଜି ହେଲି, କାରଣ ସଙ୍ଗୀତ କଳ୍ପନାକୁ ବାନ୍ଧିଦିଏନାହିଁ । ଆକିହିରୋ କୋମୋରିଙ୍କ ରଚନାଶୈଳୀ ମୋ ଲେଖାଠାରୁ ଅଧିକ ହୃଦୟସ୍ପର୍ଶୀ ଏବଂ ମୋ ନିଜ ବର୍ଣ୍ଣନା ଥାଇ ଶିନ୍‌ସେଇ ନିହୋନ୍ ସିମ୍ଫୋନୀ ଏହାକୁ ଜାପାନର ବିଭିନ୍ନ ଭାଗରେ ପ୍ରଦର୍ଶନ କରି ଚାଲିଛନ୍ତି । ଏହା ଏକ ରେକର୍ଡ଼ ଆକାରରେ ମଧ୍ୟ ମିଳୁଛି ।

ତୋତ୍ତୋ-ଚ୍ୱାନ୍ ପ୍ରକାଶିତ ହେବାର ବର୍ଷକ ପରେ 1982ରେ ଶ୍ରୀମତୀ ଡରୋଥି ବ୍ରିଟନ୍ ଏହାର ଇଂରାଜୀ ଅନୁବାଦ ପୂରା କଲେ । ସେ ଉଭୟ ସଙ୍ଗୀତକାର ଓ କବି ଏବଂ ତାଙ୍କ ଅନୁବାଦ ଅତି ଉଚ୍ଚକୋଟୀର । ମୋର ମୂଳଲେଖାର ଛନ୍ଦ ଓ ଭାବ ସେଥିରେ ଅବିକଳ ରହିଛି । ତାଙ୍କ ଅନୁବାଦଟି ମୋ ପାଇଁ ହୃଦୟସ୍ପର୍ଶୀ ହୋଇଥିଲା । ଇଂରାଜୀ ଅନୁବାଦଟି ମଧ୍ୟ ଜାପାନରେ ସର୍ବାଧିକ ବିକ୍ରି ହୋଇଥିବା ଇଂରାଜୀ ବହି

ଭାବେ ଏକ ରେକର୍ଡ ସୃଷ୍ଟି କରିଛି । ଏହାର ପ୍ରାୟ ଚାରି ଲକ୍ଷ ଖଣ୍ଡ ବିକ୍ରି ହୋଇଥିଲା ।

ଏକା ସମୟରେ ଆମେରିକାରେ ଏହାର ଇଂରାଜୀ ସଂସ୍କରଣଟି ମୁକ୍ତି ଲାଭ କରିଥିଲା । ଏହି ଅବସରରେ ଜନି କାର୍ସନ୍‌ଙ୍କର "ଆଜିରାତି" ଦୂରଦର୍ଶନ କାର୍ଯ୍ୟକ୍ରମରେ ମୁଁ ଭାଗ ନେଇଥିଲି । ପରେ ବିଭିନ୍ନ ଭାଷଣ ଏବଂ ସମ୍ବାଦ କାର୍ଯ୍ୟକ୍ରମରେ ଭାଗ ନେବା ପାଇଁ ମୋତେ ବହୁତ ଅନୁରୋଧ ମିଳିଥିଲା ଏବଂ ଆମେରିକାର ଏକ ସମ୍ମାନନୀୟ ଖବରକାଗଜ 'ଦି ନିଉୟର୍କ ଟାଇମ୍ସ' ତା'ର ରବିବାର ବିଶେଷାଙ୍କରେ ଏକ ଲମ୍ବା ସମୀକ୍ଷା ବାହାର କରିଥିଲା । ଆମେରିକାର ଗଣ ମାଧ୍ୟମ ବହିଟିର ସମୀକ୍ଷା କରିବା ଛଡା ଜାପାନୀ ଟେଲିଭିଜନ୍‌ରେ ଜଣେ ମହିଳା ଶିଳ୍ପୀଙ୍କ ପ୍ରତିଷ୍ଠାର ନୂତନତା ଉପରେ ବିଶେଷ ଆଲୋଚନା କରିଥିଲେ । ଜାପାନ ସମ୍ପର୍କୀୟ ଏକ ବିଶେଷ ସଂଖ୍ୟାରେ 'ଟାଇମ୍' ପତ୍ରିକା ମୋ ସହିତ ଏକ ସାକ୍ଷାତକାର ପାଇଁ ଗୋଟିଏ ପୂରା ପୃଷ୍ଠା ଦେଇଥିଲେ ।

ଚୀନ ଓ କୋରିଆରେ ତୋତ୍ତୋ-ଚାନ୍‌ର ଅନୁବାଦ ପ୍ରକାଶିତ ହୋଇସାରିଛି । ଜାପାନ ସହିତ ଉଭୟ ଦେଶର ଗ୍ରନ୍ଥସ୍ୱତ୍ତ୍ୱ ଚୁକ୍ତି ହୋଇନଥିବାରୁ ଅନୁବାଦ କଥା ମୁଁ ଜାଣିନଥିଲି । ଚୀନର ଜଣେ ଭଦ୍ର ବ୍ୟକ୍ତି ଏଥିରୁ ଗୋଟିଏ ମୋର ଜଣେ ଜାପାନୀ ବନ୍ଧୁଙ୍କ ଜରିଆରେ ମୋ ପାଖକୁ ପଠାଇବାରୁ ମୁଁ ଜାଣିଲି । ଚୀନରେ ଦୁଇ ବା ତିନୋଟି ଭିନ୍ନ ଅନୁବାଦ କରାଯାଇଛି ବୋଲି ଶୁଣାଯାଏ । ପୋଲାଣ୍ଡ ଓ ଫିନ୍‌ଲାଣ୍ଡର ପ୍ରକାଶକମାନେ ଏହାକୁ ଛାପିବା ପାଇଁ ପ୍ରସ୍ତୁତି ଚଳାଇଛନ୍ତି ଏବଂ ଅନୁବାଦ କାମ ଚାଲିଛି । ଚେକୋସ୍ଲୋଭାକିଆ ପ୍ରକାଶକମାନଙ୍କ ସହିତ କଥାବାର୍ତ୍ତା ଚାଲିଛି ଏବଂ ୟୁରୋପର ଅନ୍ୟ ଦେଶଗୁଡିକରୁ ବି ଏଥିପାଇଁ ଚିଠିପତ୍ର ଆସୁଛି । ମୁଁ ଖୁସି ଯେ ତୋତ୍ତୋ-ଚାନ୍ ମାଧ୍ୟମରେ ଅନେକ ଲୋକ ଜାପାନ ସମ୍ପର୍କରେ ଜାଣିପାରିବେ । ମୁଁ ଆମେରିକାରୁ ବି ପ୍ରଶଂସକଙ୍କ ଚିଠି ପାଇଛି । ଜଣେ ପ୍ରାଥମିକ ସ୍କୁଲ ଛାତ୍ର ଲେଖିଛି, "ତୋତ୍ତୋ-ଚାନ୍, ତୁମେ ଜଣେ ସୁନ୍ଦର ଝିଅ ନା ? ଯଦି ହଁ, ତୁମେ ଆମ ଘରକୁ ଖାଇବା ପାଇଁ ଆସିବ ।" ବହିଟିକୁ ଶ୍ରେଣୀରେ ପଢି ଶୁଣାଇଥିବା ଶିକ୍ଷୟିତ୍ରୀ ଜଣକ ଚିଠି ତଳେ ଯୋଡି ଦେଇଥିଲେ ଯେ ସେ ଏକ ଗରିବ ନିଗ୍ରୋ ପରିବାରର ପିଲା ।

ହାଇସ୍କୁଲର ଅନେକ ସାନ, ବଡ ଝିଅ ଚିଠିରେ ଲେଖିଛନ୍ତି, "ବହିଟି ସ୍ନେହ ମମତାରେ ଭରିରହିଛି ।" ଏହାକୁ ମୁଁ ବେଶ୍ ଗୁରୁତ୍ୱପୂର୍ଣ୍ଣ ଭାବୁଛି । ତାଙ୍କୁ କ'ଣ ଏତେ ଅଧିକ ଛୁଇଁଛି, ତାହା ସେମାନେ ବୁଝାଇନାହାନ୍ତି । ଝିଅ ଝିଅ ଭିତରେ ଏଥିରେ ଫରକ ଥାଇପାରେ । କିନ୍ତୁ ମୁଁ ଭାବୁଛି ଏହା ସତ ଯେ ପିଲାମାନେ ସବୁବେଳେ ସ୍ନେହ ଓ ଆଦରର ପ୍ରତିଦାନ ଦେବାକୁ ପ୍ରସ୍ତୁତ ।

ନିକଟରେ ମୁଁ ନୋବେଲ୍ ଶାନ୍ତି ପୁରସ୍କାର ପାଇଥିବା ଆନ୍ତର୍ଜାତିକ ଅନୁଷ୍ଠାନ ୟୁନିସେଫର ଜଣେ 'ଶୁଭେଚ୍ଛୁ ଦୂତ' (ଗୁଡ୍‌ୱିଲ୍ ଆମ୍ବାସାଡର୍) ଭାବେ ନିଯୁକ୍ତି ପାଇଛି । ଏହା ତୋତ୍ତୋ-ଚାନ୍ ବହି ଯୋଗୁଁ ହିଁ ସମ୍ଭବ ହୋଇଛି । ଏହି ସଙ୍ଗଠନର ସର୍ବୋଚ୍ଚ କର୍ମକର୍ତ୍ତା, ୟୁନିସେଫ୍‌ର ନିଉୟର୍କ ସେକ୍ରେଟାରିଏଟ୍‌ର ଏକ୍‌ଜିକ୍ୟୁଟିଭ୍ ଡାଇରେକ୍ଟର, ଜଣେ ସାଙ୍ଗଠାରୁ ବହିଟିଏ ପାଇ ପଢିଲେ । ଏହା ତାଙ୍କୁ ଖୁବ୍ ଭଲ ଲାଗିଲା ଏବଂ ସେ କହିଲେ ଯେ ମୋ ଚିନ୍ତାଧାରା ୟୁନିସେଫ୍‌ର ଚିନ୍ତାଧାରା ସହ ପୂରାପୂରି ସମାନ । ସେ

ଏସିଆରୁ ଜଣେ ଶୁଭେଚ୍ଛୁ ଦୂତ ଖୋଜୁଥିଲେ ଏବଂ ଏଥିପାଇଁ ସେ ମୋତେ ବାଛିଛନ୍ତି । ଆମେରିକା ଅଭିନେତା ଡାନି କେ, ବ୍ରିଟିଶ ଅଭିନେତା ପିଟର୍ ଉସ୍ତିନୋଭ୍ ଓ ନରୱେ ଅଭିନେତ୍ରୀ ଲିଭ୍ ଉଲ୍‌ମାନ ଏଯାଏଁ ତିନିଜଣ ଜଣାଶୁଣା ଶୁଭେଚ୍ଛୁ ଦୂତ ଥିଲେ । ମୁଁ ଏବେ ଚତୁର୍ଥ ହେବି । ଦିନକୁ ଚାଳିଶ ହଜାର ଛୁଆ ବା ବର୍ଷକୁ ଦେଢ କୋଟି ଛୁଆ କ୍ଷୁଧା ଓ କ୍ଷୁଧାଜନିତ ରୋଗରେ ମରୁଛନ୍ତି । ମୋ କାମ ହେଉଛି ନିଜ ଆଖିରେ ସେମାନଙ୍କ ଅବସ୍ଥା ଦେଖିବା ଏବଂ ଆପଣମାନଙ୍କୁ ପ୍ରକୃତ ଖବର ଜଣାଇବା । ଏବର୍ଷ ଖରାଦିନେ ମୁଁ ଆଫ୍ରିକା ଯିବି ଓ ଯେତେ ଶୀଘ୍ର ସମ୍ଭବ ମୁଁ ଏସିଆର ବିଭିନ୍ନ ଦେଶକୁ ଯିବାର ଯୋଜନା ରଖିଛି । ଶ୍ରୀ କୋବାୟାଶୀ ବଞ୍ଚିଥିଲେ ନିଶ୍ଚୟ ଖୁବ୍ ଖୁସି ହୋଇଥା'ନ୍ତେ । "ତମେ ସମସ୍ତେ ଏକ । ଯିଏ ଯାହା କଲେ ବି ଦୁନିଆରେ ସମସ୍ତେ ମିଶିକରି ରହିଛ !" ଶ୍ରୀ କୋବାୟାଶୀ ସବୁବେଳେ ଏହା କହୁଥିଲେ ।

ବସନ୍ତ, 1984 **ତେତ୍‌ସୁକୋ କୁରୋୟାନାଗି**



## ରେଳଷ୍ଟେସନ୍

ଜିଉଗାଓକା ଷ୍ଟେସନ୍‌ରେ ଓଇମାଚି ରେଳଗାଡ଼ିରୁ ଦୁହେଁ ଓହ୍ଲାଇ ପଡ଼ିଲେ । ତୋତ୍ତୋ-ଚ୍ୟାନ୍‌ର ହାତକୁ ଧରି ତା'ର ମା' ଫାଟକ ଆଡ଼କୁ ଚାଲିଲେ । ତୋତ୍ତୋ-ଚ୍ୟାନ୍ ଆଗରୁ ପ୍ରାୟ କେବେ ଟ୍ରେନ୍‌ରେ ଚଢ଼ି ନଥିଲା । ଧରିଥିବା ଟିକେଟଟିକୁ ଏବେ ଫାଟକରେ ଦେଇଦେବାକୁ ତା'ର ମନ ନଥିଲା ।

"ମୁଁ ଏଇଟାକୁ ରଖିବି ?",ତୋତ୍ତୋ-ଚ୍ୟାନ୍ ପଚାରିଲା ଟିକେଟରଖାଳୀଙ୍କୁ ।

"ନା, ତୁମେ ରଖି ପାରିବନି",କହି ସେ ଟିକେଟଟି ନେଲେ ।

ଟିକେଟରେ ଭରି ରହିଥିବା ବାକ୍ସକୁ ଦେଖାଇ କହିଲା, "ସେ ସବୁ କ'ଣ ତମର ?"

"ନାଇଁ, ସେ ସବୁ ରେଳଷ୍ଟେସନର", ଲୋକଙ୍କଠୁ ଟିକେଟ ରଖୁ ରଖୁ ସେ ଉତ୍ତର ଦେଲେ ।

"ଓ !", ତୋତ୍ତୋ-ଚ୍ୟାନ୍ ବଡ଼ ଲୋଭରେ ବାକ୍ସ ଭିତରକୁ ଚାହିଁ କହିଚାଲିଲା, "ବଡ଼ ହେଲେ ମୁଁ ରେଳଟିକେଟ ବିକିବି ।"

ଟିକେଟରଖାଳୀ ପ୍ରଥମ ଥର ପାଇଁ ତାକୁ ଚାହିଁଲେ । କହିଲେ,"ମୋ ସାନପୁଅ ବି ଷ୍ଟେସନ୍‌ରେ କାମ କରିବାକୁ ଚାହୁଁଛି । ତେଣୁ ତୁମେ ଦୁହେଁ ଏକାଠି ଏ କାମ କରିପାରିବ ।"

ତୋତୋ-ଚ୍ୱାନ୍ କଡକୁ ଘୁଞ୍ଚିଯାଇ ଟିକେଟ କଲେକ୍ଟରଙ୍କୁ ନିରେଖି ଚ୍ୱାହିଁଲା। ସେ ମୋଟାସୋଟା ଥିଲେ, ଚଷମା ଲଗାଇ ଥିଲେ ଓ ଦୟାଳୁ ଜଣା ପଡୁଥିଲେ।

ହୁଁ...ଉଁ..." ସେ ଅଣ୍ଟାରେ ହାତ ରଖି କଥାଟି ଭାବିଲା। "ତମ ପୁଅ ସହିତ କାମ କରିବାରେ ମୋର ଆପତ୍ତି ନାହିଁ। ମୁଁ ଏ କଥା ଭାବି ଦେଖିବି। କିନ୍ତୁ ଏବେ ମୁଁ ଗୋଟେ ନୂଆ ସ୍କୁଲ୍‌କୁ ଯାଉଛି। ତେଣୁ ମୋର ବେଳ ନାହିଁ।" ମା'ଙ୍କ ପାଖକୁ ଦୌଡ଼ି ଯାଉ ଯାଉ ସେ ପାଟି କଲା, "ମୁଁ ଜଣେ ଟିକେଟବିକାଳୀ ହେବି।"

ମା' ମୁରୁକି ହସିଲେ। କହିଲେ, "ତୁ ଜଣେ ଗୁଇନ୍ଦା ହେବୁ।" ତୋତୋ-ଚ୍ୱାନ୍ ମା'ଙ୍କ ହାତ ଧରି ଚ୍ୱାଲିଲା। ତା'ର ମନେ ପଡିଲା ଯେ କାଲି ଯାଏଁ ସେ ନିଶ୍ଚିତ ଥିଲା ଯେ ସେ ଜଣେ ଗୁଇନ୍ଦା ହେବ। କିନ୍ତୁ ଟିକେଟରେ ଭରି ରହିଥିବା ଗୋଟିଏ ବାକ୍ସର ମାଲିକ ହେବାଟା କେତେ ମଜାର କଥା।

"ସାବାସ୍!", ବାଃ ବଢ଼ିଆ କଥାଟିଏ ମନକୁ ଆସିଲା। ସେ ମା'ଙ୍କୁ ବଡ ପାଟିରେ କହିଲା, "ମୁଁ ଟିକେଟବିକାଳୀ ବେଶରେ ଜଣେ ଗୁଇନ୍ଦା ହେବି।"

ମା' ଉତ୍ତର ଦେଲେନି। ଟିକି ଫୁଲରେ ସଜା ଗୋଟିଏ ଗୋଲେଇ ଟୋପି ସେ ପିନ୍ଧିଥିଲେ। ତାଙ୍କ ସୁନ୍ଦର ମୁହଁଟି ବେଶ୍ ଗମ୍ଭୀର ଜଣାପଡୁଥିଲା। ସତରେ ତାଙ୍କୁ ବଡ ଚିନ୍ତା ଘାରିଥିଲା। ନୂଆ ସ୍କୁଲରେ ଯଦି ସେମାନେ ତୋତୋ-ଚ୍ୱାନ୍‌କୁ ନନିଅନ୍ତି ତାହେଲେ କ'ଣ ହେବ? ତୋତୋ-ଚ୍ୱାନ୍ ରାସ୍ତାରେ ଡେଇଁ ଡେଇଁକା ଗୁଣୁ ଗୁଣୁ ହୋଇ ଗପି ଚ୍ୱାଲିଛି। ମା'ଙ୍କ ଚିନ୍ତା କଥା ତାକୁ ଜଣା ନଥାଏ। ମା'ଙ୍କୁ ଚ୍ୱାହିଁ ସେ ଖୁସିରେ କହିଲା, "ମୁଁ ଏବେ ମୋ ମନକୁ ବଦଳାଇ ଦେଇଛି। ମୁଁ ଭାବୁଛି ଗୋଟିଏ ଛୋଟ ବାଜା ଦଳରେ ମିଶିବି। ରାସ୍ତାରେ ବୁଲି ବୁଲି ନୂଆ ଦୋକାନ ବିଷୟରେ ପ୍ରଚ୍ୱାର କରିବି।" ମା' ଟିକିଏ ହତାଶିଆ ସ୍ୱରରେ କହିଲେ, "ଜଲ୍‌ଦି ଚ୍ୱାଲ୍। ଡେରି ହୋଇଯିବ। ପ୍ରଧାନ ଶିକ୍ଷକ ତେଣେ ଅପେକ୍ଷା କରିଥିବେ। ରାସ୍ତାକୁ ଚ୍ୱାହିଁ ଚୁପ୍‌ଚ୍ୱାପ୍ ଚ୍ୱାଲ୍।"

ଆଗରେ ଗୋଟିଏ ଛୋଟ ସ୍କୁଲ୍‌ର ଫାଟକ ପାଖେଇ ଆସୁଥାଏ।

## *ଝରକାରେ କୁନି ଝିଅଟି*

ମା'ଙ୍କ ଚିନ୍ତାର କାରଣ ବି ଥିଲା। ତୋତୋ-ଚ୍ୱାନ୍ ସ୍କୁଲ୍ ଯାଉ ଯାଉ ତା'କୁ ସ୍କୁଲ୍‌ରୁ ବାହାର କରି ଦିଆଯାଇଥିଲା। ପ୍ରଥମ ଶ୍ରେଣୀରୁ ପୁଣି କିଏ ବିଦାହୁଏ!

ସପ୍ତାହକ ତଳର କଥା। ତୋତୋ-ଚ୍ୱାନ୍‌ର ସ୍କୁଲ ଦିଦି ତା'ର ମା'ଙ୍କୁ ଡକାଇଥିଲେ।

ସେ ସିଧାସଳଖ କହିଲେ, ''ଆପଣଙ୍କ ଝିଅ ମୋର ପୂରା ଶ୍ରେଣୀକୁ ଗଣ୍ଡଗୋଳିଆ କରୁଛି। ମୁଁ କହିବାକୁ ବାଧ୍ୟ ହେଉଛି ଯେ ଆପଣ ଝିଅକୁ ଆଉ କେଉଁ ସ୍କୁଲ୍‌କୁ ନେଇ ଯାଆନ୍ତୁ।'' ଅଳ୍ପ ବୟସର ଶିକ୍ଷକ ଜଣକ ଦୀର୍ଘଶ୍ୱାସ ଛାଡି କହିଲେ, ''ମୁଁ ମୋଟେ ତାକୁ ପାରୁନାହିଁ।''

ମା' କାବା ହୋଇଗଲେ। ସତରେ ତୋତୋ-ଚ୍ୱନ୍ କ'ଣ ଏମିତି କରି ପକାଇଲା ଯେ ସାରା ଶ୍ରେଣୀ ଗୋଳମାଳ ହୋଇଗଲା !

ଦିଦି ବି ଟିକିଏ ଘାବରେଇ ଯାଇଥିଲେ। ତାଙ୍କର ଛୋଟ ଛୋଟ ବାଳକୁ ହାତରେ ସଜାଡି ନେଇ ତୋତୋ-ଚ୍ୱନ୍‌ର କଥା କହିବାକୁ ଲାଗିଲେ, ''ଆଚ୍ଛା, ଏଇଠୁ ଆରମ୍ଭ କରିବା। ସିଏ ତା'ର ଡେସ୍କର ଘୋଡଣୀକୁ ଶହେ ଥର ଖୋଲେ ଆଉ ବନ୍ଦ କରେ। ମୁଁ ତାକୁ କହିଛି ଯେ କେବଳ କିଛି ରଖିବାକୁ ବା କାଢିବାକୁ ଥିଲେ ଡେସ୍କ ଖୋଲିବ। ଆପଣଙ୍କ ଝିଅର ସବୁବେଳେ କିଛି କାଢିବା ଓ ରଖିବା ଲାଗିରହିଛି। କେତେବେଳେ ଖାତା, କେତେବେଳେ ପେନ୍‌ସିଲ୍ ଡବା, ପୁଣି ବହି, ଆଉ ଡେସ୍କ ଭିତରେ ଥିବା ସବୁକିଛି। କିଛି ଲେଖିବାକୁ ହେଲେ ଆପଣଙ୍କ ଝିଅ ଡେସ୍କ ଖୋଲି ତା'ର ଖାତା ବାହାର କରିବ, ଆଉ ଧଡ୍‌କରି ବନ୍ଦ କରିବ। ତା'ପରେ ସେ ପୁଣି ଡେସ୍କ ଖୋଲିବ, ସେ ଭିତରେ ମୁଣ୍ଡଟା ପୂରେଇ ଦେଇ ପେନ୍‌ସିଲ୍ କାଢିବ, ଆଉ ଧଡ୍‌କରି ଢାଙ୍କୁଣୀଟା ପକାଇବ। ଗୋଟିଏ ଅକ୍ଷର ଲେଖିବ। ଯଦି ଲେଖୁ ଲେଖୁ ଖରାପ ବା ଭୁଲ୍ ହୋଇଗଲା ସେ ପୁଣି ଡେସ୍କକୁ ଖୋଲିବ, ରବର କାଢିବ, ଡେସ୍କ ବନ୍ଦ କରିବ, ଅକ୍ଷରଟି ଲିଭେଇଦେବ। ରବର ରଖିବାକୁ ପୁଣି ଡେସ୍କ ଖୋଲିବ ଓ ବନ୍ଦ କରିବ, ଏ ସବୁ କାମ ପୁଣି ପୂରା ବେଗରେ। ଅକ୍ଷରଟିଏ ଲେଖିବା ପରେ ସେ ଗୋଟିଗୋଟି କରି ସବୁ ଜିନିଷ ଡେସ୍କ ଭିତରେ ରଖିବ। ସେ ପେନ୍‌ସିଲ୍‌ଟା ରଖି ଡେସ୍କ ବନ୍ଦ କରିବ, ତା' ପରେ ପୁଣି ଖାତା ରଖିବା ପାଇଁ। ତା' ପରେ ପର ଅକ୍ଷରଟି ଲେଖିବା ପୂର୍ବରୁ ଗୋଟି ଗୋଟି କରି ସବୁ କାଢିବ। ପ୍ରଥମେ ଖାତା, ତା'ପରେ ପେନ୍‌ସିଲ୍, ତା'ପରେ ରବର - ପ୍ରତି ଜିନିଷ ପାଇଁ ସେ ଥରେ ଡେସ୍କଟି ଖୋଲେ ଆଉ ବନ୍ଦ କରେ। ଏଥିରେ ମୋ ମୁଣ୍ଡ ଘୂରାଇଯାଏ । ଆଉ ମୁଁ ତାକୁ ଗାଳି ବି ଦେଇପାରେନି । କାରଣ ପ୍ରତ୍ୟେକ ଥର ତା'ର କିଛି ଦରକାରଥିବାରୁ ସେ ଡେସ୍କ ଖୋଲେ ଆଉ ବନ୍ଦ କରେ ।''

ସେ ସବୁ କଥା ମନେ ପଡି ଦିଦିଙ୍କ ଆଖିପତା ଅଧିକ ଥରି ଉଠିଲା। ମା' କିନ୍ତୁ ସାଙ୍ଗେ ସାଙ୍ଗେ ବୁଝିଗଲେ ତୋତୋ-ଚ୍ୱନ୍ କାହିଁକି ଏତେଥର ତା'ର ଡେସ୍କକୁ ଖୋଲୁଥିଲା ଆଉ ବନ୍ଦ କରୁଥିଲା। ତାଙ୍କର ମନେପଡିଲା ପ୍ରଥମ ଦିନ ସ୍କୁଲରୁ ଘରକୁ ଫେରିବା ବେଳକୁ ତୋତୋ-ଚ୍ୱନ୍ କେତେ ଉଲ୍ଲସିତ ଥିଲା। ସେ କହିଥିଲା, ''ସ୍କୁଲ୍‌ଟା କି ଚମତ୍କାର ! ମୋର ଘର ଡେସ୍କର ଡ୍ରୟରଗୁଡିକ ଟାଣିବାକୁ ପଡୁଛି। କିନ୍ତୁ ସ୍କୁଲରେ ଥିବା ଡେସ୍କର ଉପର ପଟାକୁ ଟେକିଲେ ଖୋଲି ଯାଉଛି। ଏହା ଗୋଟିଏ ବାକ୍ସ ପରି, ଆଉ ସେ ଭିତରେ ସବୁ ଜିନିଷ ରଖିହେବ। ଏହା ଖୁବ୍ ବଢିଆ !''

ଡେସ୍କ ଖୋଲିବା ଓ ବନ୍ଦ କରିବାରେ ମଜ୍ଜି ରହିଥିବା ତୋତୋ-ଚ୍ୱନ୍‌ର ଚିନ୍ତ

ମା'ଙ୍କ ଆଖି ଆଗରେ ଭାସି ଉଠିଲା । ମା' କିନ୍ତୁ ଏହାକୁ ଦୁଷ୍ଟାମିରେ ଗଣି ନଥିଲେ। ଯାହାହେଲେ ବି କିଛିଦିନ ପୁରୁଣା ହୋଇ ଗଲେ ତୋତୋ-ଗ୍ୱାନ୍ ବୋଧେ ଏ ଭଳି କରିବା ବନ୍ଦ କରିଦେବ। କିନ୍ତୁ ସେ ଦିଦିଙ୍କୁ ଖାଲି କହିଲେ,''ମୁଁ ତାକୁ ତାଗିଦ୍ କରିଦେବି।''

ଦିଦି ପୁଣି ବଡ ପାଟିରେ କହିଲେ, ''ଖାଲି ଏତିକି ହୋଇଥିଲେ ହୁଏତ ଚଳିଥା'ନ୍ତା । କିନ୍ତୁ ଯେତେବେଳେ ସେ ଡେସ୍କ ଧଡ ଧଡ କରୁନି, ସେ ଠିଆ ହୋଇ ରହୁଛି। ଏପରିକି ଶ୍ରେଣୀ ସରିବା ଯାଏଁ।''

''ଛିଡା ହୋଇ ରହୁଛି ? କେଉଁଠି ?'', ମା' ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

''ଝରକା ପାଖରେ'', ବିରକ୍ତି ଦେଖାଇ ଦିଦି କହିଲେ ।

''ଝରକା ପାଖରେ କାହିଁକି?'' ମା' ଆଶ୍ଚର୍ଯ୍ୟ ହୋଇଗଲେ।

ଦିଦି ପ୍ରାୟ ଚିତ୍କାର କରି ଉଠିଲେ, ''ରାସ୍ତାରେ ଯାଉଥିବା ବାଜାବାଲାଙ୍କୁ ଡାକିବା ପାଇଁ।''

ଦିଦିଙ୍କର କହିବାର ସାରକଥା ଏହି ଯେ ଘଣ୍ଟାଏଁ ଯାଏଁ ଡେସ୍କରେ ଲାଗିବା ପରେ ତୋତୋ-ଗ୍ୱାନ୍ ଝରକାକୁ ଲାଗି ଠିଆ ହେବ ଓ ବାହାରକୁ ଚାହିଁଥିବ। ଚୁପ୍‌ଚାପ୍ ହୋଇ ଛିଡା ହେଲେ ବି ଦିଦିଙ୍କର କିଛି କହିବାର ନଥିଲା। ହେଲେ ଚକଚକିଆ ପୋଷାକ ପିନ୍ଧି ରାସ୍ତାରେ ଯାଉଥିବା ବାଜାବାଲାଙ୍କୁ ଦେଖି ତୋତୋ-ଗ୍ୱାନ୍ ଡାକ ଛାଡିବ। ତୋତୋ-ଗ୍ୱାନ୍‌ର ଖୁସି ଆଉ ଦିଦିଙ୍କର ଦୁଃଖ ଯେ ତାଙ୍କ ଶ୍ରେଣୀଘରଟି ତଳ ମହଲାରେ ଓ ରାସ୍ତା କଡରେ। ମଝିରେ କେବଳ ଅଳ୍ପ ଉଚ୍ଚର ବାଡଟିଏ। ତେଣୁ ଶ୍ରେଣୀ ଘର ଭିତରୁ ରାସ୍ତାରେ ଯାଉଥିବା ଲୋକଙ୍କ ସହ କଥା ହେବା ସହଜ । ତୋତୋ-ଗ୍ୱାନ୍‌ର ଡାକରେ ବାଜାବାଲାମାନେ ଝରକା ପାଖକୁ ଆସିଗଲେ,'ଆସିଲେ, ଆସିଲେ' କହି ସେ ଚିଲେଇବ। ସେମାନେ ଆସିଙ୍କଗଲେ ସବୁ ପିଲା ଝରକା ପାଖରେ ଜମା ହେବେ ଓ ବାଜାବାଲାଙ୍କୁ ଡାକିବାରେ ଲାଗିଯିବେ।

''ଟିକେ ବାଜା ବଜାଅ'', ତୋତୋ-ଗ୍ୱାନ୍ କହିବ। ଆଉ ବାଜା ଦଳଟି ତାଙ୍କ ତୁରୀ, ଗିନି, ଡ୍ରମ୍ ଆଦି ବଜେଇ ପିଲାଙ୍କ ପାଇଁ ସଙ୍ଗୀତ ଆସରଟିଏ ଜମାଇ ଦିଅନ୍ତି। ଦିଦି ବିଚାରି ଆଉ କରିବେ କ'ଣ ? ସେହି ଧୁମ୍‌ଧଡାସ୍ ବନ୍ଦ ହେବା ଯାଏଁ ଅନାଇ ରହନ୍ତି।

ଶେଷରେ ବାଜା ସରେ। ବାଜାବାଲାମାନେ ତାଙ୍କ ବାଟ ଧରନ୍ତି। ପିଲାମାନେ ନିଜ ଜାଗାକୁ ଫେରି ଯାଆନ୍ତି। କେବଳ ତୋତୋ-ଗ୍ୱାନ୍‌କୁ ଛାଡି । ଦିଦି ପଚାରିଲେ ତୋତୋ-ଗ୍ୱାନ୍ ଗମ୍ଭୀର ହୋଇ କହେ, 'ଆଉ ଦଳେ ବାଜାବାଲା ଆସିପାରନ୍ତି। ସେମାନେ ନ ଅଟକି ଚାଲିଗଲେ କେଡେ ଖରାପ କଥା ହେବ । ମୋ ଶ୍ରେଣୀର ଅବସ୍ଥା କଥା ଆପଣ ବୁଝି ପାରୁଥିବେ ନିଶ୍ଚୟ।'' ଏତେ ଆବେଗରେ ଦିଦି ଏ ସବୁ କହିଗଲେ ଯେ ତାଙ୍କ ଉପରେ ମା'ଙ୍କର ଦୟା ଆସିଲା। ପ୍ରାୟ କାନ୍ଦୁରା ସ୍ୱରରେ ସେ ପୁଣି ଆରମ୍ଭ କଲେ, ''ଏହାଛଡା....''

''ସେ ଆଉ ସବୁ କ'ଣ କରେ?'', ମା' ଦବି ଯାଇ ପଚାରିଲେ।

'ଆଉ କ'ଣ ?'', ଦିଦି ଚିହିଙ୍କି ଉଠିଲେ,''ସିଏ ଯାହା ଯାହା କରେ ମୁଁ ଯଦି

ଗଣି ବି ପାରନ୍ତି ମୁଁ ତାକୁ ନେଇଯିବାକୁ କହନ୍ତିନି।''

ଶିକ୍ଷକ ନିଜକୁ ଟିକେ ସମ୍ଭାଳି ନେଲେ। ମା'ଙ୍କୁ ସିଧା ଚାହିଁ କହିଲେ, ''ଗତକାଲି ତୋତୋ-ଚାନ୍ ସବୁଦିନ ପରି ଝରକା ପାଖରେ ଠିଆ ହୋଇଥିଲା। ସେ ରାସ୍ତାର ବାଜାବାଲାଙ୍କୁ ଅପେକ୍ଷା କରିବ ଭାବି ମୁଁ ପଢାଇବାକୁ ଆରମ୍ଭ କଲି। ହଠାତ୍ ସେ କାହାକୁ କହିବାକୁ ଲାଗିଲା, 'ତମେ କ'ଣ କରୁଛ?' ମୋ ଜାଗାରୁ ମୁଁ ଦେଖି ପାରିଲିନି ସେ କାହା ସହିତ ଗପୁଥିଲା। ସିଏ ପୁଣି ଡାକ ଛାଡିଲା, 'ତୁମେ କ'ଣ କରୁଛ?' ସେ ରାସ୍ତାରେ କାହାକୁ କିଛି କହୁନଥିଲା ବରଂ, ଉଚ୍ଚା ଜାଗାରେ ଥିବା କାହାକୁ ଏହା କହୁଥିଲା। ମୁଁ କୌତୂହଳୀ ନହୋଇ ରହି ପାରିଲି ନାହିଁ ଏବଂ ଉତ୍ତର ଶୁଣିବାକୁ ଚେଷ୍ଟା କଲି। କିନ୍ତୁ କିଛି ଉତ୍ତର ନଥିଲା। ତଥାପି ଆପଣଙ୍କ ଝିଅ ପଚାରି ଚାଲିଥାଏ, 'ତୁମେ କ'ଣ କରୁଛ?' ମୁଁ ଆଉ ପଢେଇ ନପାରି ଝରକା ପାଖକୁ ଦେଖିବାକୁ ଗଲି। ଝରକାରେ ମୁଣ୍ଡ ଗଳାଇ ମୁଁ ଉପରକୁ ଚାହିଁଲି। ଦେଖିଲି ଦଳେ ଘରଚଟିଆ ଓଳି ତଳେ ବସା ବାନ୍ଧୁଛନ୍ତି। ସେ ଚଢେଇ ଦୁଇଟି ସହ କଥା ହେଉଥାଏ। ମୁଁ ପିଲାଙ୍କୁ ଜାଣେ। ତେଣୁ ଚଢେଇ ସହ ଗପିବା କିଛି ବଡ କଥା ବୋଲି ମୁଁ କହିବିନାହିଁ। ହେଲେ ଶ୍ରେଣୀ ମଝିରେ ?''

ମା' କ୍ଷମା ମାଗିବା ପାଇଁ ପାଟି ଖୋଲିବା ଆଗରୁ ଦିଦି କହି ଚାଲିଲେ, ''ତା'ପରେ ଶୁଣନ୍ତୁ ତା'ର ଚିତ୍ର ଆଙ୍କିବା କଥା। ଜାପାନୀ ପତାକାର ଚିତ୍ର ଆଙ୍କିବା ପାଇଁ ମୁଁ ଦିନେ ପିଲାଙ୍କୁ କହିଲି। ସମସ୍ତେ ଠିକ୍ ଭାବେ ଆଙ୍କିଲେ, କିନ୍ତୁ ଆପଣଙ୍କ ଝିଅ ଅନ୍ୟ ପ୍ରକାରର ଗୋଟିଏ ପତାକା ଆଙ୍କିବାକୁ ଲାଗିଲା। ମୁଁ ଭାବିଲି ସେଥିରେ ବିଶେଷ ଭୁଲ୍ ନାହିଁ। କିନ୍ତୁ ହଠାତ୍ ଏହା ଚାରିପଟେ ସେ ଏକ ଝାଲର ଆଙ୍କିଲା। ଚାନ୍ଦୁଆର ଝାଲର ଭଳି। କିନ୍ତୁ ସେ କ'ଣ କରିଛି ମୁଁ ବୁଝିବା ଆଗରୁ ତା'ର ହଳଦିଆ ଝାଲର କାଗଜର ଧାର ଡେଇଁ ଡେସ୍କ ଉପରକୁ ମାଡି ଯାଇଥିଲା। ତା'ର ପତାକାଟିରେ ତ କାଗଜଟି ପ୍ରାୟ ଭରି ଯାଇଥିଲା। ତେଣୁ ଝାଲର କରିବା ପାଇଁ ବେଶୀ ଜାଗା ନଥିଲା। ଝାଲରର ଶହ ଶହ ହଳଦିଆ ଗାର କାଗଜ ଟପି ଟେବୁଲ୍ ଉପରକୁ ମାଡି ଗଲା। ସେ ବିକୃତ ହଳଦିଆ ରଙ୍ଗକୁ ଯେତେ ଘଷିଲେ ବି ଛାଡିଲା ନାହିଁ। ଭାଗ୍ୟକୁ ଗାରଗୁଡିକ କେବଳ ତିନୋଟି କଡରେ ପଡିଥିଲା।''

ଆଶ୍ଚର୍ଯ୍ୟ ହୋଇ ଶୁଣୁଥିବା ମା' ପଚାରିଲେ, ''କେବଳ ତିନି ପାଖରେ କାହିଁକି?''

ଦିଦି ହାଲିଆ ଜଣା ପଡୁଥିଲେ, ତଥାପି ସେ ବୁଝାଇଦେଲେ, ''ପତାକାର ବାମ ପଟେ ଖୁଣ୍ଟଟିଏ ଥିଲା। ତେଣୁ ଝାଲରଗୁଡିକ ତିନି ପଟେ ହିଁ ଥିଲା। ହେଲେ କ'ଣ ହେବ, ପତାକା ଖୁଣ୍ଟର ଚିତ୍ର କାଗଜ ଟପି ଏବେ ବି ରହିଛି।''

ଦିଦି ଏଥର ଉଠିଲେ ଓ ନିର୍ଲିପ୍ତ ଭାବରେ କଥା ଶେଷ କଲେ, ''କେବଳ ମୁଁ ନୁହେଁ, ପାଖ ଶ୍ରେଣୀର ଶିକ୍ଷକ ମଧ୍ୟ ହଇରାଣ ହୋଇଛନ୍ତି।''

ମା'ଙ୍କୁ ବାଧ୍ୟ ହୋଇ ଏ ବିଷୟରେ କିଛି କରିବାକୁ ପଡିଲା। ଅନ୍ୟ ପିଲାଙ୍କ ପାଇଁ ଏହା ଜମା ଠିକ୍ ନଥିଲା। ତାଙ୍କୁ ଅନ୍ୟ ଏକ ସ୍କୁଲ୍ ଖୋଜିବାକୁ ପଡିବ ଯେଉଁଠି ସେମାନେ ତାଙ୍କ କୁନି ଝିଅକୁ ବୁଝିପାରିବେ ଏବଂ ଅନ୍ୟ ଲୋକଙ୍କ ସହ ମିଳିମିଶି



ଚଲିବା ପାଇଁ ତାକୁ ଶିଖାଇବେ । ଏବେ ଯେଉଁ ସ୍କୁଲ୍‌କୁ ସେମାନେ ଯାଉଛନ୍ତି ବହୁତ ଖୋଜିବା ପରେ ମା' ସେଇଟିକୁ ପାଇଛନ୍ତି ।

ମା' ତୋତ୍ତୋ-ଚାନ୍‌କୁ କହିନଥିଲେ ଯେ ତାକୁ ସ୍କୁଲ୍‌ରୁ ବାହାର କରିଦିଆ ଯାଇଛି । ସେ ଜାଣୁଥିଲେ ଯେ ତୋତ୍ତୋ-ଚାନ୍ କ'ଣ ଭୁଲ୍ କରିଛି ବୁଝି ପାରିବନି । ସେ ଚାହୁଁନଥିଲେ ଯେ ତା'ର ମନରେ କିଛି ଗୋଳମାଳ ଚିନ୍ତା ପଶୁ । ବଡ ହେଲେ ତୋତ୍ତୋ-ଚାନ୍ ସେକଥା ଜାଣିବ । ତୋତ୍ତୋ-ଚାନ୍‌କୁ ସେ ପଚାରିଲେ, ''ଗୋଟିଏ ନୂଆ ସ୍କୁଲ୍‌କୁ ଗଲେ କେମିତି ହେବ ? ମୁଁ ଗୋଟିଏ ଖୁବ୍ ବଢିଆ ସ୍କୁଲ୍ କଥା ଶୁଣିଛି ।''

କିଛି ଭାବିବା ପରେ ତୋତ୍ତୋ-ଚାନ୍ କହିଲା, ''କିନ୍ତୁ....''

ମା' ଟିକେ ଭାବିଲେ ଓ ଡରିଗଲେ । ଭାବିଲେ ସେ କ'ଣ ଜାଣିଛି ଯେ ତାକୁ ସ୍କୁଲ୍‌ରୁ ବାହାର କରି ଦିଆଯାଇଛି ?

କ୍ଷଣକ ପରେ ତୋତ୍ତୋଚାନ୍ ପଚାରିଲା, ''ବାଜାବାଲାମାନେ ସେ ନୂଆ ସ୍କୁଲ୍‌କୁ ଆସିବେ ତ ?''

# ନୂଆ ସ୍କୁଲ୍

ନୂଆ ସ୍କୁଲ୍‌ର ଫାଟକକୁ ଚ୍ୱହିଁ ତୋତ୍ତୋ-ଚ୍ୱନ୍ ଅଟକିଗଲା। ପୁରୁଣା ସ୍କୁଲ୍‌ର ଫାଟକରେ ମଜବୁତ ସିମେଣ୍ଟ ଖୁଣ୍ଟ ଥିଲା। ତା'ଉପରେ ସ୍କୁଲ୍‌ର ନାଁ ବଡ ବଡ ଅକ୍ଷରରେ ଲେଖା ଯାଇଥିଲା। କିନ୍ତୁ ଏହି ନୂଆ ସ୍କୁଲର ଫାଟକର ଖୁଣ୍ଟ ଦୁଇଟିରେ ଡାଳ ପତ୍ର ଥିଲା।

''ଏହି ଫାଟକ ତ ବଢୁଛି'' ତୋତ୍ତୋ-ଚ୍ୱନ୍ କହିଲା। ''ଏହା ଟେଲିଫୋନ୍ ଖମ୍ବଠାରୁ ଉଚ୍ଚା ହେବାଯାଏଁ ବଢି ଚ୍ୱଲିଥିବ।'' ଏହି ଫାଟକ ଖୁଣ୍ଟ ଦୁଇଟି ସତରେ ଦୁଇଟି ଜିଅନ୍ତା ଗଛ ଥିଲା। ସ୍କୁଲ୍‌ର ନାଁ ଲେଖାଥିବା ପଟାଟି ପବନରେ ବଙ୍କାଇ ଯାଇଥିଲା। ତେଣୁ ସେ ତା'ର ମୁଣ୍ଡକୁ ଢଳାଇ ପଢିଲା।

'ତୋ-ମୋ-ଏ-ଗା-କୁ-ଏନ୍-'

ତୋତ୍ତୋ-ଚ୍ୱନ୍ ମା'ଙ୍କୁ ପଚ୍ୱରିବାକୁ ଯାଉଥିଲା ତୋମୋଏର ଅର୍ଥ କ'ଣ। କିନ୍ତୁ ସେ ଭିତରେ କ'ଣ ଗୋଟିଏ ତା'ର ଆଖିରେ ପଡିଲା। ଯାହା ଦେଖି ସେ ଭାବିଲା ଯେ ସେ ସ୍ୱପ୍ନ ଦେଖୁଛି। ସେ ତଳେ ବସିଗଲା ଓ ବୁଦା ବୁଦା ଗଛ ଭିତରେ ଭଲ ଭାବେ ଦେଖିବାକୁ ଚେଷ୍ଟା କଲା। ତଥାପି ସେ ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ। ପଚ୍ୱରିଲା, ''ମା' ସେଇଟା କ'ଣ ସତରେ ଗୋଟିଏ ରେଳଗାଡି ? ସେଠି ସେ ସ୍କୁଲ୍ ପଡିଆରେ !''

ଛଅଟି ପୁରୁଣା ରେଳଡବା ଥିଲା ସେ ସ୍କୁଲ୍‌ର ଶ୍ରେଣୀଘର। ତୋତ୍ତୋ-ଚ୍ୱନ୍ ପାଇଁ ଏହା ଏକ ସ୍ୱପ୍ନ ଥିଲା। ରେଳଡବାରେ ସ୍କୁଲ୍ !

ସକାଳର ସୂର୍ଯ୍ୟ କିରଣରେ ସେ ରେଳଡବାଗୁଡିକ ଝଟକୁଥିଲା। ଲତା ଗହଳରୁ ଉଙ୍କି ମାରୁଥିବା ସେ କୁନିଝିଅଟିର ଆଖି ଦୁଇଟି ଆହୁରି ଅଧିକ ଝଟକୁଥିଲା।

# ମୁଁ ସ୍କୁଲ୍‌କୁ ଭଲପାଏ

କ୍ଷଣକ ପରେ ତୋତ୍ତୋ-ଚ୍ୱନ୍ ଖୁସିରେ କୁଦି ପଡିଲା ଓ ରେଳସ୍କୁଲ୍ ଆଡକୁ ଦୌଡିବାରେ ଲାଗିଲା। ପଛକୁ ଅନାଇ ମା'ଙ୍କୁ ଡାକ ଦେଲା, ''ଆସ, ଶୀଘ୍ର ଆସ। ଛିଡା ହୋଇଥିବା ରେଳଗାଡିରେ ଚଢିବା ଚ୍ୱଲ।''

ମା' ଚମକି ପଡି ତା' ପଛରେ ଦଉଡିବାକୁ ଲାଗିଲେ। ମା' ଆଗରୁ ଜଣେ ବାସ୍କେଟବଲ୍ ଖେଳାଳୀ ଥିଲେ। ତେଣୁ ସେ ତୋତ୍ତୋ-ଚ୍ୱନ୍‌ଠାରୁ ଜୋରରେ ଦୌଡିଲେ। ଠିକ୍ ଦୁଆର ପାଖରେ ସେ ତୋତ୍ତୋ-ଚ୍ୱନ୍‌ର ଜାମାକୁ ଭିଡି ଧରିଲେ।

''ଏବେ ତୁ ଭିତରକୁ ଯାଇପାରିବୁ ନାହିଁ'', ତାକୁ ଭିଡି ଧରି ମା' କହିଲେ,

''ଏହି ଡବାଗୁଡ଼ିକ ଶ୍ରେଣୀଘର । ଆଉ ଏଯାଏଁ ଏଠାରେ ତୋର ନାଁ ଲେଖା ହୋଇନାହିଁ । ତୁ ଯଦି ଏ ଟ୍ରେନ୍‌ରେ ବସିବାକୁ ଚାହୁଁ ତେବେ ତତେ ଭଲପିଲା ହେବାକୁ ପଡ଼ିବ । ଆମେ ଏବେ ପ୍ରଧାନ ଶିକ୍ଷକଙ୍କୁ ଦେଖା କରିବାକୁ ଯାଉଛେ । ସେ ଯଦି ତତେ ଭଲ ଭାବିବେ ତେବେ ତୁ ଏ ସ୍କୁଲ୍‌କୁ ଆସିବୁ । ବୁଝୁଛୁ ତ ?''

ସାଙ୍ଗେ ସାଙ୍ଗେ ଟ୍ରେନ୍ ଭିତରକୁ ଯାଇ ନପାରିବାରୁ ତୋତ୍ତୋ-ଚାନ୍ ଖୁବ୍ ହତାଶ ହେଲା । କିନ୍ତୁ ସେ ଜାଣିଲା ଯେ, ମା'ଙ୍କ କହିବା ଅନୁସାରେ ତାକୁ କରିବାକୁ ପଡ଼ିବ । ''ଠିକ୍ ଅଛି'', ସେ କହିଲା, ''କିନ୍ତୁ ସ୍କୁଲ୍‌ଟି ମତେ ଭଲ ଲାଗୁଛି ।''

ମା' ତାକୁ କହିବାକୁ ଚାହୁଁଥିଲେ ଯେ ତା'ର ସ୍କୁଲ୍‌କୁ ଭଲ ପାଇବା ନପାଇବାରେ କିଛି କଥା ନାହିଁ । ପ୍ରଧାନ ଶିକ୍ଷକ ତାକୁ ଠିକ୍ ଭାବିବେ କି ନାହିଁ ସେ କଥା ଅଲଗା । କିନ୍ତୁ ସେ କିଛି କହିଲେନାହିଁ । ତୋତ୍ତୋ-ଚାନ୍‌ର ପୋଷାକକୁ ଛାଡ଼ି ତା'ର ହାତକୁ ଧରିଲେ ଓ ପ୍ରଧାନ ଶିକ୍ଷକଙ୍କ ଅଫିସ୍ ଆଡ଼କୁ ଚାଲିଲେ ।

କ୍ଲାସ୍ ଚାଲୁଥିଲା । ତେଣୁ ରେଳଡବାଗୁଡ଼ିକ ଚୁପ୍‌ଚାପ୍ ଥିଲେ । ପଡ଼ିଆଟି ଅତି ବଡ଼ ନଥିଲା । ତା'ର ଚାରିପଟେ ପାଚେରୀ ବଦଳରେ ଗଛ ଘେରି ରହିଥିଲା । ଚାରିଆଡ଼େ କେତେ ଲାଲ୍ ହଳଦିଆ ଫୁଲ ଫୁଟିଥିଲା ।

ପ୍ରଧାନ ଶିକ୍ଷକଙ୍କ ଅଫିସ୍‌ଟି ରେଳଡବା ଭିତରେ ନଥିଲା । କିନ୍ତୁ ଗେଟ୍ ପାଖରେ ଗୋଟିଏ କୋଠାଘରେ ଥିଲା । ଏହି ଏକ ମହଲା ଘରଟି ସାତଟି ଅଧ ଗୋଲାକାର ପଥର ପାହାଚ ଉପରେ ଥିଲା । ତୋତ୍ତୋ-ଚାନ୍ ମା'ଙ୍କ ହାତରୁ ଖସି ଦୌଡ଼ି ଦୌଡ଼ି ପାହାଚ ଉପରକୁ ଚଢ଼ିଗଲା । ଉପରେ ପହଞ୍ଚି ସେ ବୁଲିପଡ଼ି ଛିଡ଼ା ହୋଇଗଲା । ମା' ଡରିଗଲେ । କାଳେ ଏ ସ୍କୁଲ୍‌ରୁ ତା' ମନ ଛାଡ଼ି ଯାଇଥିବ । ପଚାରିଲେ, ''କ'ଣ ହେଲା ?''

ଉପର ପାହାଚରେ ଠିଆ ହୋଇ ତୋତ୍ତୋ-ଚାନ୍ ଗମ୍ଭୀର ଭାବରେ ମା'ଙ୍କୁ ଫୁସ୍‌ଫୁସ୍ କରି କହିଲା, ''ଆମେ ଯେଉଁ ଲୋକଙ୍କୁ ଦେଖିବାକୁ ଯାଉଛେ ସେ ନିଶ୍ଚୟ ଜଣେ ଷ୍ଟେସନ୍‌ମାଷ୍ଟର୍ ହୋଇଥିବେ ।'' ମା'ଙ୍କର ବେଶ୍ ଧୈର୍ଯ୍ୟ ଥିଲା ଆଉ ମଉଜିଆ ମନ । ସେ ମୁହଁ ବୁଲାଇ ତୋତ୍ତୋ-ଚାନ୍‌କୁ ପଚାରିଲେ, ''କାହିଁକି?''

ତୋତ୍ତୋଚାନ୍ ବି ଏକା ସ୍ୱରରେ କହିଲା, ''ତୁମେ କହିଲ ଯେ ସେ ଜଣେ ପ୍ରଧାନ ଶିକ୍ଷକ । କିନ୍ତୁ ତାଙ୍କର ଯଦି ଏତେ ଟ୍ରେନ୍ ଅଛି ସେ ନିଶ୍ଚୟ ଜଣେ ଷ୍ଟେସନ୍‌ମାଷ୍ଟର୍ ହୋଇଥିବେ ।''

ମା' ଏହା ମାନିଲେ ଯେ, ପୁରୁଣା ରେଳଡବାରେ ସ୍କୁଲ କରିବା କିଛି ସାଧାରଣ କଥା ନୁହେଁ । କିନ୍ତୁ ବୁଝାଇବା ପାଇଁ ସମୟ ନଥିଲା । ସେ କେବଳ କହିଲେ, ''ତୁ ନିଜେ କାହିଁକି ତାଙ୍କୁ ପଚାରୁନୁ ? ତେବେ ବାପାଙ୍କ କଥା ଭାବିଲୁ । ସେ ବେହେଲା ବଜାନ୍ତି ଓ ତାଙ୍କର ଅନେକ ବେହେଲା ବି ଅଛି । କିନ୍ତୁ ଏଥିଯୋଗୁଁ କ'ଣ ଆମ ଘରକୁ ଗୋଟିଏ ବେହେଲା ଦୋକାନ କହିବା ?''

''ନା, ତା' ତ ନୁହେଁ ।'' ତୋତ୍ତୋ-ଚାନ୍ ରାଜି ହେଲା ଓ ମା'ଙ୍କ ହାତକୁ ଧରି ଚାଲିଲା ।

# ପ୍ରଧାନ ଶିକ୍ଷକ

ମା' ଓ ତୋତୋ-ଚ୍ୱାନ୍ ଭିତରକୁ ଗଲେ। ଅଫିସରେ ଥିବା ଲୋକ ଜଣକ ଚଉକିରୁ ଉଠି ଠିଆ ହୋଇଗଲେ।

ତାଙ୍କର ମୁଣ୍ଡର ବାଳ ବେଶ୍ ପତଳା ଥିଲା। କେତୋଟି ଦାନ୍ତ ପଡ଼ିଯାଇଥିଲା। କିନ୍ତୁ ମୁହଁଟି ବେଶ୍ ସୁସ୍ଥ ଜଣା ପଡୁଥିଲା। ଯଦିଓ ସେ ବେଶୀ ଡେଙ୍ଗା ନଥିଲେ, ତାଙ୍କର କାନ୍ଧ ଓ ବାହୁ ବେଶ୍ ଟାଣୁଆ ଥିଲା। ପୁରୁଣା କଳା କୋଟଟିକୁ ସେ ବାଗେଇ କରି ପିନ୍ଧିଥିଲେ।

ତୋତୋ-ଚ୍ୱାନ୍ ତରବରିଆ ନମସ୍କାରଟିଏ ପକାଇ ଦେଇ ତାଙ୍କୁ ପଚ୍ୱରିଲା, "ଆପଣ ଜଣେ ସ୍କୁଲ୍‌ମାଷ୍ଟର୍ ନା ଷ୍ଟେସନ୍‌ମାଷ୍ଟର୍ ?"

ମା' ଟିକିଏ ଲାଜେଇ ଗଲେ। କିନ୍ତୁ ସେ ଲୋକ ଜଣକ ହସିଲେ ଓ ଉତ୍ତର ଦେଲେ, "ମୁଁ ଏ ସ୍କୁଲର ପ୍ରଧାନ ଶିକ୍ଷକ।"

ତୋତୋଚ୍ୱାନ୍ ଖୁସି ହୋଇଗଲା, "ଓଃ, ମୁଁ ବହୁତ ଖୁସି।" ସେ କହିଲା, "କାରଣ ମୁଁ ଆପଣଙ୍କ ସ୍କୁଲ୍‌କୁ ଆସିବାକୁ ଚ୍ୱହେଁ।"

ପ୍ରଧାନ 'ଶିକ୍ଷକ ତାକୁ ଗୋଟିଏ ଚଉକିରେ ବସିବାକୁ କହିଲେ ଓ ମା'ଙ୍କୁ କହିଲେ, "ଆପଣ ଏବେ ଘରକୁ ଯାଇପାରନ୍ତି। ମୁଁ ତୋତୋ-ଚ୍ୱାନ୍ ସହ କଥା ହେବାକୁ ଚ୍ୱହେଁ।"

ତୋତୋଚ୍ୱାନ୍‌କୁ କ୍ଷଣକ ପାଇଁ ଟିକିଏ ଅଡୁଆ ଲାଗିଲା। କିନ୍ତୁ ତା'ର ବିଶ୍ୱାସ ହେଲା ଯେ ସେ ଏହି ଲୋକଟି ସହ ଭଲରେ ଚଳିପାରିବ।

"ଆଚ୍ଛା, ତାହେଲେ ମୁଁ ତାକୁ ଆପଣଙ୍କ ପାଖରେ ଛାଡୁଛି", ମା' ଦମ୍ଭ ଧରି କହିଲେ ଓ ପଛରେ କବାଟ ବନ୍ଦ କରି ବାହାରିଗଲେ।

ପ୍ରଧାନ ଶିକ୍ଷକ ଚଉକିଟିଏ ଟାଣି ଆଣି ତୋତୋ-ଚ୍ୱାନ୍ ଆଗରେ ବସିଲେ। ପାଖାପାଖି ବସି ସେ କହିଲେ, "ଏବେ ତୁମ ବିଷୟରେ ମତେ କିଛି କୁହ। ତୁମେ ଯାହା ଚ୍ୱହୁଁଛ ସେ ବିଷୟରେ କିଛି କୁହ।"

"ମୁଁ ଯାହା ଚ୍ୱହିଁବି ?", ତୋତୋଚ୍ୱାନ୍ ଭାବିଥିଲା ଯେ, ସେ କେତେଗୁଡ଼ିଏ ପ୍ରଶ୍ନ ପଚାରିବେ ଓ ତାକୁ ସେ ଗୁଡ଼ିକର ଉତ୍ତର ଦେବାକୁ ପଡ଼ିବ। ପ୍ରଧାନ ଶିକ୍ଷକ କିନ୍ତୁ ତାକୁ ପୂରା ସ୍ୱାଧୀନତା ଦେଇଦେଲେ। ସେ ଏତେ ଖୁସି ହୋଇଗଲା ଯେ ସେ ସିଧା ଗପିବା ଆରମ୍ଭ କଲା। କଥା ନୁହେଁ ତ ପୂରା ଖେଚେଡ଼ି। ସେ କଥାର ମୁଣ୍ଡ ଲାଞ୍ଜ ନଥିଲା- ତଥାପି ସେ ଗପି ଚ୍ୱଲିଲା। ସେମାନେ ଆସିଥିବା ଟ୍ରେନ୍ କେତେ ବେଗରେ ଯାଉଥିଲା, ଟିକେଟରଖାଳୀଙ୍କୁ ମାଗିଲେ ବି ସେ କିପରି ଟିକେଟ ଦେଲେନାହିଁ, ଆଗ ସ୍କୁଲରେ, ତା'ର ଦିଦି କେତେ ସୁନ୍ଦର ଥିଲେ, ଚଢ଼େଇ ବସା ବିଷୟରେ, କେତେ ଖେଳ ଜାଣିଥିବା ତାଙ୍କ ମାଟିଆ କୁକୁର ରକି ବିଷୟରେ, ସେ କିପରି ପାଟି ଭିତରେ କଇଁଚି ପୂରାଇ କଚକଚ କରି ଚଳାଏ, ଜିଭ କଟିବାର ଡର ବା ଶିକ୍ଷକଙ୍କର ମନା ବି

ମାନେନାହିଁ, ଶର୍ଦ୍ଧି ବେଳେ ତା'ର ନାକପୋଛା କଥା, ତା' ବାପା କେତେ ଭଲ ପହଁରାଳୀ ଥିଲେ ଓ ସେ କିପରି ବଢ଼ିଆ ପାଣିକୁ ଡେଉଁଥିଲେ..... ଏଭଳି କେତେ ଯେ କ'ଣ ସେ କହିଗ୍ଲଲିଲା। ପ୍ରଧାନ ଶିକ୍ଷକ ମଝିରେ ମଝିରେ ହସନ୍ତି, ମୁଣ୍ଡ ହଲାନ୍ତି ବା ପଗ୍ଦରନ୍ତି, "ତା'ପରେ ?" ଆଉ ତୋତ୍ତୋ-ଗ୍ୱନ୍ ଏତେ ଖୁସି ଥିଲା ଯେ, ସେ ସେପରି କହି ଗ୍ଲଲିଥାଏ। କିନ୍ତୁ ଶେଷରେ ସେ ଆଉ କିଛି କହିବାକୁ ପାଇଲା ନାହିଁ। ସେ ପାଟି ବନ୍ଦ କରି ଭାବିବାକୁ ଲାଗିଲା କ'ଣ କହିପାରିବ।

"ଆଉ ଅଧିକ କିଛି କହିବାକୁ ନାହିଁ ?", ପ୍ରଧାନ ଶିକ୍ଷକ ପଗ୍ଦରିଲେ।

ତୋତ୍ତୋ-ଗ୍ୱନ୍ ଭାବିଲା ଏବେ ଏପରି ଅଟକି ଯିବାଟା କି ଲାଜର କଥା। ଗପିବା ପାଇଁ ଏହା କି ଚମତ୍କାର ସୁଯୋଗ ଥିଲା। ସେ ତା'ର ମୁଣ୍ଡକୁ ଘାଣ୍ଟି ପକାଇଲା। କହିବାକୁ କ'ଣ ଆଉ କିଛି କଥା ନାହିଁ? ହଠାତ୍ ତା' ମନକୁ ଗୋଟିଏ କଥା ଆସିଗଲା।

ସିଏ ସେଦିନ ପିନ୍ଧିଥିବା ପୋଷାକ ବିଷୟରେ ତ କହିପାରିବ। ମା' ତା'ର ସବୁ ଜାମା ହାତରେ ତିଆରି କରନ୍ତି। କିନ୍ତୁ ଏଇଟି ଦୋକାନରୁ କିଣା ହୋଇ ଆସିଛି। ପ୍ରାୟ ସବୁଦିନ ସନ୍ଧ୍ୟା ବେଳକୁ ଫେରିଲା ବେଳକୁ ସେ ତା'ର ଜାମା ଚିରି ସାରିଥାଏ। କେବେ କେବେ ଚିରାଗୁଡ଼ିକ ଖୁବ୍ ବଡ଼ ହୋଇଥାଏ। ଏସବୁ କିପରି ଚିରୁଥିଲା ମା' କେବେ ବି ଜାଣି ପାରୁନଥିଲେ। ବେଳେବେଳେ ତା'ର ସୁନ୍ଦର ଧଳା ପ୍ୟାଣ୍ଟଗୁଡ଼ିକ ମଧ୍ୟ କଟି ଯାଉଥିଲା। ସେ ପ୍ରଧାନ ଶିକ୍ଷକଙ୍କୁ ବୁଝାଇଦେଲା ଯେ କଣ୍ଟା ତାରବାଡ଼ ଗଳି କରି ଯିବାବେଳେ ତା'ର ଜାମା ଏଭଳି ଚିରୁଥିଲା। ତେଣୁ ଆଜି ସକାଳେ ବାହାରିଲା ବେଳକୁ ମା'ଙ୍କର ହାତ ତିଆରି ଜାମା ସବୁ ଚିରି କରି ପଡ଼ିଥିଲା। ତେଣୁ ମା' କିଣି ଆଣିଥିବା ନୂଆ ପୋଷାକଟି ତାକୁ ପିନ୍ଧିବାକୁ ପଡ଼ିଲା। ଏଥିରେ ଗାଢ଼ ନାଲି ଓ ପାଉଁଶିଆ ରଙ୍ଗର ଗାର ସବୁ ପଡ଼ିଥଲା। ନରମ କନାର ଏହି ଜାମାଟି ମୋଟାମୋଟି କିଛି ଖରାପ ନଥିଲା। କିନ୍ତୁ ତା'ର କଲାରରେ ଥିବା ଲାଲ ଫୁଲଗୁଡ଼ିକ ମା'ଙ୍କର ପସନ୍ଦ ନଥିଲା। ତୋତ୍ତୋ-ଗ୍ୱନ୍ କଲାରଟିକୁ ହାତରେ ଧରି ପ୍ରଧାନ ଶିକ୍ଷକଙ୍କୁ ଦେଖାଇଦେଲା।

ଏହାପରେ ଯେତେ ଚେଷ୍ଟା କଲେ ମଧ୍ୟ କ'ଣ କହିବ ସେ ଭାବି ପାରିଲାନି। ଏଥିପାଇଁ ତା'ର ବେଶ୍ ମନ ଦୁଃଖ ହେଲା। ଠିକ୍ ସେତିକିବେଳେ ପ୍ରଧାନ ଶିକ୍ଷକ ଉଠି ଠିଆ ହେଲେ। ତୋତ୍ତୋ-ଗ୍ୱନ୍‌ର ମୁଣ୍ଡକୁ ଆଦରରେ ଥାପୁଡ଼ାଇ କହିଲେ, "ଆଚ୍ଛା, ତମେ ଏବେ ଏ ସ୍କୁଲ୍‌ର ଜଣେ ଛାତ୍ରୀ"।

ସେ ଠିକ୍ ଏହି ଶବ୍ଦଗୁଡ଼ିକ କହିଲେ। ଆଉ ସେତେବେଳେ ତୋତ୍ତୋ-ଗ୍ୱନ୍‌ର ମନେହେଲା ଯେପରି ତା' ଜୀବନରେ ପ୍ରଥମ ଥର ପାଇଁ ଜଣେ କେହି ତାକୁ ବହୁତ ଭଲ ଲାଗିଛନ୍ତି। କାରଣ ଏତେ ସମୟ ଧରି ତା' କଥାକୁ କେହି କେବେ ଶୁଣି ନଥିଲା। ଏତେ ସମୟ ଧରି ପ୍ରଧାନ ଶିକ୍ଷକ ନା ଉଦାସ ହୋଇଥିଲେ, ନା ବିରକ୍ତି ଦେଖାଇଥିଲେ। ବରଂ ତା'ର ସବୁ କଥାକୁ ସେ ଆଗ୍ରହର ସହ ଶୁଣୁଥିଲେ।

ତୋତ୍ତୋ-ଗ୍ୱନ୍ ଏ ଯାଏଁ ଘଣ୍ଟା ଦେଖି ଜାଣି ନଥିଲା। ତଥାପି ତାକୁ ଲାଗିଲା ଯେ ବେଶ୍ ଲମ୍ବା ସମୟ ଧରି ସେ ଗପୁଥିଲା। ଯଦି ସେ ସମୟ ଠିକ୍ ଜାଣି

ପାରୁଥା'ନ୍ତା ତେବେ ସେ ନିଶ୍ଚୟ ଆଶ୍ଚର୍ଯ୍ୟ ହୋଇ ଯାଇଥା'ନ୍ତା ଏବଂ ପ୍ରଧାନ ଶିକ୍ଷକଙ୍କ ପ୍ରତି ଅଧିକ କୃତଜ୍ଞ ହୋଇଥା'ନ୍ତା। କାରଣ ମା' ଓ ତୋତ୍ତୋ-ଚ୍ୟାନ୍ ସକାଳ 8ଟା ବେଳେ ସ୍କୁଲ୍‌ରେ ପହଞ୍ଚିଥିଲେ। ଯେତେବେଳେ ତା'ର କଥା ସରିଲା ଓ ପ୍ରଧାନ ଶିକ୍ଷକ ତାକୁ ଜଣେ ଛାତ୍ରୀ ବୋଲି କହିଲେ ସେ ତାଙ୍କ ପକେଟ ଘଡି ଦେଖି କହିଲେ, ''ଆରେ, ଖାଇବା ବେଳ ହେଲାଣି।'' ତେଣୁ ପ୍ରଧାନ ଶିକ୍ଷକ ନିଶ୍ଚୟ 4ଘଣ୍ଟା ଧରି ତୋତ୍ତୋ-ଚ୍ୟାନ୍‌ର କଥା ଶୁଣିଛନ୍ତି।

ଏହା ଆଗରୁ ବା ପରେ କେହି ବି ବୟସ୍କ ଲୋକ ଏତେ ସମୟ ଧରି ତୋତ୍ତୋ-ଚ୍ୟାନ୍‌ର କଥା ଶୁଣିନାହାନ୍ତି। ତା'ର ମା' ବା ଦିଦି ନିଶ୍ଚୟ ଚକିତ ହୋଇ ଯାଇଥିବେ ଯେ ଗୋଟିଏ ସାତ ବର୍ଷର ପିଲା ୪ ଘଣ୍ଟା କାଳ ଅନବରତ ଗପି ପାରିଲା।

ତୋତ୍ତୋ-ଚ୍ୟାନ୍‌ର ସେ ଯାଏଁ ଧାରଣା ନଥିଲା ଯେ ତାକୁ ଆଗର ସ୍କୁଲ୍‌ରୁ ବାହାର କରି ଦିଆଯାଇଛି ବା ତା' ବିଷୟରେ ବାପା ମା' ଖୁବ୍ ଚିନ୍ତିତ। ତା'ର ସ୍ଫୁର୍ତ୍ତିସ୍ୱଭାବ ଓ ଅନ୍ୟମନସ୍କତା ଯୋଗୁଁ ସେ ବେଶ୍ ସରଳ ଜଣା ପଡୁଥିଲା। କିନ୍ତୁ ମନ ଭିତରେ ସେ ଜାଣୁଥିଲା ଯେ ତାକୁ ସମସ୍ତେ ଟିକିଏ ଅଲଗା ଓ ବିଚିତ୍ର ଧରଣର ବୋଲି ଭାବୁଛନ୍ତି। କିନ୍ତୁ ପ୍ରଧାନ ଶିକ୍ଷକଙ୍କ ପାଖରେ ତାକୁ ବେଶ୍ ସୁରକ୍ଷିତ ଓ ଖୁସି ଲାଗିଲା। ସେ ସବୁଦିନ ପାଇଁ ତାଙ୍କ ସହ ରହିବାକୁ ଇଚ୍ଛା କଲା।

ପ୍ରଥମ ଦିନରେ ପ୍ରଧାନଶିକ୍ଷକ ସୋସାକୁ କୋବାୟାଶି ତାକୁ ଏପରି ଲାଗିଲେ। ଖୁସିର କଥା ଯେ ପ୍ରଧାନ ଶିକ୍ଷକଙ୍କୁ ମଧ୍ୟ ତୋତ୍ତୋ-ଚ୍ୟାନ୍ ସେହିପରି ଲାଗିଥିଲା।

## *ଖାଇବାବେଳ*

ପ୍ରଧାନ ଶିକ୍ଷକ ତୋତ୍ତୋ-ଚ୍ୟାନ୍‌କୁ ପିଲାଙ୍କ ଖାଇବା ଜାଗା ଦେଖାଇବା ପାଇଁ ନେଇଗଲେ। ''ଆମେ ରେଳଡବାରେ ଖାଉନାହିଁ। ଆସେମ୍ବ୍ଲି ଘରେ ଖାଉ।'' ପଥର ପାହାଚର ଉପରେ ଏହି ଆସେମ୍ବ୍ଲି ଘର। ଏଠାକୁ ତୋତ୍ତୋ-ଚ୍ୟାନ୍ ଆଗରୁ ଆସିଥିଲା। ସେଠାରେ ପହଞ୍ଚି ସେମାନେ ଦେଖିଲେ ଯେ ପିଲାଏ ଚଉକି ଟେବୁଲ୍ ସବୁ ଟାଣି ଗୋଲାକାର ଭାବେ ସଜାଉଛନ୍ତି।

ସେମାନେ ଗୋଟିଏ କୋଣରେ ଠିଆ ହୋଇ ଦେଖୁଥିଲେ। ତୋତୋ-ଚ୍ୱାନ୍ ପ୍ରଧାନ ଶିକ୍ଷକଙ୍କ କୋଟ୍‌କୁ ଟାଣି ପଚାରିଲା, "ଅନ୍ୟ ପିଲାମାନେ କାହାନ୍ତି ?"

"ସବୁ ଏତିକି", ସେ ଜବାବ ଦେଲେ।

"ମୋଟେ ଏତିକି ପିଲା ?", ତୋତୋ-ଚ୍ୱାନ୍ ବିଶ୍ୱାସ କରିପାରିଲା ନାହିଁ।

ଆର ସ୍କୁଲ୍‌ଟିରେ ପ୍ରତି ଶ୍ରେଣୀରେ ତ ଏତିକି ପିଲା ଥିଲେ। "ମାନେ ପୂରା ସ୍କୁଲଟିରେ ମାତ୍ର ପଚାଶ ଜଣ ପିଲା ପଢୁଛନ୍ତି ?"

"ହଁ, ସେତିକି", ପ୍ରଧାନ ଶିକ୍ଷକ କହିଲେ। ତୋତୋ-ଚ୍ୱାନ୍ ଭାବିଲା ଆର ସ୍କୁଲଠାରୁ ଏ ସ୍କୁଲ୍ ସବୁଥିରେ ଅଲଗା।

ସମସ୍ତେ ବସିଲା ପରେ ପ୍ରାଧାନ ଶିକ୍ଷକ ପଚାରିଲେ, "ତମେ ସମସ୍ତେ ସମୁଦ୍ରରୁ କିଛି ଓ ପାହାଡ଼ରୁ କିଛି ଆଣିଛ ନା ନାହିଁ ?"

ନିଜ ନିଜର ଲଞ୍ଚ ପୁଡ଼ିଆ ଖୋଲୁ ଖୋଲୁ ସମସ୍ତେ ଏକାଥରେ ପାଟି କରି କହିଲେ, "ହଁ।"

"ଆଚ୍ଛା, କ'ଣ ଆଣିଛ ଦେଖିବା", ସେ ବୁଲି ବୁଲି ଦେଖିବା ବେଳେ ପିଲାମାନେ ଖୁସି ହୋଇ ଚିତ୍କାର କରୁଥା'ନ୍ତି।

"କେଡେ ମଉଜିଆ" ତୋତୋ-ଚ୍ୱାନ୍ ଭାବିଲା। "ସମୁଦ୍ରରୁ କିଛି ଓ ପାହାଡ଼ରୁ କିଛିର ମାନେ କ'ଣ ?" ଏହି ସ୍କୁଲ୍‌ଟି ନିଶ୍ଚୟ ଅଲଗା ଧରଣର ଥିଲା। ବହୁତ ମଉଜିଆ ବି ଥିଲା। ସେ କେବେ ବି ଭାବି ନଥିଲା ଯେ ସ୍କୁଲ୍‌ରେ ଖାଇବା ଏପରି ମଜାର କଥା ହୋଇପାରେ। କାଲିଠୁ ସେ ବି ଡେସ୍କରେ ବସିବ, ପ୍ରଧାନ ଶିକ୍ଷକଙ୍କୁ ପାହାଡ଼ରୁ କିଛି ଓ ସମୁଦ୍ରରୁ କିଛି ଦେଖାଇବ। ଏ ଭାବନାରେ ତୋତୋ-ଚ୍ୱାନ୍ ଏତେ ଖୁସି ହୋଇଗଲା ଯେ ସେ ଆନନ୍ଦରେ ଡେଇଁବାକୁ ଚାହିଁଲା।

ପିଲାଙ୍କ ଖାଇବାଡବା ସବୁ ଦେଖିବା ସମୟରେ ପ୍ରଧାନ ଶିକ୍ଷକଙ୍କ କାନ୍ଧ ଦୁଇଟି ଉପରେ ଦିପହରିଆ ଖରା ପଡୁଥାଏ।

## ତୋତୋ-ଚ୍ୱାନ୍‌ର ସ୍କୁଲ ଆରମ୍ଭ

"ତୁମେ ଏବେ ଏ ସ୍କୁଲ୍‌ର ଜଣେ ଛାତ୍ରୀ।" ଏକଥା ଶୁଣିବା ପରଠାରୁ ତୋତୋ-ଚ୍ୱାନ୍ ଆଉ ଅପେକ୍ଷା କରିପାରୁ ନାହିଁ। ଆସନ୍ତା କାଲିର ସକାଳ କିପରି ହେବ। ସେ କେବେ ବି କୌଣସି ଦିନକୁ ଏତେ ଉତ୍କଣ୍ଠାର ସହ ଅନାଇ ରହି ନଥିଲା। ସବୁଦିନ ସକାଳେ ତୋତୋ-ଚ୍ୱାନ୍‌କୁ ନିଦରୁ ଉଠାଇବା ବଡ କଷ୍ଟ କାମ ଥିଲା। କିନ୍ତୁ ସେଦିନ ସେ ସମସ୍ତଙ୍କଠୁ ଆଗରୁ ଉଠି, ପୋଷାକ ପିନ୍ଧି, ତା'ର ବହିମୁଣିକୁ କାନ୍ଧରେ ଝୁଲାଇ ଅପେକ୍ଷା କରିଥାଏ।

ଘରର ଠିକ୍ ସମୟ ଜଗିଲାବାଲା ଜୀବ ବିଲାତି କୁକୁର ରକି ତୋତୋ-ଗ୍ୱନ୍‌ର ଅସ୍ୱାଭାବିକ ବ୍ୟବହାରକୁ ବଡ ସନ୍ଦେହର ସହ ଦେଖିଲା। ଭଲ କରି ଭିଡି ମୋଡି ହୋଇ କ'ଣ ହେଉଛି ଦେଖିବା ପାଇଁ ତୋତୋ-ଗ୍ୱନ୍‌ର ପାଖରେ ବସି ରହିଲା।

ମା'ଙ୍କ ବହୁତ କାମ। ସେ ତରତର ହୋଇ ତୋତୋ-ଗ୍ୱନ୍‌ର ଖାଇବା ଡବାରେ 'ସମୁଦ୍ରରୁ କିଛି ଓ ପାହାଡରୁ କିଛି' ରଖିଲେ। ତୋତୋ-ଗ୍ୱନ୍‌କୁ ଜଳଖିଆ ଦେଲେ। ତୋତୋ-ଗ୍ୱନ୍‌ର ଟ୍ରେନ୍ ପାସ୍‌ଟିକୁ ଗୋଟିଏ ପ୍ଲାଷ୍ଟିକ୍ ଖୋଳରେ ରଖି ତୋତୋ-ଗ୍ୱନ୍‌ର ବେକରେ ଏହା ଝୁଲାଇ ଦେଲେ ଯେପରି ଏହା ହଜିବ ନାହିଁ।

ନିଦରୁ ଉଠି ଭୁତୁରା ମୁଣ୍ଡରେ ବାପା କହିଲେ, "ସୁନା ଝିଅ ହେବୁ !"

"ହଁ, ନିଶ୍ଚୟ", ତୋତୋ-ଗ୍ୱନ୍ ଜୋତା ପିନ୍ଧି ସାମନା କବାଟ ଖୋଲି ବାହାରିଲା। ପଛକୁ ବୁଲି ଭଦ୍ରାମୀର ସହ ମୁଣ୍ଡ ନୁଆଁଇ ସମସ୍ତଙ୍କୁ କହିଲା, "ମୁଁ ଏବେ ଆସୁଛି !" ତା' ପଛରେ ରକି ବି ଗ୍ୱଲିଲା।

ତୋତୋ-ଗ୍ୱନ୍ ଯିବା ସମୟରେ ମା'ଙ୍କ ଆଖିରେ ଲୁହ ଭରିଗଲା। ଏହା ବିଶ୍ୱାସ କରି ହେଉନଥିଲା ଯେ ଏହି ମନଫୁଲା ଚଞ୍ଚଳ କୁନି ଝିଅଟିକୁ ଏବେ ସ୍କୁଲ୍‌ରୁ ତଡି ଦିଆ ଯାଇଥିଲା । ସେ ପ୍ରାର୍ଥନା କଲେ ଯେ ଏଥର ସବୁ ଭଲରେ କଟୁ।

ଟିକିଏ ପରେ ମା' କାବା ହୋଇ ଦେଖିଲେ ଯେ ତୋତୋ-ଗ୍ୱନ୍ ତା' ଟ୍ରେନ୍ ପାସ୍‌ଟି ବାହାର କରି ରକିର ବେକରେ ଝୁଲାଇ ଦେଲା। ମା' ଭାବିଲେ 'ଓହୋ.....!'କିନ୍ତୁ କିଛି ନକହି କ'ଣ ହେଉଛି ଦେଖିବା ପାଇଁ ଅପେକ୍ଷା କଲେ।

ରକିର ବେକରେ ପାସ୍‌ର ଦଉଡିଟି ଗଳାଇ ଦେଇ ତୋତୋ-ଗ୍ୱନ୍ ତା' ପାଖରେ ବସି ପଡିଲା। ରକିକୁ କହିଲା, "ଦେଖିଲୁ ? ତତେ ଏ ପାସ୍‌ଟା ଜମା ଠିକ୍ ହେଉନି।"

ଦଉଡିଟି ବହୁତ ଲମ୍ବା ଥିଲା ଓ ପାସ୍‌ଟି ତଳେ ଘୁଷୁରୁ ଥିଲା। "ବୁଝିଲୁ ? ଏଇଟା ମୋ ପାସ୍, ତୋର ନୁହେଁ। ତୁ ଟ୍ରେନ୍‌ରେ ଚଢି ପାରିବୁନି। ମୁଁ ପ୍ରଧାନ ଶିକ୍ଷକଙ୍କୁ ପଗ୍ୱରିବି ଓ ଷ୍ଟେସନ୍‌ର ଲୋକଟିକୁ ପଗ୍ୱରିବି। ସେମାନେ ତତେ ସ୍କୁଲକୁ ଆଣିବାକୁ ଦେବେ କି ନାହିଁ କେଜାଣି ?"

ରକି ପ୍ରଥମେ ମନ ଦେଇ କାନ ଟେକି ଶୁଣିଲା। ପାସ୍‌ଟିକୁ କେତେ ଥର ଗ୍ୱଟି ଦେଇ ସେ ହାଇ ମାରିଲା। ତୋତୋ-ଗ୍ୱନ୍ କହି ଗ୍ୱଲିଥାଏ, "କ୍ଲାସ୍ ରୁମ୍ ଟ୍ରେନ୍‌ଟି ଗ୍ୱଲେନି। ତେଣୁ ମୁଁ ଭାବୁଛି ଯେ ସେଥିରେ ଚଢିବା ପାଇଁ ତୋର ଟିକେଟ ଦରକାର ହେବନି। କିନ୍ତୁ ଆଜି ମୁଁ ଫେରିବା ଯାଏଁ ତତେ ଘରେ ରହିବାକୁ ପଡିବ।"

ରକି ସବୁଦିନ ତୋତୋ-ଗ୍ୱନ୍‌ର ଆଉ ସ୍କୁଲ୍‌ର ଫାଟକ ଯାଏଁ ଯାଇ ଘରକୁ ଫେରି ଆସୁଥିଲା। ଆଜି ମଧ୍ୟ ସେ ସେଇଆ ଆଶା କରିଥିଲା।

ତୋତୋ-ଗ୍ୱନ୍ ରକି ବେକରୁ ଦଉଡି ସହ ପାସ୍ ବାହାର କରିନେଲା ଓ ଭଲ ଭାବରେ ନିଜ ବେକରେ ଗଳାଇ ଦେଲା। ସେ ମା' ବାପାଙ୍କୁ ପୁଣି ଥରେ ଜଣାଇ ଦେଲା, 'ଗୁଡ୍ ବାଇ'।

ତା'ପରେ ସେ ଆଉ ପଛକୁ ନଗ୍ୱହିଁ ଦୌଡିଲା। ବ୍ୟାଗ୍‌ଟି ତା' ପଛରେ ପିଟି ହେଉଥାଏ। ରକି ବି ଖୁସିରେ ତା' କଡେ କଡେ ଡେଇଁ ଗ୍ୱଲିଥାଏ।

ଘରୁ ଷ୍ଟେସନ୍ ଓ ପୁରୁଣା ସ୍କୁଲକୁ ପ୍ରାୟ ଏକା ବାଟରେ ଯିବାକୁ ହୁଏ। ତେଣୁ ବାଟରେ ସବୁ ଜଣାଶୁଣା ବିଲେଇ, କୁକୁର ଓ ପୁରୁଣା ସ୍କୁଲ ସାଙ୍ଗ ସବୁ ଦେଖା ହେଲେ।

ତୋତ୍ତୋ-ଚ୍ଚାନ୍ ଭାବିଲା ସେମାନଙ୍କୁ ପାସ୍‌ଟି ଦେଖାଇ ଚମକାଇ ଦେବ କି ? ସେ ସେଦିନ ଡେରିରେ ପହଞ୍ଚିବାକୁ ଚାହୁଁନଥିଲା। ତେଣୁ ସେଦିନ ଅଟକିବ ନାହିଁ ବୋଲି ସେ ଠିକ୍ କଲା ଓ ଜଲ୍‌ଦି ଜଲ୍‌ଦି ଆଗେଇଲା।

ତୋତ୍ତୋ-ଚ୍ଚାନ୍ ସବୁଦିନ ଭଳି ସ୍କୁଲ ଆଡେ ବାଁକୁ ନ ଯାଇ ଡାହାଣକୁ ଷ୍ଟେସନ୍ ଆଡେ ବୁଲିଲା। ବିଚରା ରକି ଅଟକି ଗଲା ଓ ବ୍ୟସ୍ତ ହୋଇ ଚାରିପଟକୁ ଚାହିଁଲା। ତୋତ୍ତୋ-ଚ୍ଚାନ୍ ସେତେବେଳକୁ ଟିକେଟ୍ ଫାଟକ ପାଖରେ ପହଞ୍ଚି ସାରିଥିଲା। କିନ୍ତୁ ସେ ବୋକା ହୋଇ ଚାହିଁ ରହିଥିବା ରକି ପାଖକୁ ଫେରି ଆସିଲା।

ତାକୁ ବୁଝାଇ ଦେଲା, "ମୁଁ ଆଉ ସେ ସ୍କୁଲ୍‌କୁ ଯାଉନି। ମୁଁ ଏବେ ଗୋଟିଏ ନୂଆ ସ୍କୁଲ୍‌କୁ ଯାଉଛି।"

ତୋତ୍ତୋ-ଚ୍ଚାନ୍ ରକି ମୁହଁ ପାଖକୁ ତା' ମୁହଁ ରଖିଲା। ରକିର ଗନ୍ଧୁରା କାନ କିନ୍ତୁ ତୋତ୍ତୋ-ଚ୍ଚାନ୍‌କୁ ଖରାପ ଲାଗୁ ନଥାଏ। ସେ ଗେଲରେ କହିଲା, "ମୁଁ ଯାଉଛି।" ଫାଟକରେ ତା'ର ପାସ୍ ଦେଖାଇ ସେ ଷ୍ଟେସନ୍ ପାହାଚ ଡେଇଁ ଚାଲିଲା। ରକି ଟିକିଏ କୁଁ କୁଁ ହେଲା। ତୋତ୍ତୋ-ଚ୍ଚାନ୍ ଦିଶୁଥିବା ଯାଏଁ ଚାହିଁ ରହିଲା।

## *ରେଳଡବାରେ ପାଠପଢା*

ସମସ୍ତଙ୍କ ଆଗରୁ ତୋତ୍ତୋ-ଚ୍ଚାନ୍ ସ୍କୁଲ୍‌ରେ ପହଞ୍ଚିସାରିଥିଲା। ପ୍ରଧାନ ଶିକ୍ଷକ ତା'ର ଶ୍ରେଣୀ ଡବାଟା ତାକୁ ଆଗରୁ ଦେଖାଇସାରିଥିଲେ। ସେ ସିଧା ସେଠିକୁ ଗଲା। ସେଇଟା ଗୋଟିଏ ପୁରୁଣାକାଳିଆ ଗାଡି ଥିଲା। କବାଟରେ ଥିବା ହାଣ୍ଡଲ୍‌କୁ ଦୁଇ ହାତରେ ଠେଲିଦେଲେ ଏହା ଖୋଲୁଥିଲା। କବାଟ ଖୋଲୁଖୋଲୁ ଉଚ୍ଛଣ୍ଠାରେ ତୋତ୍ତୋ-ଚ୍ଚାନ୍‌ର ଛାତି ଧଡଧଡ ହେଉଥିଲା। ଭିତରର ଦୃଶ୍ୟ ଦେଖି ଖୁସିରେ ତା' ପାଟିରୁ କଥା ବାହାରିଲା ନାହିଁ।

ଏଠାରେ ପଢିବାଟା ଏକ ଅସରନ୍ତି ଯାତ୍ରା ପରି ହେବ। ଝରକାଗୁଡିକ ଉପରେ

ଏବେ ବି ଜିନିଷ ରଖିବା ପାଇଁ ଜାଗା ଥିଲା। ଗାଡିଟିର ସାମନା ପାଖରେ ଗୋଟିଏ କଳାପଟା ଲଗା ଯାଇଥିଲା ଓ ଗାଡିର ଲମ୍ବା ସିଟ୍ ବଦଳରେ ସ୍କୁଲ୍ ଡେସ୍କ ଓ ଚଉକି ଗୁଡିଏ ଆଗମୁହାଁ ହୋଇ ପଡିଥିଲା। ଗାଡିର ପ୍ରାୟ ଅନ୍ୟ ସବୁକିଛି ଯେମିତି ସେମିତି ହିଁ ଥିଲା। ତୋତ୍ତୋ-ଗ୍ୱାନ୍ ଭିତରକୁ ଯାଇ ଜଣକର ଜାଗାରେ ବସିଗଲା। ଆଗ ସ୍କୁଲର ଭଳି ଦେଖାଗଲେ ମଧ୍ୟ ଏଠାର ଚଉକିଗୁଡିକ ବେଶ୍ ଆରାମଦାୟକ ଥିଲା - ସାରା ଦିନ ବସି ହେଲା ଭଳି। ତୋତ୍ତୋ-ଗ୍ୱାନ୍ ଖୁବ୍ ଖୁସି ହୋଇ ଯାଇଥିଲା ଓ ସ୍କୁଲ୍‌ଟି ତାକୁ ବହୁତ ଭଲ ଲାଗିଲା। ସେ ସାଙ୍ଗେ ସାଙ୍ଗେ ଠିକ୍ କରିନେଲା ଯେ ସେ ସବୁଦିନ ନିଶ୍ଚୟ ସ୍କୁଲ୍‌କୁ ଆସିବ - ଏପରିକି ଛୁଟିଦିନରେ ମଧ୍ୟ !

ତୋତ୍ତୋ-ଗ୍ୱାନ୍ ଝରକା ବାହାରକୁ ଚାହିଁଲା। ସେ ଜାଣିଥିଲା ଯେ ଟ୍ରେନ୍‌ଟି ସ୍ଥିର, କିନ୍ତୁ ତା'ର ମନେହେଲା ଯେ ତାହା ଚାଲୁଛି। ସ୍କୁଲ୍ ପଡିଆରେ ଥିବା ଫୁଲ ଓ ଗଛଗୁଡିକ ପବନରେ ଧୀରେ ଧୀରେ ହଲୁଥିବାରୁ ଏପରି ଜଣା ପଡୁଛି କି ?

ସେ ପାଟି କରି ଉଠିଲା, "ମୁଁ ବହୁତ ଖୁସି !" ତା'ପରେ ଝରକାରେ ମୁହଁକୁ ମାଡି ସେ ଗୀତଟିଏ ଯୋଡିଲା। ସେ ଖୁସି ହୋଇଗଲେ ଏପରି ଗୀତ ଗାଏ।

"ମୁଁ କେତେ ଖୁସି,<br>
ଏତେ ଖୁସି ମୁଁ !<br>
ମୁଁ କାହିଁକି ଖୁସି ?<br>
କାହିଁକି ନା

ଠିକ୍ ଏହି ସମୟରେ ଝିଅଟିଏ ପଶି ଆସିଲା। ସେ ତା' ସ୍କୁଲ ବାକ୍ସରୁ ଖାତା ଓ ପେନ୍‌ସିଲ୍ ବାକ୍ସ ବାହାର କରି ଡେସ୍କ ଉପରେ ରଖିଲା। ତା'ପରେ ସେ ଟିପରେ ଠିଆ ହୋଇ ବ୍ୟାଗ୍‌କୁ ଝରକା ଉପର ଥାକରେ ରଖିଲା। ତା'ର ଜୋତା ବ୍ୟାଗକୁ ବି ସେଠାରେ ରଖିଲା। ତୋତ୍ତୋ-ଗ୍ୱାନ୍ ଗାଇବା ବନ୍ଦ କରି ସେଇଆ କଲା। ଏହାପରେ ଜଣେ ପୁଅପିଲା ଆସିଲା। ସେ କବାଟ ପାଖରେ ଠିଆ ହେଲା ଓ ବାସ୍କେଟ୍ ବଲ୍ ଖେଳିଲା ଭଳି ତା' ବ୍ୟାଗ୍‌ଟିକୁ ଥାକ ଉପରକୁ ଫିଙ୍ଗି ଦେଲା। ବ୍ୟାଗ୍‌ଟି କିନ୍ତୁ ଖସି ତଳେ ପଡିଗଲା। "ଖରାପ ସଟ୍", କହି ପୁଅଟି ପୁଣି ଥରେ ସେଠୁ ଲକ୍ଷ୍ୟ କଲା। ଏଥର ସେଇଟି ଉପରେ ରହିଗଲା। "ବଢ଼ିଆ ସଟ୍", ସେ ପାଟି କଲା। ପୁଣି କହିଲା "ନା, ଖରାପ ସଟ୍", କହି ସେ ଡେସ୍କ ଉପରେ ଚଢ଼ି ଖାତା ଓ ପେନ୍‌ସିଲ୍ ବାକ୍ସ କାଢ଼ିବାକୁ ବ୍ୟାଗ୍ ଖୋଲିଲା। ସେ ପ୍ରଥମରୁ ଏ ସବୁ କାଢ଼ି ନଥିବାରୁ ତା'ର ବ୍ୟାଗ୍ ଫିଙ୍ଗାଟା ବେକାର ହୋଇଗଲା।

ଶେଷକୁ ବଗିରେ ନଅ ଜଣ ପିଲା ହେଲେ। ଏହା ଥିଲା ତୋମୋଏ ଗାକୁଏନ୍‌ର ପ୍ରଥମ ଶ୍ରେଣୀ।

ସେମାନେ ସଭିଏଁ ସାଙ୍ଗ ହୋଇ ଏକା ଟ୍ରେନ୍‌ରେ ଯାତ୍ରା କରିବେ।

# ତୋମୋଏରେ ପାଠପଢ଼ା

ରେଳ ଡବାରେ ସ୍କୁଲ୍ ହେବାଟା ତ ଅଶୁଣା କଥା। ଏଠାରେ ପିଲାଙ୍କର ବସିବା ବ୍ୟବସ୍ଥା ବି ଅଲଗା ଧରଣର ଥିଲା। ସବୁ ସ୍କୁଲ୍‌ରେ ପିଲାମାନଙ୍କର ଏକ ନିର୍ଦ୍ଦିଷ୍ଟ ଡେସ୍କ ଥିଲା। କିନ୍ତୁ ଏଠି ଯିଏ ଯେଉଁଠି ଚାହୁଁଥିଲା ବସିପାରୁଥିଲା।

ବହୁତ ସମୟ ଭାବି, ଚାରିଆଡକୁ ଭଲ ଭାବରେ ଚାହିଁବା ପରେ ତୋତ୍ତୋ-ଚାନ୍ ତା'ର ଜାଗା ବାଛିଲା। ତା'ର ପରେ ଆସିଥିବା ଝିଅଟିର ପାଖରେ ବସିବାକୁ ସେ ଠିକ କଲା। କାରଣ ସେ ଝିଅର ଜାମାରେ ଲମ୍ବା କାନ ଥିବା ଗୋଟିଏ ଠେକୁଆର ଚିତ୍ର ଥିଲା।

ପାଠପଢ଼ାର ଢଙ୍ଗ ସବୁଠାରୁ ଅଲଗା ଥିଲା। ସାଧାରଣ ସ୍କୁଲରେ ଧରାବନ୍ଧା ରୁଟିନ୍ ଥାଏ। ଯେଉଁ ପିରିଅଡ୍‌ରେ ସାହିତ୍ୟ ଅଛି ସେବେ ଖାଲି ସାହିତ୍ୟ ପଢ଼ା ହେବ, ଅଙ୍କ ପିରିଅଡ୍‌ରେ କେବଳ ଅଙ୍କ। କିନ୍ତୁ ଏଠି ପୂରା ଅଲଗା ଥିଲା। ସ୍କୁଲ ଆରମ୍ଭ ସମୟରେ ଶିକ୍ଷକ ସେଦିନ ପଢ଼ା ହେବାକୁ ଥିବା କିଛି ବିଷୟର ତାଲିକା କରୁଥିଲେ। ତାଲିକାର ବିଷୟଗୁଡ଼ିକୁ କେଉଁ କ୍ରମରେ ପଢ଼ିବ ତାହା ପ୍ରତି ପିଲା ନିଜେ ବାଛୁଥିଲା। ପିଲାମାନେ ଏକା ସମୟରେ ଅଲଗା ଅଲଗା ବିଷୟ ବି ପଢ଼ି ପାରୁଥିଲେ। ଜଣକୁ ଲେଖିବାକୁ ଭଲ ଲାଗୁଛି ତ ସେ ବସି କିଛି ଲେଖୁଥିବ। ତା' ପଛକୁ ହୁଏତ ଆଉ ଜଣେ ବିଜ୍ଞାନର ଆଉ କିଛି ପରୀକ୍ଷା କରୁଥିବ। ଶ୍ରେଣୀ ମଝିରେ ଢୋ' କରି କିଛି ଫୁଟିବା ବଡ କଥା ହେବନାହିଁ।

ଏହି ପାଠପଢ଼ା ଧାରାରେ ଶିକ୍ଷକ ପିଲାମାନଙ୍କୁ ଲକ୍ଷ୍ୟ କରି ଦେଖି ପାରୁଥିଲେ। ପ୍ରତି ପିଲା ଉପର ଶ୍ରେଣୀକୁ ଯିବାବେଳକୁ ଶିକ୍ଷକ ଜାଣି ପାରୁଥିଲେ ସେମାନେ କେଉଁଥିରେ ବିଶେଷ ଆଗ୍ରହୀ। ସେମାନଙ୍କର ଚିନ୍ତା ଶକ୍ତି ଓ ଦକ୍ଷତାର ଧାରଣା ମଧ୍ୟ କରି ପାରୁଥିଲେ। ଶିକ୍ଷକମାନେ ନିଜ ପିଲାମାନଙ୍କୁ ଜାଣିବା ପାଇଁ ଏହା ଥିଲା ଏକ ଭଲ ଉପାୟ।

ପିଲାଏ ମଧ୍ୟ ତାଙ୍କର ମନଲାଖି ବିଷୟରୁ ଆରମ୍ଭ କରିବାଟାକୁ ଭାରି ପସନ୍ଦ କରୁଥିଲେ। ତା'ଛଡ଼ା ଭଲ ଲାଗୁନଥିବା ବିଷୟଗୁଡ଼ିକୁ ସାରିବା ପାଇଁ ସେମାନେ ଚାହିଁଲେ ସାରା ଦିନ ପାଉଥିଲେ। ତେଣୁ କୌଣସିମତେ ସେଗୁଡ଼ିକୁ ସେମାନେ ବୁଝି ନେଉଥିଲେ। ତେଣୁ ପିଲାଏ ସ୍ୱାଧୀନ ଭାବେ ପାଠ ପଢୁଥିଲେ ଓ ଦରକାର ଅନୁସାରେ ଶିକ୍ଷକଙ୍କୁ ପଚାରୁଥିଲେ। ଦରକାର ହେଲେ ଶିକ୍ଷକ ମଧ୍ୟ ତାଙ୍କ ପାଖକୁ ଆସି ବୁଝାଇ ଦେଉଥିଲେ। ବୁଝିଲେ କି ନାହିଁ ଜାଣିବା ପାଇଁ ତାଙ୍କୁ ଅଲଗା ଅଲଗା ପ୍ରଶ୍ନ ଦିଆଯାଉଥିଲା। ପ୍ରକୃତ ଅର୍ଥରେ ଏଠାରେ ପ୍ରତିଟି ପିଲା ପାଠ ପଢୁଥିଲେ। କିଛି ପିଲା ଶିକ୍ଷକଙ୍କ କଥା ଶୁଣିଲା ବେଳେ ଆଉ କିଛି ବାହାରକୁ ଅନାଇବାର ଅବକାଶ ନଥିଲା।

ପ୍ରଥମ ଶ୍ରେଣୀର ପିଲାମାନେ ନିଜେ ନିଜେ ପାଠ ପଢ଼ିବାର ଦକ୍ଷତା ପାଇ ନଥିଲେ। ତଥାପି ସେମାନେ ନିଜ ପସନ୍ଦ ମୁତାବକ ବିଷୟରୁ ପାଠ ପଢ଼ା ଆରମ୍ଭ କରିପାରୁଥିଲେ।

କିଏ ଅକ୍ଷର ଶିଖୁଥିଲା ତ କିଏ ଚିତ୍ର ଆଙ୍କୁଥିଲା। କେତେଜଣ ପଢୁଥିଲେ ବା ଆଉ କେତେଜଣ ବ୍ୟାୟାମ ବି କରୁଥିଲେ। ତୋତ୍ତୋ-ଚ୍ଚାନ୍‌ର ପାଖ ଝିଅଟି ବର୍ଣ୍ଣମାଳା ଶିଖିସାରିଥିଲା। ସେ ତା' ଖାତାରେ ଅକ୍ଷରସବୁ ଲେଖିଚାଲିଥିଲା। ତୋତ୍ତୋ-ଚ୍ଚାନ୍‌କୁ ଏ ସବୁ ଅଲଗା ଓ ନୂଆ ଲାଗୁଥିବାରୁ ସେ ଟିକିଏ ଡରିଗଲା ଓ କ'ଣ କରିବ ଜାଣିପାରିଲାନି।

ଠିକ୍ ସେତିକିବେଳେ ତା' ପଛର ପୁଅଟି ଉଠି ଖାତା ଧରି କଳାପଟା ଆଡକୁ ଚାଲିଲା। ହୁଏତ ଶିକ୍ଷକଙ୍କୁ ତା'ର କିଛି ପଚାରିବାର ଥିଲା। ଦିଦି କଳାପଟା ପାଖ ଡେସ୍କରେ ବସି ଆଉ ଜଣେ ପିଲାକୁ କିଛି ବୁଝାଉଥା'ନ୍ତି। ତୋତ୍ତୋ-ଚ୍ଚାନ୍ ଏଣେ ତେଣେ ଚାହିଁବା ବନ୍ଦ କରି, ଦୁଇ ହାତରେ ମୁହଁକୁ ଭରା ଦେଇ କଳାପଟା ଆଡକୁ ଯାଉଥିବା ପିଲାଟିକୁ ଚାହିଁ ରହିଲା । ସେ ପିଲାଟି ଗୋଡ ଘୋଷାଡି ଘୋଷାଡି ଚାଲିଥାଏ। ତା'ର ଦେହଟି ଏପଟ ସେପଟ ହୋଇ ଦୋହଲୁଥାଏ। ସେ ଏପରି କାହିଁକି ଚାଲୁଛି ତୋତ୍ତୋ-ଚ୍ଚାନ୍ ବୁଝି ପାରିଲା ନାହିଁ। ପିଲାଟିର ଦେହ ଯେ ଆପେ ଆପେ ଏପରି ଝାଙ୍କୁଛି ତାହା ସେ ଆସ୍ତେ ଆସ୍ତେ ବୁଝିପାରିଲା।

ପିଲାଟି ତା' ଡେସ୍କକୁ ଫେରିବାଯାଏଁ ତୋତ୍ତୋ-ଚ୍ଚାନ୍ ତାକୁ ଚାହିଁ ରହିଥାଏ। ଦୁହିଁଙ୍କ ଆଖି ମିଶିବାରୁ ପୁଅଟି ହସିଦେଲା। ତୋତ୍ତୋ-ଚ୍ଚାନ୍ ବି ତରବରରେ ହସି ପକାଇଲା। ପୁଅଟି ତୋତ୍ତୋ-ଚ୍ଚାନ୍‌ର ପଛ ଡେସ୍କରେ ବସିବାକୁ ଗଲା। ଡେସ୍କରେ ବସିବାକୁ ତାକୁ ସମୟ ଲାଗିଲା। ସେ ପଛକୁ ବୁଲି ପଚାରିଲା, "ତୁ କାହିଁକି ଏପରି ଚାଲୁଛୁ?"

ସେ ଧୀର ଓ ଚାଲାକ ସ୍ୱରରେ ଜବାବ ଦେଲା, "ମୋତେ ପୋଲିଓ ହୋଇଥିଲା।"

"ପୋଲିଓ?", ନୂଆ ଶବ୍ଦଟିଏ ଶୁଣି ତୋତ୍ତୋ-ଚ୍ଚାନ୍ ପଚାରିଲା। ସେ ପୁଣି କହିଲା, "ହଁ, ପୋଲିଓ", ସେ ଧୀରେ କହିଲା, "କେବଳ ଗୋଡ ନୁହେଁ ମୋ ହାତ ବି ଏପରି।" ସେ ତା' ହାତ ବାହାର କରି ଦେଖାଇଲା। ତୋତ୍ତୋ-ଚ୍ଚାନ୍ ତା'ର ବାଁ ହାତକୁ ଦେଖିଲା। ତା'ର ଲମ୍ବା ଆଙ୍ଗୁଠିଗୁଡିକ ବଙ୍କା ଥିଲା ଓ ସବୁତକ ଲାଗିଯାଇଥିଲା ପରି ଜଣା ପଡୁଥିଲା।

"ଏହାକୁ କ'ଣ ଠିକ୍ କରି ହେବନି?", ତୋତ୍ତୋ-ଚ୍ଚାନ୍ ଚିନ୍ତିତ ଭାବରେ ପଚାରିଲା। ସେ କିଛି ଜବାବ ଦେଲାନି। ତୋତ୍ତୋ-ଚ୍ଚାନ୍ ଟିକିଏ ବ୍ୟସ୍ତ ହୋଇ ପଡିଲା ଓ ପଚାରିଥିବାରୁ ମନଦୁଃଖ କଲା। କିନ୍ତୁ ପୁଅଟି ଖୁସିରେ କହିଲା, "ମୋ ନାଁ ୟାସୁଆକି ୟାମାମୋତୋ। ତୋ'ର ନାଁ?"

ପୁଅଟି ଏପରି ଖୁସିରେ କଥା ହେବା ଶୁଣି ତୋତ୍ତୋ-ଚ୍ଚାନ୍ ଏତେ ଖୁସି ହୋଇଗଲା ଯେ ସେ ଜୋରରେ କହି ଉଠିଲା, "ମୁଁ ତୋତ୍ତୋ-ଚ୍ଚାନ୍ ।" ଏହିଭଳି ସେ ଦୁହେଁ ସାଙ୍ଗ ହୋଇଗଲେ।

ଖରା ବଢିଲାରୁ ରେଳଡବା ଭିତରଟା ବେଶ୍ ଗରମ ହୋଇଗଲା। ଜଣେ ଝରକା ଖୋଲିଦେଲା। ଥଣ୍ଡା ତାଜା ପବନ ବହି ଭିତରକୁ ପଶିଆସି ପିଲାଙ୍କ ମୁଣ୍ଡର ବାଳକୁ ଅତ୍ୟନ୍ତ ବେପରୁଆ ଭାବରେ ଏପଟ ସେପଟ କରିଦେଲା।

ଏପରି ଭାବେ ତୋମୋଏରେ ତୋତ୍ତୋ-ଚ୍ଚାନ୍‌ର ପ୍ରଥମ ଦିନର ଆରମ୍ଭ ହେଲା।

# ସମୁଦ୍ର ଖାଦ୍ୟ ଓ ମାଟିର ଖାଦ୍ୟ

ଏଥର ସମୁଦ୍ରରୁ କିଛି ଓ ପାହାଡ଼ରୁ କିଛିର ବେଳ ହେଲା। ଏହି ଖାଇବା ସମୟକୁ ତୋତୋ-ଗ୍ୱେନ୍ ଉତ୍କଣ୍ଠାର ସହ ଅପେକ୍ଷା କରିଥିଲା।

ପ୍ରଧାନ ଶିକ୍ଷକ ସୁଷମ ଜାପାନୀ ଖାଦ୍ୟକୁ ବୁଝାଇବା ପାଇଁ ଏପରି ଏକ ନାଁ ଗଢ଼ିଥିଲେ। ଭାତ ସହ ଆଉ କ'ଣ ଖାଇବା ଦରକାର ତାହା ଏଥିରୁ ବୁଝାପଡୁଥିଲା। 'ସବୁ ଜିନିଷ ମିଶାଇ ଖାଅ'- ପିଲାଙ୍କୁ ଏପରି ଆଦେଶ ବା ଉପଦେଶ ଦେବା ବଦଳରେ ତୋମୋଏର ପ୍ରଧାନ ଶିକ୍ଷକ ଏ ମଜା ବାଟଟି କାଢ଼ିଥା'ନ୍ତି।

'ସମୁଦ୍ରରୁ କିଛି' ଅର୍ଥ - ମାଛ ଓ ଚିଙ୍ଗୁଡ଼ି ଭଳି ସାମୁଦ୍ରିକ ଖାଦ୍ୟ ଓ 'ପାହାଡ଼ରୁ କିଛି' ଅର୍ଥ - ପରିବା ଓ ମାଂସ ଭଳି ଘରବାଡ଼ିର ଖାଦ୍ୟ।

ମା'ଙ୍କୁ ଏହା ବହୁତ ଭଲ ଲାଗିଥିଲା। ଏପରି ଏକ ଗୁରୁତ୍ୱପୂର୍ଣ୍ଣ ନିୟମକୁ ଏତେ ସରଳ ଭାବରେ ବୁଝାଇ ଦେବା କିଛି କମ୍ କଥା ନୁହେଁ। ଖୁବ୍ ଅଳ୍ପ ଲୋକ ଏପରି କରିପାରନ୍ତି। ଏହି ନିୟମରେ ତାଙ୍କୁ ମାତ୍ର ଦୁଇ କିସମର ଖାଦ୍ୟ ଦେବାକୁ ହେବ। ଏଣୁ ଖିରାବେଳର ଖାଇବା ସଜାଡ଼ିବା ତାଙ୍କ ପାଇଁ ଖୁବ୍ ସହଜ ହୋଇଗଲା। ବେଶୀ ରନ୍ଧାରନ୍ଧି କରିବାକୁ ବି ପ୍ରଧାନ ଶିକ୍ଷକ ମନା କରିଥିଲେ। ମାଟିର ଖାଦ୍ୟରେ ଚଣା ତରକାରୀ ବା ଅଣ୍ଡା ଭଜା ହେଲେ ଯଥେଷ୍ଟ ଓ ସମୁଦ୍ର କହିଲେ ଚୁନି ମାଛ ହେଲେ ଚଳିବ। ସମୁଦ୍ରର ଦଳ ଓ ଫଳ ପରିବାର ଆଗ୍ରହକୁ ମିଶାଇ ଆହୁରି ସରଳ ସମୁଦ୍ର-ପାହାଡ଼ ଖାଦ୍ୟ ହୋଇପାରେ।

ଗତକାଲି ତୋତୋ-ଗ୍ୱେନ୍ ଲୋଭିଲା ଆଖିରେ ଏସବୁ ବାହାରୁ ଦେଖୁଥିଲା। ଆଜି ବି ପ୍ରଧାନ ଶିକ୍ଷକ ପ୍ରତ୍ୟେକ ପିଲାର ବାକ୍ସକୁ ବୁଲି ବୁଲି ଦେଖୁଥିଲେ। ପଚାରୁଥିଲେ, "ତୁମେ ସମୁଦ୍ରରୁ କିଛି ଓ ପାହାଡ଼ରୁ କିଛି ଆଣିଛ ?" ଏ ନିୟମ ସମସ୍ତେ ଅଲଗା ଅଲଗା ବାଟରେ ମାନିଥିଲେ। ଏତେ ପ୍ରକାରର ଖାଦ୍ୟ ଦେଖିବାକୁ ବେଶ୍ ମଜା ଲାଗୁଥିଲା।

ବେଳେବେଳେ କାହା ମା' କାମରେ ବ୍ୟସ୍ତ ରହି କେବଳ ଗୋଟିଏ ଜାତିର ଖାଦ୍ୟ ଦେଇ ଦେଉଥିଲେ। ଏହାକୁ କିନ୍ତୁ ପ୍ରଧାନ ଶିକ୍ଷକ ବୁଲି ଦେଖିଲା ବେଳେ ସୁଧାରି ନେଉଥିଲେ। ରାନ୍ଧୁଣିଆ ବେଶରେ ତାଙ୍କ ସ୍ତ୍ରୀ ଦୁଇଟି ହାଣ୍ଡି ଧରି ତାଙ୍କ ପଛେ ପଛେ ଯାଉଥିଲେ। ପ୍ରଧାନ ଶିକ୍ଷକ କେଉଁ ଛୁଆ ସାମନାରେ କହନ୍ତି, "ଜଳ ବା ସମୁଦ୍ର", ସେ ସମୁଦ୍ର ପାତ୍ରରୁ ଦୁଇ ଖଣ୍ଡ ମାଛ ଭଜା ତାକୁ ଦିଅନ୍ତି। ପ୍ରଧାନ ଶିକ୍ଷକ "ପାହାଡ଼" କହିଲେ ସେ ପାହାଡ଼ ପାତ୍ରରୁ ଦୁଇ ଖଣ୍ଡ ଆଳୁ ଭଜା ଦେଇ ଦିଅନ୍ତି।

'ମତେ ମାଛ ଭଲଲାଗେନି' ବୋଲି କହିବାକୁ କେହି ସ୍ୱପ୍ନରେ ବି ଭାବି ପାରୁନଥିଲେ। କେହି କାହାର ଖାଦ୍ୟକୁ ଖରାପ, ଭଲ, ଶସ୍ତା ବା ଦାମୀ କହି ବାଛୁନଥିଲେ। ସବୁ ପିଲା କେବଳ ଭାବୁଥିଲେ ଯେ ତାଙ୍କ ଖାଦ୍ୟରେ ସମୁଦ୍ରରୁ କିଛି ଓ ପାହାଡ଼ରୁ କିଛି ଅଛି ନା ନାହିଁ। ଯଦି ଏତକ ଠିକ ଥାଏ, ତେବେ ତାଙ୍କର ସବୁ ଖୁସି।

ସମୁଦ୍ରରୁ କିଛି ଓ ପାହାଡରୁ କିଛିର ଅର୍ଥ ଏଥର ତୋତୋ-ଚ୍ୱାନ୍ ବୁଝିଗଲା। ହେଲେ ତା'ର ସନ୍ଦେହ ରହିଲା ଯେ କାଳେ ମା' ତରବରରେ ଏହା ଦେଇ ନଥିବେ। ସେ ଯାହା ଆଣିଛି ସେଥିରେ ପ୍ରଧାନ ଶିକ୍ଷକ ରାଜି ହେବେ କି ନାହିଁ ? କିନ୍ତୁ ତା' ବାକ୍ସ ଖୋଲିଲା ବେଳକୁ ତା'ର ଚମତ୍କାର ଖାଦ୍ୟ ଥିଲା। ସେ ଅତି ଖୁସି ହୋଇ ପାଟି କରିବାକୁ ଲାଗିଲା, "ବଢ଼ିଆ, ବଢ଼ିଆ।"

ଭିତରେ ଥିଲା ଏକଦମ୍ ହଳଦିଆ ଅଣ୍ଡା ଭଜା, ସାଗୁଆ ମଟର, ମାଟିଆ ଡେନ୍‌ବୁ ଓ ଗୋଲାପୀ ମାଛ ଭଜା। ଏହା ଏକ ରଙ୍ଗୀନ୍ ଫୁଲ ବଗିଚା ପରି ଦେଖା ଯାଉଥିଲା।

"ଖୁବ୍ ସୁନ୍ଦର ଦିଶୁଛି।", ପ୍ରଧାନ ଶିକ୍ଷକ କହିଲେ।

ତୋତୋ-ଚ୍ୱାନ୍ ଉଲସି ଉଠି କହିଲା, "ମୋ ମା' ବଢ଼ିଆ ରୋଷେଇ କରନ୍ତି।"

"ସତେ ?", କହି ପ୍ରଧାନ ଶିକ୍ଷକ ଡେନ୍‌ବୁ ଦେଖାଇ ପଚାରିଲେ, "ଆଚ୍ଛା, ଏଇଟା କ'ଣ ? ଏହା ସମୁଦ୍ରରୁ ନା ପାହାଡରୁ ?"



ତୋତୋ-ଗ୍ରନ୍ ଭାବିଲା କେଉଁଟା ଠିକ୍ ? ଏହା ମାଟି ରଙ୍ଗର ଦିଶୁଛି, ତେଣୁ ବୋଧେ ପାହାଡ଼ରୁ ହୋଇଥିବ । କିନ୍ତୁ ସେ ନିଶ୍ଚିତ ହୋଇ ପାରୁ ନ ଥିଲା ।

ସେ କହିଲା, "ମୁଁ ଜାଣିନି ।"

ପ୍ରଧାନ ଶିକ୍ଷକ ଏଥର ସବୁ ପିଲାଙ୍କୁ ପଚାରିଲେ, "କ'ଣ ତେନ୍‌ବୁ କେଉଁଠୁ ଆସେ-ସମୁଦ୍ରରୁ ନା ପାହାଡ଼ରୁ?"

କିଛି ସମୟ ଏ ବିଷୟରେ ଭାବିବା ପରେ ଦଳେ ପାଟି କରି କହିଲେ, "ପାହାଡ଼", ଆଉ ଦଳେ କହିଲେ, "ସମୁଦ୍ର" । କେହି ବି ଠିକ ଉତ୍ତର ଜାଣି ନଥିଲେ ।

"ଠିକ୍ ଅଛି, ମୁଁ କହୁଛି", ପ୍ରଧାନ ଶିକ୍ଷକ କହିଲେ, "ତେନ୍‌ବୁ ହେଉଛି ସମୁଦ୍ର ଖାଦ୍ୟ ।"

ମୋଟା ପିଲାଟିଏ ପଚାରିଲା, "କାହିଁକି?"

ଖାଇବା ଡେସ୍କ ସବୁ ଗୋଲ ହୋଇ ପଡ଼ିଥିଲା । ମଝିରେ ଠିଆ ହୋଇ ପ୍ରଧାନ ଶିକ୍ଷକ ବୁଝାଇଲେ, "ମାଛକୁ ସିଝାଇ ତା'ର ମାଂସତକ କଣ୍ଟାରୁ ଛଡ଼ାଇ ନିଆ ଯାଏ । ଏହାକୁ ଅଳ୍ପ ଖରଡ଼ି ଚୂନା କରାଯାଏ । ଏହି ଖରଡ଼ା ମାଛକୁ ଶୁଖାଇ ମସଲା ଦେଇ ତେନ୍‌ବୁ ହୁଏ ।"

"ଓହୋ", ଏଥର ପିଲାଏ ବୁଝିଗଲେ । ଜଣେ କିଏ ତୋତୋ-ଗ୍ରନ୍‌ର ତେନ୍‌ବୁ ଦେଖିବାକୁ ଚାହିଁଲା ।

"ନିଶ୍ଚୟ", ପ୍ରଧାନ ଶିକ୍ଷକ କହିବା ପରେ ସବୁ ପିଲା ମାଡ଼ି ଆସିଲେ ତୋତୋ-ଗ୍ରନ୍‌ର ତେନ୍‌ବୁ ଦେଖିବା ପାଇଁ । କିଛି ପିଲା ତେନ୍‌ବୁ କ'ଣ ଜାଣିଥିଲେ, କିନ୍ତୁ ଏବେ ତାଙ୍କର ଆଗ୍ରହ ବଢ଼ିଗଲା । ତୋତୋ-ଗ୍ରନ୍‌ର ତେନ୍‌ବୁ ତାଙ୍କ ଘରର ତେନ୍‌ବୁ ଭଳି କି ଅଲଗା ତାହା ସେମାନେ ଜାଣିବାକୁ ଚାହିଁଲେ । ଏଭଳି ସମସ୍ତେ ତୋତୋ-ଗ୍ରନ୍ ପାଖରେ ଗଦା ହେଲେ । କେତେପିଲା ସେ ତେନ୍‌ବୁକୁ ଶୁଙ୍ଘିବାକୁ ଆରମ୍ଭ କଲେ । ତୋତୋ-ଗ୍ରନ୍ ଡରିଗଲା କାଳେ ସେହି ପବନରେ ତା'ର ତେନ୍‌ବୁ ଉଡ଼ିଯିବ ଭାବି ।

ପ୍ରଥମ ଦିନର ଲଞ୍ଚ ସମୟରେ ତୋତୋ-ଗ୍ରନ୍‌କୁ ଟିକିଏ ଛାନିଆ ଲାଗୁଥିଲା । କିନ୍ତୁ ମଜା ବି ଲାଗୁଥିଲା । କେଉଁଟା ଜଳର ଖାଦ୍ୟ ଓ କେଉଁଟା ସ୍ଥଳର ଜାଣିବାଟା ବହୁତ କୌତୁକିଆ ଥିଲା । ସେ ଶିଖିଲା ଯେ ତେନ୍‌ବୁ ମାଛରୁ ତିଆରି କରାଯାଏ । ଏହାଛଡ଼ା ସେ ସନ୍ତୁଷ୍ଟ ଥିଲା ଯେ ମା' ଠିକ୍ ମନେରଖି ପାଣି ଓ ମାଟିରୁ କିଛି କିଛି ଖାଦ୍ୟ ଦେଇଥିଲେ । ସବୁ ଦିଗରୁ ଏହା ଠିକ ଥିଲା ।

ତୋତୋ-ଗ୍ରନ୍ ଖୁସି ହେବାର ଆଉ ଏକ କାରଣ ମଧ୍ୟ ଥିଲା । ମା'ଙ୍କ ତିଆରି ଖାଦ୍ୟ ଖୁବ୍ ସୁଆଦିଆ ଥିଲା ।

## ଭଲ କରି ଗ୍ରେବାଅ

ସାଧାରଣ ଭାବରେ ସମସ୍ତେ ଭଗବାନଙ୍କୁ କୃତଜ୍ଞତା ଜଣାଇ ଖାଇବାକୁ ଆରମ୍ଭ କରନ୍ତି। କିନ୍ତୁ ଜାପାନୀ ଭାଷାରେ ଏହା ହୁଏ, ''ଇତାଦାକିମାସୁ'' ବା ମୁଁ କୃତଜ୍ଞତାର ସହିତ ଖାଉଛି । କିନ୍ତୁ ତୋମୋଏ ଗାକୁଏନ୍‌ରେ ଏହା ଟିକିଏ ଅଲଗା ଥିଲା। ପ୍ରଥମେ ସମସ୍ତେ ମିଶି ଗୋଟିଏ ଗୀତ ଗାଉଥିଲେ। ପ୍ରଧାନ ଶିକ୍ଷକ ଜଣେ ସଙ୍ଗୀତଜ୍ଞ ଥିଲେ ଓ ବିଶେଷ ଅର୍ଥର ଗୋଟିଏ ଖାଇବା ଆଗର ଗୀତ ସେ ଲେଖିଥିଲେ। ପ୍ରକୃତରେ ସେ ଶବ୍ଦଗୁଡ଼ିକ ଯୋଡ଼ି, ପିଲାଙ୍କ ଜଣାଶୁଣା ଗୀତ ''ବାହା, ବାହା, ବାହା ତୋ ନାଆକୁ'' ଗୀତ ଭଳି ସ୍ୱର ଦେଇଥିଲେ। ଗୀତଟି ଏପରି ଥିଲା,

''ଗ୍ରେବା, ଗ୍ରେବା, ଗ୍ରେବା, ଭଲରେ ଗ୍ରେବା,
ପାଟିରେ ରଖିଛୁ ଯାହା,
ଗ୍ରେବା ତାକୁ ଗ୍ରେବା, ଜୋରରେ ଗ୍ରେବା,
ଭାତ ମାଛ ଓ ପରିବା।''

ଏହି ଗୀତଟି ନଗାଇବା ଯାଏଁ କେହି ଇତାଦାକିମାସୁ କହୁ ନଥିଲେ। ତୋମୋଏର ଅନେକ ପିଲା ଭାବୁଥିଲେ ଯେ ଏହି ଗୀତଟି କେତେ କାଳରୁ ଚଳିଆସିଛି।

ପ୍ରଧାନ ଶିକ୍ଷକଙ୍କର କେତୋଟି ଦାନ୍ତ ପଡ଼ି ଯାଇଥିବାରୁ ସେ ବୋଧହୁଏ ଏ ପ୍ରକାରର ଗୀତଟି ଲେଖିଥିଲେ। କିନ୍ତୁ ସେ ସବୁବେଳେ ପିଲାଙ୍କୁ ଧୀରେ ଧୀରେ ଖାଇବାକୁ କହୁଥିଲେ। ଏହା ମନେପକାଇ ଦେବା ପାଇଁ ବୋଧେ ଗୀତଟି ଲେଖାଯାଇଥିଲା।

ପିଲାଏ ବଡ଼ ପାଟି କରି ଏ ଗୀତଟି ଗାଇ ସାରିବା ପରେ ''ଇତାଦାକିମାସୁ'' କହି ସମୁଦ୍ରରୁ କିଛି ଓ ପାହାଡ଼ରୁ କିଛି ଖାଇବାରେ ଲାଗି ପଡୁଥିଲେ।

କିଛି ସମୟ ପାଇଁ ଖାଇବା ଜାଗାଟି ଶାନ୍ତ ହୋଇ ଯାଉଥିଲା।

## ସ୍କୁଲରେ ବୁଲା

ଖାଇବା ପରେ ତୋତୋ-ଚ୍ଚାନ୍ ସାଙ୍ଗମାନଙ୍କ ସହ ସ୍କୁଲ ପଡ଼ିଆରେ କିଛି ସମୟ ଖେଳିଲା। ଶ୍ରେଣୀକୁ ଫେରିଲାବେଳକୁ ଶିକ୍ଷକ ଅପେକ୍ଷା କରିଥିଲେ।

''ଆଜି ସକାଳେ ତୁମେମାନେ ବେଶ୍ ପରିଶ୍ରମ କରିଛ'', ସେ କହିଲେ, ''ଏବେ ଉପର ବେଳା କ'ଣ କରିବା କୁହ ?''

ତୋତୋ-ଗ୍ୱନ୍ କ'ଣ କରିବ ବୋଲି ଭାବିବା ପୂର୍ବରୁ ସମସ୍ତେ ଏକାଥରେ ପାଟି କରି ଉଠିଲେ, "ବୁଲିଯିବା।"

"ଠିକ୍ ଅଛି", ଶିକ୍ଷକ କହିଲେ, ଆଉ ପିଲାଏ ଦୌଡ଼ି କୁଦି ବାହାରକୁ ଯିବକୁ ଲାଗିଲେ। ତୋତୋ-ଗ୍ୱନ୍ ଆଗରୁ ବାପା ଓ ରକି ସହ ବୁଲିବାକୁ ଯାଉଥିଲା। ହେଲେ ସ୍କୁଲ୍‌ରେ ବୁଲିଯିବା କଥା ସେ କେବେ ଶୁଣିନଥିଲା। ତେଣୁ ଏହା ତାକୁ ଆଶ୍ଚର୍ଯ୍ୟ ଲାଗିଲା । ତାକୁ ବୁଲିବାକୁ ଭଲ ଲାଗୁଥିଲା, ତେଣୁ ସେ କି ଆଉ ଅପେକ୍ଷା କରେ ?

ତୋମୋଏର ନିୟମ କଥା ପରେ ସେ ଜାଣିପାରିଲା। ସେମାନେ ସକାଳେ ଯଦି ଲାଗିପଡ଼ି ଶିକ୍ଷକଙ୍କର ତାଲିକାରୁ ସବୁତକ ପାଠ ସାରି ଦିଅନ୍ତି ତେବେ ଉପର ବେଳା ତାଙ୍କୁ ବୁଲିବାକୁ ନିଆହୁଏ। ପ୍ରଥମରୁ ଷଷ୍ଠ ଶ୍ରେଣୀଯାଏଁ ଏହି ନିୟମ ଏକା ଥିଲା।

ପ୍ରଥମ ଶ୍ରେଣୀର ନଅ ଜଣ ଯାକ ପିଲା ଶିକ୍ଷକଙ୍କୁ ଘେରି ଫାଟକ ବାହାରକୁ ଆସିଲେ। ଗୋଟିଏ ଝରଣାର କଡେ କଡେ ସେମାନେ ଚାଲିବା ଆରମ୍ଭ କଲେ। ଝରଣାର ଦୁଇ କଡରେ ଫଳ ଗଛ ଥାଏ। ଏହି ଚେରି ଫଳର ଗଛଗୁଡ଼ିକରେ ବଉଳ ଭରି ରହିଥାଏ। ହଳଦିଆ ଫୁଲରେ ଭରା ସୋରିଷ କିଆରୀଗୁଡ଼ିକ ବହୁଦୂର ଯାଏଁ ଲମ୍ବିଥାଏ।

ଯେଉଁ ଝିଅର ଜାମାରେ ଠେକୁଆ ଚିତ୍ର ଥିଲା ତା' ନାଁ ଥିଲା ସାକୋ-ଗ୍ୱନ୍। ସେ କହିଲା, "ଆମେ କୁହୋନ୍‌ବୁତ୍‌ସୁ ଦେଉଳ ଯାଏଁ ଯିବା।"

"ଗଲାଥର ଆମେ ସେଠି ପୋଖରୀରେ ଗୋଟିଏ ସାପ ଦେଖିଥିଲୁ। ସେଠି ଗୋଟିଏ ପୁରୁଣା କୂଅ ଅଛି। ଥରେ କୁଆଡେ ତା' ଭିତରେ ଉଲ୍‌କାଟିଏ ଖସି ପଡ଼ିଥିଲା।"

ଗୁଲୁ ଗୁଲୁ ପିଲାମାନେ ଏଣୁତେଣୁ ଗପି ଚାଲିଥା'ନ୍ତି। ସେଦିନ ଆକାଶ ସଫା ନୀଳ ଥିଲା। ଚାରିଆଡେ ପ୍ରଜାପତି ଉଡ଼ି ବୁଲୁଥା'ନ୍ତି । ପ୍ରାୟ ଦଶ ମିନିଟ ଚାଲିବା ପରେ ଶିକ୍ଷକ ଅଟକି ଗଲେ। ହଳଦିଆ ସୋରିଷ ଫୁଲଗୁଡ଼ିକୁ ଦେଖାଇ ପଚାରିଲେ, "ଜାଣିଛ କି ଫୁଲ କାହିଁକି ଫୁଟେ ?"

ସେ ପିଲାଙ୍କୁ ଫୁଲର ଅଂଶଗୁଡ଼ିକ ବିଷୟରେ ବୁଝାଇଲେ। ପିଲାଏ ରାସ୍ତା କଡକୁ ଝୁଙ୍କି ପଡ଼ି ଫୁଲଗୁଡ଼ିକୁ ପରୀକ୍ଷା କରି ଦେଖୁଥା'ନ୍ତି। ପ୍ରଜାପତିମାନେ ଫୁଲରୁ ପରାଗରେଣୁ ନେଇ ଫଳ ଧରିବାରେ କିପରି ସାହାଯ୍ୟ କରନ୍ତି ତାହା ଶିକ୍ଷକ ବୁଝାଇଲେ। ଫୁଲରୁ ଫୁଲ ଉଡ଼ି ବୁଲୁଥିବା ପ୍ରଜାପତିଗୁଡ଼ିକ ବି ସେହି କାମରେ ବ୍ୟସ୍ତ ଥିଲା ଭଳି ଜଣା ପଡୁଥିଲା।

ପିଲାମାନେ ଫୁଲ, ରେଣୁ, ପ୍ରଜାପତି, ଫଳ ସବୁ ବିଷୟରେ ବୁଝିନଥିଲେ। କିନ୍ତୁ ଏ ସବୁ ଯେ ଖୁବ୍ ଦରକାରୀ ତାହା ସେମାନେ ଜାଣୁଥିଲେ।

ଆଉ ଦଶ ମିନିଟ୍ ଖଣ୍ଡେ ଚାଲିବା ପରେ ଗୋଟିଏ ଗହଳିଆ ବଗିଚା ଦିଶିଲା। ଏହା କୁହୋନ୍‌ବୁତ୍‌ସୁ ଦେଉଳକୁ ଘେରି ରହିଥିଲା। ଦେଉଳ ଚାରିପଟେ ପିଲାଏ ଏଣେ ତେଣେ ଖେଳାଇ ହୋଇଗଲେ।

ସାକୋ-ଗ୍ୱନ୍ ପଚାରିଲା, "ତୁ ଉଲ୍‌କା କୂଅ ଦେଖିବୁ ?" ତୋତୋ-ଗ୍ୱନ୍ ହଁ କହି ତା' ପଛରେ ଦୌଡ଼ିଲା।

କୂଅ ଚାରିପଟେ ଛାତିଏ ଉଚ୍ଚର ପଥର ଖଣ୍ଡ କାନ୍ଥ ଥିଲା। ତା' ଉପରେ ଗୋଟିଏ କାଠ ଘୋଡଣୀ ରହିଥିଲା। ସେମାନେ ଘୋଡଣୀଟି ଉଠାଇ ଭିତରକୁ ଚାହିଁଲେ। କୂଅ ଭିତରଟା କିଟିମିଟି ଅନ୍ଧାର ଥିଲା। ତଳ ଆଡକୁ ପଥର ଖଣ୍ଡେ ପରି କିଛି ଦେଖା ଯାଉଥିଲା। ତୋଓ୍ତୋ-ଚାନ୍ ଚକ୍‌ମକ୍ କରୁଥିବା ତାରାଟିଏ ଦେଖିବାକୁ ଆଶା କରିଥିଲା। ବେଶ୍ ସମୟ ଯାଏଁ ଭିତରକୁ ଚାହିଁବା ପରେ ସାକୋଚାନ୍‌କୁ ସେ ପଚାରିଲା, "ତୁ ସେ ତାରାଟିକୁ ଦେଖିଛୁ ?"

ସାକୋ-ଚାନ୍ ମୁଣ୍ଡ ହଲାଇ କହିଲା, "ନାଁ ଦେଖିନି।"

ତୋଓ୍ତୋ-ଚାନ୍ ଭାବୁଥିଲା ଏହା କାହିଁକି ଚକ୍‌ଚକ୍ କରୁନି। ଏ ବିଷୟରେ କିଛି ସମୟ ଭାବି ସେ କହିଲା, "ବୋଧେ ସେ ଶୋଇଛି।"

ସାକୋ-ଚାନ୍ ତା'ର ବଡ ଆଖିକୁ ତରାଟି କରି କହିଲା, "ତାରାମାନେ କ'ଣ ସତରେ ଶୁଅନ୍ତି ?"

ତୋଓ୍ତୋ-ଚାନ୍ ଠିକ୍ ଜାଣି ନଥିଲା। କିନ୍ତୁ ସାଙ୍ଗେ ସାଙ୍ଗେ କହିଲା, "ମୁଁ ଭାବୁଛି ସେମାନେ ଦିନବେଳେ ଶୋଉଥିବେ ଓ ରାତିରେ ଉଠି ଚକ୍‌ଚକ୍ କରୁଥିବେ।"

ତା'ପରେ ପିଲାମାନେ ଏକାଠି ହୋଇ ଦେଉଳ ବେଢାରେ ବୁଲିବାକୁ ଲାଗିଲେ। ଦେଉଳର ଫାଟକକୁ ପଥର ତିଆରି ଦୁଇଟି ଦ୍ୱାରପାଳ ଜଗିଥିଲେ। ତାଙ୍କର ଥନ୍ତଲ ପେଟକୁ ଦେଖି ସେମାନେ ଖୁବ୍ ହସିଲେ। ଅନ୍ଧାରୁଆ ମୁଖ୍ୟ ଦେଉଳ ଭିତରେ ଥିବା ବୁଦ୍ଧଦେବଙ୍କ ମୂର୍ତ୍ତିକୁ ଦେଖି ସେମାନେ ଭକ୍ତି ଓ ବିସ୍ମୟରେ ଚାହିଁ ରହିଲେ। ପଥରରେ ଥିବା ଗୋଟିଏ ବିରାଟ ପାଦଚିହ୍ନ ସହିତ ସେମାନେ ନିଜ ପାଦକୁ ମାପିଲେ। ଲୋକେ କୁହନ୍ତି ଯେ ଏହା ଟେଙ୍ଗୁ ନାମକ ଲମ୍ବା ନାକବାଲା ଅସୁରର ପାଦଚିହ୍ନ। ପୋଖରୀ ଚାରିପଟେ ବୁଲୁ ବୁଲୁ ଡଙ୍ଗାରେ ବସିଥିବା ଲୋକଙ୍କୁ ସେମାନେ ହାତ ହଲାଉଥା'ନ୍ତି। ସମାଧିଗୁଡିକର ଚାରିପଟେ ପଡିଥିବା ଚିକ୍କଣ କଳା ବାଲିଗରଡାରେ ସେମାନେ ପୂରା ମନ ପୂରାଇ ଖପରା ଡିଆଁ ଖେଳିଲେ। ତୋଓ୍ତୋ-ଚାନ୍ ପାଇଁ ଏସବୁ ନୂଆ ଥିଲା ଓ ସେ ପ୍ରତି ନୂଆ କଥାରେ ଉଲ୍ଲସିତ ହୋଇ ପାଟି କରୁଥିଲା।

ସୂର୍ଯ୍ୟ ବୁଡି ଆସିଲା ବେଳକୁ ଶିକ୍ଷକ କହିଲେ, "ଏଥର ଫେରିବା।" ଏପରି ବୁଲିବା ସମୟଟା ପିଲାଙ୍କ ପାଇଁ ସ୍ୱାଧୀନତା ଓ ଖେଳିବାର ସମୟ ଥିଲା। ସେମାନେ କିନ୍ତୁ ତାଙ୍କ ଅଜାଣତରେ ବିଜ୍ଞାନ, ଇତିହାସ, ଜୀବଜଗତ ଆଦି ବିଷୟରେ ଅନେକ କିଛି ଶିଖୁଥିଲେ।

ଏ ଭିତରେ ତୋଓ୍ତୋ-ଚାନ୍ ସବୁପିଲାଙ୍କ ସହ ସାଙ୍ଗ ହୋଇ ସାରିଥିଲା। ତାକୁ ଲାଗୁଥିଲା ଯେପରି ସେ ସମସ୍ତଙ୍କୁ ଅନେକ ଦିନରୁ ଜାଣିଛି।

ଫେରୁ ଫେରୁ ସେ ସମସ୍ତଙ୍କୁ ପାଟି କରି ଶୁଣାଇଦେଲା, "କାଲିକି ପୁଣି ଥରେ ବୁଲିବାକୁ ଯିବା।"

ଡେଇଁ ଡେଇଁକା ସେମାନେ ବି ପାଟି କରି ଜବାବ ଦେଲେ, "ହଁ ଯିବା।"

ପ୍ରଜାପତିଗୁଡିକ ସେ ଯାଏଁ ନିଜ କାମରେ ଲାଗିଥା'ନ୍ତି ଓ ପକ୍ଷୀମାନଙ୍କର ଗୁଞ୍ଜନରେ ବାତାବରଣଟି ପୂରି ଉଠୁଥିଲା। ତୋଓ୍ତୋ-ଚାନ୍ ଖୁସିରେ ଫାଟି ପଡୁଥାଏ।

# ସ୍କୁଲ୍ ଗୀତ

ତୋମୋଏ ଗାକୁଏନ୍‌ରେ ଅନେକ କଥା ତୋତ୍ତୋ-ଚ୍ଚାନ୍ ପାଇଁ ନୂଆ ଥିଲା । ପ୍ରତିଦିନ ସେ ନୂଆ ନୂଆ ଘଟଣା ମାନ ଦେଖୁଥିଲା । ସେ ସ୍କୁଲ୍‌କୁ ଯିବାକୁ ଏତେ ବ୍ୟଗ୍ର ଥିଲା ଯେ ତାକୁ ଲାଗୁଥିଲା ରାତିଟା ଶୀଘ୍ର ପାହୁନାହିଁ । ସେ ଫେରୁ ଫେରୁ ରକି, ବାପା ଓ ମା'ଙ୍କ ଆଗରେ ସେଦିନ ସ୍କୁଲ୍‌ରେ କ'ଣ କ'ଣ ମଜା ନୂଆ କଥା କରିଥିଲା ତା' ନକହି ରହିପାରୁ ନଥିଲା । ଶେଷରେ ମା' ବାଧ୍ୟ ହୋଇ କହନ୍ତି, ''ହଁ ମା ଏତିକି ହୋଇଥାଉ । କଥା ଏତିକି ରଖି ଜଳଖିଆ ଖାଇବୁ ଯା' ।''

ଏହିପରି ଭାବରେ ସ୍କୁଲ୍‌ଟା ତା'ର ଅଭ୍ୟାସରେ ପଡିଗଲା ପରେ ବି ତା'ର ଗଦା ଗଦା କଥା ଶୁଣାଇବାକୁ ଥିଲା । ତା'ର ଏଭଳି ଖୁସି ଦେଖି ମା' ମଧ୍ୟ ବେଶ୍ ଖୁସି ହେଉଥିଲେ ।

ଦିନେ ରେଳଗାଡିରେ ସ୍କୁଲ୍‌କୁ ଯିବାବେଳେ ତୋତ୍ତୋ-ଚ୍ଚାନ୍ ଭାବିଲା ଯେ ତୋମୋଏର କିଛି ଗୀତ ଅଛି ନା ନାହିଁ । ସେ ଏହା ଜାଣିବାକୁ ଏତେ କୌତୂହଳୀ ହୋଇ ପଡିଲା ଯେ ଆଉ ବସି ରହିପାରିଲା ନାହିଁ । ଦୁଇଟି ଷ୍ଟେସନ୍ ଆଗରୁ ସେ ଦୁଆର ପାଖରେ ଛିଡାହେଲା, ଯେପରି ଜିଉଗାଓକାଠାରେ ଟ୍ରେନ୍ ଅଟକିବା କ୍ଷଣି ସେ ଡେଇଁ କରି ବାହାରି ପାରିବ । ଆଗ ଷ୍ଟେସନ୍‌ରେ ଜଣେ ସ୍ତ୍ରୀ ଲୋକ ଚଢ଼ିଲା ବେଳକୁ ଛୋଟ ଝିଅଟିକୁ ଦୁଆର ପାଖରେ ଦେଖି ଭାବିଲେ ଯେ ସେ ସେଠାରେ ହିଁ ଓହ୍ଲାଇବ । କିନ୍ତୁ ତୋତ୍ତୋ-ଚ୍ଚାନ୍ ଦୌଡ ଆରମ୍ଭ ପାଇଁ ପ୍ରସ୍ତୁତ ଥିବା ଭଙ୍ଗୀରେ ଠିଆ ହୋଇ ରହିଲା । ମହିଳା ଜଣକ କିଛି ବୁଝିପାରିଲେ ନାହିଁ ।

ଟ୍ରେନ୍‌ଟି ଷ୍ଟେସନ୍‌ରେ ପୂରା ନ ଅଟକୁଣୁ ତୋତ୍ତୋ-ଚ୍ଚାନ୍ ଡିଆଁ ମାରି ଆଖି ପିଛୁଳାକେ ଫାଟକ ଟପିଗଲା । କ୍ଲାସ୍‌ରେ ପହଞ୍ଚିବା ବେଳକୁ ସେଠାରେ ତାଇଚି ୟାମାନୁଚି ପହଞ୍ଚି ସାରିଥିଲା । ତାକୁ ଭୁସ୍ କରି ପଚ୍ଚାରି ପକାଇଲା, ''ତାଇ-ଚ୍ଚାନ୍ ! ଆମର ସ୍କୁଲ୍ ଗୀତ ଅଛି ନା ନାହିଁ?''

ତାଇ-ଚ୍ଚାନ୍‌କୁ ପଦାର୍ଥ ବିଜ୍ଞାନ ଭଲ ଲାଗେ । ସେ କିଛି ସମୟ ଭାବି କହିଲା, ''ବୋଧହୁଏ ନାହିଁ ।''

ତୋତ୍ତୋ-ଚ୍ଚାନ୍ ମନ ମାରି କହିଲା, ''କିନ୍ତୁ ରହିବା ଉଚିତ୍ । ମୋର ଆର ସ୍କୁଲ୍‌ରେ ଗୋଟିଏ ବଢ଼ିଆ ଗୀତ ଥିଲା ।''

ସେ ପୂରା ଦମ୍‌ରେ ଗାଇବାକୁ ଲାଗିଲା

''ସେନ୍‌ଜୋକୁ ପୋଖରୀର ପାଣି ଅଗଭୀର,
ସୁଦୂର ପ୍ରସାରୀ ଶିକ୍ଷା ଗଭୀର ଆମର....''

ତୋତ୍ତୋ-ଚ୍ଚାନ୍ ଆଗରୁ ସ୍କୁଲ୍‌କୁ ବେଶୀ ଦିନ ଯାଇ ନଥିଲା । ଗୀତର ଶବ୍ଦଗୁଡିକ କଷ୍ଟ ମଧ୍ୟ ଥିଲା । କିନ୍ତୁ ଏହା ମନେ ରଖିବାରେ ତା'ର କିଛି ଅସୁବିଧା ହୋଇ ନଥିଲା । ବିଶେଷ କରି ଏଇ କେତେ ଧାଡି ସେ ସହଜରେ ଗାଇ ପାରୁଥିଲା ।

ତାଇ-ଗ୍ୱନ୍‌କୁ ଏହା ଭଲ ଲାଗିଲା। ଏହା ମଧ୍ୟରେ ଅନ୍ୟ ପିଲାମାନେ ବି ପହଞ୍ଚି ଯାଇଥା'ନ୍ତି। ବଡ ବଡ ଶବ୍ଦ ଥିବା ଗୀତଟିକୁ ଗାଉଥିବା ସମସ୍ତେ ତୋତ୍ତୋ-ଗ୍ୱନ୍‌କୁ ପ୍ରଶଂସାର ଦୃଷ୍ଟିରେ ଦେଖୁଥା'ନ୍ତି।

ତୋତ୍ତୋ-ଗ୍ୱନ୍ କହିଲା, "ଗ୍ୱଲ, ପ୍ରଧାନ ଶିକ୍ଷକଙ୍କୁ ଗୋଟିଏ ସ୍କୁଲ ଗୀତ ତିଆରି କରିବାକୁ କହିବା।"

"ହଁ ହଁ, ଗ୍ୱଲ", କହି ସମସ୍ତେ ପ୍ରଧାନ ଶିକ୍ଷକଙ୍କ ଅଫିସ୍‌କୁ ଗ୍ୱଲିଲେ।

ତୋତ୍ତୋ-ଗ୍ୱନ୍‌ଠୁ ଆଉ ସ୍କୁଲ୍‌ର ଗୀତଟି ଶୁଣି ଓ ସମସ୍ତଙ୍କର ଅଳିକୁ ମାନି ପ୍ରଧାନ ଶିକ୍ଷକ କହିଲେ,"ହଉ ! କାଲି ସକାଳକୁ ମୁଁ ତୁମ ପାଇଁ ଗୋଟିଏ ସ୍କୁଲ୍‌ଗୀତ ଠିକ୍ କରିଦେବି।"

"ନିଶ୍ଚୟ ?", ସମସ୍ତେ ଏକା ଥରକେ ପଗ୍ୱରିଲେ ଓ କ୍ଲାସ୍‌କୁ ଫେରି ଗ୍ୱଲିଲେ।

ପରଦିନ ସକାଳେ ସବୁ କ୍ଲାସ୍‌ର ପିଲାଙ୍କୁ ପଡିଆରେ ଏକାଠି ହେବାକୁ କୁହାଗଲା। ତୋତ୍ତୋ-ଗ୍ୱନ୍ ସମସ୍ତଙ୍କ ସହ ମିଶି ଉତ୍କଣ୍ଠାରେ ମାଡିଗ୍ୱଲିଲା। ପଡିଆ ମଝିରେ ଗୋଟିଏ କଳାପଟା ରଖି ପ୍ରଧାନ ଶିକ୍ଷକ କହିଲେ, "ଏଥର ଦେଖ, ଇଏ ହେଲା ତୁମପାଇଁ ଗୋଟିଏ ସ୍କୁଲ ଗୀତ।" କଳାପଟାରେ ପାଞ୍ଚଟା ସିଧା ଗାର ଟାଣି ସେ ଗୀତଟି ଲେଖିଦେଲେ।



ତୋ ମୋ ଏ          ତୋ ମୋ ଏ          ତୋ ମୋ ଏ

ତା'ପରେ ସଙ୍ଗୀତ ନିର୍ଦ୍ଦେଶକ ପରି ହାତ ଦୁଇଟି ଉପରକୁ ଟେକି ସେ କହିଲେ, "ଗ୍ୱଲ, ଏଥର ସମସ୍ତେ ମିଶି ଗୀତଟି ଗାଇବାକୁ ଚେଷ୍ଟା କରିବା।"

ପ୍ରଧାନ ଶିକ୍ଷକ ନିଜେ ତାଳ ଦେଇ ଗୀତଟି ଆରମ୍ଭ କଲେ ଓ ସ୍କୁଲ୍‌ର ପଗ୍ୱଶ ଜଣ ଯାକ ଛୁଆ ମିଶି ଗାଇଲେ,

"ତୋ-ମୋ-ଏ.... ତୋ-ମୋ-ଏ.... ତୋ-ମୋ-ଏ.... !"

କିଛି ସମୟ ରହି ତୋତ୍ତୋ-ଗ୍ୱନ୍ କହିଲା, "ବାସ୍ ଏତିକି ?"

ପ୍ରଧାନ ଶିକ୍ଷକ ଦମ୍ଭରେ କହିଲେ, "ହଁ, ଏତିକି।"

ଏକଦମ୍ ହତାଶ ହୋଇ ତୋତ୍ତୋ-ଗ୍ୱନ୍ କହିଲା, "କିଛି ମନଛୁଆଁ ଶବ୍ଦ ଥାଇ ଗୀତଟିଏ ହୋଇଥିଲେ ଭଲହୋଇଥା'ନ୍ତା। ଏମିତିକା, ସେନ୍‌ଜୋକୁ ପୋଖରୀ ପାଣି ଅଗଭୀର...."

ଟିକିଏ ଅପ୍ରସ୍ତୁତ ହୋଇ ତଥାପି ହସି ହସି ପ୍ରଧାନ ଶିକ୍ଷକ କହିଲେ, "ତମକୁ ଏଇଟା ଭଲ ଲାଗୁନି ? ମୁଁ ଭାବିଥିଲି ଏଇଟା ବେଶ୍ ଭଲ ହୋଇଛି ବୋଲି।"

ଗୀତଟି କାହାରି ପସନ୍ଦ ନଥିଲା। ଖୁବ୍ ସରଳ। ଗୀତ ନରହୁ ପଛକେ ଏ

ଭଳି ସରଳିଆ ଗୀତ ନହେଉ ।

ପ୍ରଧାନ ଶିକ୍ଷକଙ୍କ ମୁହଁ ଶୁଖିଗଲା, କିନ୍ତୁ ସେ ରାଗିନଥିଲେ । କଳାପଟାର ଲେଖାକୁ ସେ ପୋଛି ଲିଭାଇ ଦେଲେ । ତୋତୋ-ଚ୍ୱାନ୍ ଭାବିଲା ସେମାନେ ନିଶ୍ଚୟ ବହୁତ କଡା ହୋଇଗଲେ । କିନ୍ତୁ ସେ ଚାହୁଁଥିଲା ଗୋଟିଏ ପ୍ରଭାବଶାଳୀ ଗୀତ ।

ପ୍ରକୃତରେ ଦେଖିଲେ ପିଲା ଓ ସ୍କୁଲ ପ୍ରତି ପ୍ରଧାନ ଶିକ୍ଷକଙ୍କର ଶ୍ରଦ୍ଧାକୁ ଏହି ଗୀତ ଠିକ୍ ବୁଝାଉଥିଲା । କିନ୍ତୁ ପିଲାମାନେ ତାହା ବୁଝିବା ଭଳି ବୟସରେ ପହଞ୍ଚି ନଥିଲେ । ଅଳ୍ପ ସମୟ ଭିତରେ ସ୍କୁଲ୍ ଗୀତ କଥା ସମସ୍ତେ ଭୁଲିଗଲେ। ପ୍ରଧାନ ଶିକ୍ଷକ ବୋଧେ ପ୍ରଥମରୁ ଭାବିଥିଲେ ଯେ ସ୍କୁଲ ଗୀତର କିଛି ଆବଶ୍ୟକତା ନାହିଁ । ତେଣୁ କଳାପଟାଟି ପୋଛା ହେବା ସଙ୍ଗେ ସଙ୍ଗେ କଥାଟି ସେଇଠି ସରିଲା । ତୋମୋଏ ଗାକୁଏନ୍‌ର ସ୍କୁଲ୍ ଗୀତ କେବେ ବି ରହି ନଥିଲା ।

## ଗାତଟି ଭରିଦିଅ

ତୋତୋ-ଚ୍ୱାନ୍ ତା' ଜୀବନରେ କେବେ ବି ଏତେ ପରିଶ୍ରମ କରି ନଥିଲା । ସେଦିନ ପାଇଖାନାରେ ତା'ର ପ୍ରିୟ ହାତମୁଣିଟି ଗଳିପଡିଲା । ଏଥିରେ ଟଙ୍କା କିଛି ନଥିଲା । କିନ୍ତୁ ତାକୁ ଏଇଟା ଏତେ ଭଲ ଲାଗୁଥିଲା ଯେ ସେ ତାକୁ ପାଇଖାନାକୁ ବି ନେଇ ଯାଉଥିଲା । ସତରେ, ଲାଲ୍, ହଳଦିଆ ଓ ଶାଗୁଆ ଗାର ପଡିଥିବା ଏହି ଥଳିଟି ବଡ ସୁନ୍ଦର ଦେଖା ଯାଉଥିଲା । ଚ୍ୱରିକୋଣିଆ ଆଉ ଚଉଡା ମୁହାଁ ଏହି ଥଳିଟିର ଉପରେ ରୁପାର କୁକୁର ଡିଜାଇନ୍‌ଟି ବଡ ସୁନ୍ଦର ଦିଶୁଥାଏ ।

ତୋତୋ-ଚ୍ୱାନ୍‌ର ଗୋଟିଏ ମଉଜିଆ ଅଭ୍ୟାସ ଥିଲା ପିଲା ଦିନୁ ସେ ଝାଡା ଫେରିବା ପରେ ପାଇଖାନାର ଗାତ ଭିତରକୁ ଚ୍ୱହୁଁଥିଲା । ମୁଣ୍ଡ ନୁଆଁଇ ସେ ଚ୍ୱହିଁଲା ବେଳେ କେତେ ଥର ତା'ର ଟୋପି ଗଳିପଡେ । ତା'ର କେତୋଟି ସୁନ୍ଦର ଟୋପି ଏଭଳି ହଜି ସାରିଥିଲା । ସେ ଭିତରେ ଥିଲା ଗୋଟିଏ ସୋଲ ଟୋପି ଓ ଗୋଟିଏ ଧଳା ଝାଲର ଲଗା ଟୋପି । ସେ ସମୟର ଖାତ ପାଇଖାନାରେ ତଳେ ମଳ ଓ ପାଣି ଜମି ରହୁଥିଲା । ତା'ର ଟୋପିଗୁଡିକ ସେଥିରେ ଭାସୁଥିବାର ସେ ଦେଖୁଥିଲା, କିନ୍ତୁ ଆଣିବାର ବାଟ ନଥିଲା । ପାଇଖାନା କଣା ଭିତରକୁ ନଇଁ କରି ନଦେଖିବା ପାଇଁ ମା' ସବୁବେଳେ ତାଗିଦ କରୁଥିଲେ ।

ସେଦିନ ପଢା ଆରମ୍ଭ ହେବା ଆଗରୁ ତୋତୋ-ଚ୍ୱାନ୍ ଯେତେବେଳେ ପାଇଖାନା ଗଲା ମା'ଙ୍କ ତାଗିଦ ସେ ଭୁଲିଗଲା । ଅଭ୍ୟାସବଳରେ ତା'ର ମୁଣ୍ଡ ଆପେ ଆପେ

ନଇଁଗଲା । ସେତେବେଳେ ଥଳି ଭିତରୁ ତା' ମୁଠା ହୁଗୁଳି ଯାଇଥିବ । ହଠାତ୍ ଥଳିଟି ତା' ହାତରୁ ଖସିଯାଇ କଣା ମଧ୍ୟକୁ ଗଳି ପଡ଼ିଲା । ଅନ୍ଧାରରେ ଥଳିଟି ଉଭେଇ ଗଲା ବେଳେ ତୋତୋ-ଗ୍ୱନ୍ ପାଟି କରି ଉଠିଲା ।

ଥଳିଟି ପଡ଼ିବାରୁ ତୋତୋ-ଗ୍ୱନ୍ କାନ୍ଦିବାକୁ ରାଜି ନଥିଲା । ସେ ଠିକ୍ କଲା ଯେ ଏହାକୁ ଖୋଜି ବାହାର କରିବ । ସଫେଇ ଘରୁ ସେ ଲମ୍ବା ବେଣ୍ଟବାଲା ମଇଳା କଢ଼ା ଡଙ୍କିଟିଏ ଆଣିଲା । ଏହାର କାଠବେଣ୍ଟଟି ତୋତୋ-ଗ୍ୱନ୍‌ର ଦୁଇ ଗୁଣ ଲମ୍ବା ଥିଲା । ତଥାପି ସେ ପଛେଇ ଗଲା ନାହିଁ। ସେ ତାକୁ ବୋହି ସ୍କୁଲ୍ ପଛ ପାଖକୁ ଗଲା । ସେ ଭାବିଥିଲା ଯେ ପାଇଖାନାର କାନ୍ଥ ପଛପଟେ ମଇଳା ସବୁ ବାହାରୁଥିବ । ହେଲେ ମଇଳା ବାହାରିବା ବାଟଟି ସେ ପାଇଲାନାହିଁ । ଟିକିଏ ଦୂରରେ ସେ ଗୋଟିଏ ନାଳ ସଫା ଗାତ ଦେଖିଲା । ତା' ଉପରେ ଗୋଟିଏ ଗୋଲ ସିମେଣ୍ଟ ଘୋଡଣୀ ଥିଲା । କଷ୍ଟେ ମଷ୍ଟେ ସେ ଘୋଡଣୀଟିକୁ କାଢ଼ି ଭିତରକୁ ମୁଣ୍ଡ ପୂରାଇ ସେ ଗ୍ୱହିଁଲା ।

''ଏଁ! ଏଇଟା ତ କୁହୋନ୍‌ବୁଦ୍‌ସୁ ପୋଖରୀ ପରି ବିରାଟ ହୋଇଛି'', ସେ କହି ଉଠିଲା ।

ତା'ପରେ ସେ ତା' କାମ ଆରମ୍ଭ କରିଦେଲା । ସେ ତା' ଭିତରୁ ମଇଳାତକ ବାହାର କରିବାରେ ଲାଗିଲା । ତିନିଟି ଅଲଗା ପାଇଖାନାର ମଇଳା ସେ ଟାଙ୍କିରେ ପଡୁଥିଲା । ଏତେ ବଡ ଓ ଅନ୍ଧାରୁଆ ଟାଙ୍କି ଭିତରେ କିଛି ଦେଖି ହେଉ ନଥିଲା । ତା' ଛଡା ବେଶୀ ଉହୁଁକି କରି ଦେଖିବାକୁ ଚେଷ୍ଟା କଲେ ଭିତରକୁ ଗଳି ପଡ଼ିବାର ବିପଦ ବି ଥିଲା । ତେଣୁ ସେ ଠିକ୍ କଲା ଯେ ଥଳି ମିଳିବା ଯାଏଁ ମଇଳା କାଢ଼ି ଗ୍ୱଲିବ ।

ଡଙ୍କି ଡଙ୍କି କରି ମଇଳା ସେ କାଢୁଥାଏ ଓ ଉପରେ ଗଦାଉ ଥାଏ। ସେ ମଇଳାକୁ ଘାଣ୍ଟି ଥଳି ଅଛି କି ନାହିଁ ଦେଖୁଥାଏ । ସେ ଭାବିଥିଲା ଯେ ଅଳ୍ପ ସମୟ ଭିତରେ ଥଳିଟି ମିଳିଯିବ । କିନ୍ତୁ ତା'ର ଚିହ୍ନ ବର୍ଣ୍ଣ ନଥାଏ। ଏଣେ କ୍ଲାସ୍ ଆରମ୍ଭ ହେବାର ଘଣ୍ଟି ବାଜିଲା ।

ଏବେ ସେ କରେ କ'ଣ ? ଏତେ ବାଟ ଆଗେଇବା ପରେ କାମଟିକୁ ଛାଡ଼ିବା ଠିକ୍ ହେବ ନାହିଁ ବୋଲି ସେ ଠିକ୍ କଲା । ଆହୁରି ଜୋରରେ ସେ ମଇଳା ବାହାର କରି ଗ୍ୱଲିଲା । ଦୈବାତ ପ୍ରଧାନ ଶିକ୍ଷକ ସେ ବାଟରେ ଆସିଲେ । ସେତେବେଳକୁ ବେଶ୍ ଗଦାଏ ମଇଳା ଜମି ସାରିଥାଏ ।

ତୋତୋ-ଗ୍ୱନ୍‌କୁ ସେ ପଗ୍ୱରିଲେ, ''ତମେ କ'ଣ କରୁଛ ?''

''ମୋ ଥଳିଟି ଏଥିରେ ଗଳି ପଡ଼ିଛି'', ମଇଳା କଢ଼ା ବନ୍ଦ ନକରି ସେ ଜବାବ ଦେଲା । ମୁହୂର୍ତ୍ତେ ବି ସମୟ ସେ ନଷ୍ଟ କରିବାକୁ ଗ୍ୱହୁଁନଥିଲା।

''ଆଚ୍ଛା'', ପ୍ରଧାନ ଶିକ୍ଷକ କହିଗଲେ । ଏମିତି ବୁଲିଲା ବେଳେ ହାତ ଦୁଇଟି ପଛ ପଟେ ଛନ୍ଦି ରଖିବା ତାଙ୍କର ଅଭ୍ୟାସ ଥିଲା ।

ବହୁତ ସମୟ ଗଲା । କିନ୍ତୁ ସେ ଥଳିଟି ପାଉନଥାଏ । ମଇଳା ଗଦାର ଆକାର ଓ ଦୁର୍ଗନ୍ଧ ବଢ଼ି ଗ୍ୱଲିଥାଏ । କିଛି ସମୟ ପରେ ପ୍ରଧାନ ଶିକ୍ଷକ ପୁଣି

ଆସିଲେ । ପଚାରିଲେ, "କ'ଣ ପାଇଲ ?"

ମଇଳା ଗଦା ମଝିରେ ଥାଇ ତୋତୋ-ଚାନ୍ କହିଲା, "ନାହିଁ।" ସେତେବେଳକୁ ସେ ଝାଳରେ ବୁଡି ଯାଇଥାଏ । ମୁହଁଟି ତା'ର ଲାଲ୍ ପଡିଯାଇଥାଏ ।

ପ୍ରଧାନ ଶିକ୍ଷକ ତା' ପାଖକୁ ଆସି ସାଙ୍ଗ ଭଳି କହିଲେ, "ଖୋଜା ସରିଲେ ଏଗୁଡିକୁ ପୁଣି ଭିତରେ ପକାଇ ଦେବ ତ ?" ଆଗ ଭଳି ସେ ପୁଣି ଚାଲିଗଲେ ।

କାମ କରୁ କରୁ ତୋତୋ-ଚାନ୍ ଖୁସିରେ କହିଲା, "ହଁ" । ମଇଳା ଗଦାକୁ ଦେଖୁ ଦେଖୁ ତା' ମନକୁ ଗୋଟିଏ ଚିନ୍ତା ଆସିଲା । ସବୁ ସରିଲେ ଶୁଖିଲା ମଇଳା ତକ ସିନା ଭିତରକୁ ପକାଇ ଦେବ, କିନ୍ତୁ ପାଣି ତକ?

ପାଣିଆ ଅଂଶ ତକ ମାଟିରେ ଭେଦି ଯାଉଥାଏ । ତୋତୋ-ଚାନ୍ କାମ ବନ୍ଦ କରି ଭାବିଲା, "ପାଣି ଅଂଶତକ କେମିତି ଟାଙ୍କିକୁ ଫେରାଇବ ।" ତା' କରିବ ବୋଲି ସେ ପ୍ରଧାନ ଶିକ୍ଷକଙ୍କୁ କଥା ଦେଇ ସାରିଥିଲା । ଶେଷରେ ଠିକ୍ କଲା ଯେ ମଇଳା ପାଣି ଭିଜା ଓଦା ମାଟିରୁ ବି କିଛି ଟାଙ୍କିରେ ପକାଇ ଦେବ ।

ଏବେ ଗଦାଟି ଗୋଟିଏ ପାହାଡ ହୋଇ ସାରିଥାଏ । ଟାଙ୍କିଟି ପ୍ରାୟ ଖାଲି । କିନ୍ତୁ ଥଳିର କୌଣସି ସୂଚନା ହିଁ ମିଳୁ ନଥାଏ । ବୋଧେ ତାହା ଟାଙ୍କି କଡରେ ବା ତଳେ ଲାଖି ଯାଇଥିଲା । କିନ୍ତୁ ତୋତୋ-ଚାନ୍ ଦୁଃଖ କଲାନି । ସେ ଖୁସି ଥିଲା ଯେ ତା'ର ସାଧ୍ୟମତେ ସେ ଚେଷ୍ଟା କରିଛି । ତା'ର ଏହି ସନ୍ତୋଷ ପାଇଁ ପ୍ରଧାନ ଶିକ୍ଷକଙ୍କର କିଛି ଅବଦାନ ଥିଲା । ଏହି କାମ ପାଇଁ ସେ ତୋତୋ-ଚାନ୍‌କୁ ଗାଳି ଦେଇ ନଥିଲେ । ବରଂ ତା' ଉପରେ ବିଶ୍ୱାସ ରଖିଥିଲେ । ଏହା ତା'ର ଆତ୍ମସମ୍ମାନକୁ ବଢାଇ ଦେଇଥିଲା । କିନ୍ତୁ ଏତେ ଜଟିଳ କଥାକୁ ତୋତୋ-ଚାନ୍ ବୁଝି ନଥିଲା ।

ଅଧିକାଂଶ ବୟସ୍କ ଲୋକ ତୋତୋ-ଚାନ୍‌କୁ ଏପରି ଅବସ୍ଥାରେ ଦେଖି ପାଟି କରିଥା'ନ୍ତେ, "ଏଇ ! ତୁ କ'ଣ କରୁଛୁ ?" କିମ୍ବା "ବନ୍ଦ କର ! ଏ କାମ କେତେ ବିପଦଜନକ ଜାଣିଛୁ ?" ବା ସାହାଯ୍ୟ କରିବାକୁ ଆଗେଇ ଆସିଥାନ୍ତେ ।

"କାମ ସରିଲେ ସବୁତକ ପୁଣି ଭିତରକୁ ପକେଇ ଦେବ ତ ?" ମାତ୍ର ଏତିକି କଥାରେ କେତେ ବିଶ୍ୱାସ ଭରି ରହିଛି । ତୋତୋ-ଚାନ୍‌ଠାରୁ ସବୁ କଥା ଶୁଣି ମା' ଭାବିଲେ ସତରେ କେତେ ଚମତ୍କାର ପ୍ରଧାନ ଶିକ୍ଷକ ଜଣକ !

ଏହି ଘଟଣା ପରଠୁ ତୋତୋ-ଚାନ୍ ଆଉ କେବେ ବି ପାଇଖାନା କଣାକୁ ଚାହିଁନାହିଁ । ଆଉ ସେ ଜାଣିଲା ଯେ ଏହି ପ୍ରଧାନ ଶିକ୍ଷକ ଜଣଙ୍କୁ ପୁରା ବିଶ୍ୱାସ କରିହେବ । ସେ ତାଙ୍କୁ ଏବେ ଆହୁରି ଭଲ ପାଇଲା ।

ତୋତୋ-ଚାନ କଥା ରଖି ସବୁତକ ମଇଳା ଟାଙ୍କି ଭିତରକୁ ପକାଇ ଦେଲା । ବାହାର କରିବାଟା ଏକ ବଡ କଷ୍ଟ କାମ ଥିଲା । କିନ୍ତୁ ଓଲଟା କାମଟା ବେଶ୍ ଶୀଘ୍ର ହୋଇଗଲା । ସେ କିଛି ଓଦା ମାଟି ବି ଟାଙ୍କିରେ ପକାଇଦେଲା ଓ ଉପରର ମାଟିକୁ ସମତଳ କରିଦେଲା ଓ ମାଟିକୁ ଠିକ୍ ଭାବରେ ରଖିଦେଲା । ଡଙ୍କିଟିକୁ ସଫେଇ ଘରେ ରଖିଦେଇ ଆସିଲା ।

ସେଦିନ ରାତିରେ ଶୋଇବା ବେଳେ ତୋତୋ-ଚାନର ସେ ସୁନ୍ଦର ହାତ ମୁଣିର

କଥା ମନେ ପଡିଲା, ଅନ୍ଧାରରେ ଉଭେଇ ଯାଉଥିବା ଦୃଶ୍ୟଟା ତାକୁ ଦୁଃଖ ବି ଦେଲା, ହେଲେ ଦିନଯାକର କଠିନ ଖଟଣୀ ପରେ ସେ ଏତେ ଥକି ଯାଇଥିଲା ଯେ ସାଙ୍ଗେ ସାଙ୍ଗେ ତାକୁ ନିଦ ଆସିଗଲା ।

ଏଣେ ତାର କଠିନ ପରିଶ୍ରମର ସ୍ଥାନରେ ଜହ୍ନ ଆଲୁଅ ପଡି ଓଦା ମାଟି ଚକ ଚକ୍ ଚକ୍ କରୁଥାଏ । ଆଉ ତା'ର ଥଳିଟି କେଉଁଠି ଚୁପ୍‌ଚାପ୍ ପଡି ରହିଥିବ ।

## ତୋତ୍ତୋ-ଗ୍ୱିନ୍‌ର ନାଆଁ

ତୋତ୍ତୋ-ଗ୍ୱିନ୍‌ର ପ୍ରକୃତ ନାଁ ଥିଲା ତେତ୍‌ସୁକୋ । ତା' ଜନ୍ମ ଆଗରୁ ପୁଅଟିଏ ହେବ ବୋଲି ତା' ବାପା ଓ ମା'ଙ୍କର ସାଙ୍ଗ ଓ ସମ୍ପର୍କୀୟମାନେ କହିଥିଲେ ଏହା ତାଙ୍କର ପ୍ରଥମ ପିଲା ହେବ, ତେଣୁ ସେମାନେ ପୁଅ ହିଁ ଆଶା କରୁଥିଲେ । ତା'ପାଇଁ ସେମାନେ ନାଁଟିଏ ବି ବାଛି ରଖିଥିଲେ 'ତୋରୁ'। ଝିଅଟିଏ ହେବାରୁ ସେମାନେ ଟିକେ ହତାଶ ହୋଇଥିଲେ, କିନ୍ତୁ 'ତୋରୁ' ନାଁଟିର ଚୀନ ଦେଶୀୟ ଭାବ (ତୀବ୍ର ବା ଗମ୍ଭୀର) ଦୁହିଁଙ୍କୁ ଭଲ ଲାଗିଥିଲା । ତେଣୁ ସେମାନେ ଏହାକୁ ଝିଅ ଅର୍ଥରେ କରିଦେଲେ ତେତ୍‌ସୁକୋ, ତାକୁ ସମସ୍ତେ ଗେହ୍ଲାରେ ଡାକୁଥିଲେ - ତେତ୍‌ସୁକୋ-ଗ୍ୱିନ । ତାକୁ କିନ୍ତୁ ନିଜ ନାଁଟି ତେତ୍‌ସୁକୋ-ଗ୍ୱିନ୍ ପରି ଶୁଣାଯାଉ ନଥିଲା । ତା'ର ନାଁ ପଚାରିଲେ ସେ କହୁଥିଲା 'ତୋତ୍ତୋ-ଗ୍ୱିନ୍'। ସେ ଭାବୁଥିଲା ଯେ 'ଗ୍ୱିନ୍' ମଧ୍ୟ ତା' ନାଁର ଏକ ଅଂଶ ।

କେବେ କେବେ ବାପା ତାକୁ ଡାକୁଥିଲେ ତୋତ୍‌ସ୍କି, ଯେପରି ସେ ତାଙ୍କ ପୁଅ। ସେ କହିବେ, 'ତୋତ୍‌ସ୍କି ! ଆସିଲୁ, ଗୋଲାପ ଗଛରୁ ପୋକ ମାରିବା।' ଖାଲି ବାପା ଓ ରକିଙ୍କ ଛଡା ଆଉ ସମସ୍ତେ ତାକୁ ଡାକୁଥିଲେ, 'ତୋତ୍ତୋ-ଗ୍ୱିନ୍'। ସେ ତା' ଖାତା, ବହିରେ ତା' ନାଁ ଲେଖୁଥିଲା 'ତେତ୍‌ସୁକୋ', କିନ୍ତୁ ସେ ନିଜକୁ 'ତୋତ୍ତୋ-ଗ୍ୱିନ' ବୋଲି ଭାବୁଥିଲା ।

## ରେଡିଓ ହାସ୍ୟକାର

ଗତକାଲି ତୋତୋ-ଗ୍ୱନ ବହୁତ ଚିଡ଼ି ଯାଇଥିଲା । ମା' କହିଥିଲେ, "ତୁ ଆଉ ରେଡିଓରେ ହସକଥା ଶୁଣିବୁନି ।" ତୋତୋ-ଗ୍ୱନ ସାନ ଥିଲାବେଳେ ରେଡିଓ ସବୁ ବହୁତ ବଡ଼ ଥିଲା ଓ କାଠରେ ତିଆରି ହେଉଥିଲା । ସେଗୁଡ଼ିକର ଗଠନ ବେଶ୍ ସୁନ୍ଦର ଥିଲା, ତାଙ୍କର ଗ୍ୱରିକୋଣିଆ ରେଡିଓର ଉପରଟି ଗୋଲାକାର ହୋଇଥିଲା । ଏହାର ବଡ଼ ସ୍ପିକରଟି ରଙ୍ଗୀନ୍ ରେଶମ କନାରେ ଘୋଡ଼ା ହୋଇଥିଲା । ରେଡିଓରେ ଦୁଇଟି ଗ୍ୱବି ମଧ୍ୟ ରହିଥିଲା ।

ସ୍କୁଲରେ ପଢ଼ିବା ଆଗରୁ ବି ସେ ରେଡିଓରୁ ରାକୁଗୋ ହସକଥା ଶୁଣିଥିଲା । ସ୍ପିକର ଦେହରେ କନାକୁ ମାଡ଼ି କରି ସେ ଶୁଣେ ଓ ଭାବେ ଏହି ହସକଥାଗୁଡ଼ିକ ଭୀଷଣ ମଉଜିଆ, ଗଲାକାଲି ଯାଏଁ ମା' ବି ତାକୁ ଶୁଣିବା ପାଇଁ କେବେ ମନାକରି ନଥିଲେ ।

ଗତରାତିରେ ବାପାଙ୍କର କିଛି ବାଜାବଜାଳୀ ସାଙ୍ଗ ଅଭ୍ୟାସ କରିବା ପାଇଁ ତାଙ୍କ ଘରକୁ ଆସିଥିଲେ, ମା' ତୋତୋ-ଗ୍ୱନ୍‌କୁ କହିଲେ ଶ୍ରୀ ତାକିବାନା ତୋ' ପାଇଁ କଦଳୀ ଆଣିଛନ୍ତି । ତୋତୋ-ଗ୍ୱନ୍ ଏକଦମ୍ ଖୁସି ହୋଇଗଲା, ସେ ତାକିବାନାକୁ ଜାପାନୀ ଢଙ୍ଗରେ ମୁଣ୍ଡ ନୁଆଁଇ ଧନ୍ୟବାଦ ଜଣାଇଲା ଓ ମା'ଙ୍କୁ କହିଲା, "ମା' ଏଗୁଡ଼ା ଖୁବ୍ ବଢ଼ିଆ ।" ଏ କଥାଟି କିନ୍ତୁ ସେହି ରେଡିଓ କାର୍ଯ୍ୟକ୍ରମର ଢଙ୍ଗକୁ ସେ ନକଲ କରି କହିଲା, ସେଥିରେ ମୂଳ ଜାପାନୀ ଶବ୍ଦଗୁଡ଼ିକୁ ବିକୃତ ଭାବରେ କୁହାଯାଉଥିଲା ।

ଏହାପରଠୁଁ ବାପା ମା' ଘରେ ନଥିଲେ ତୋତୋ-ଗ୍ୱନ୍ ଲୁଚି ଲୁଚି ଶୁଣେ ଓ ମଜା ହସକଥାଗୁଡ଼ିକରେ ସେ ହୋ, ହୋ ହୋଇ ହସେ । କେହି ବୟସ୍କ ଲୋକ ଦେଖିଲେ ଆଶ୍ଚର୍ଯ୍ୟ ହୁଅନ୍ତେ ଯେ ଏତେ ଛୋଟ ଝିଅଟି କିପରି ଏତେ ଗୂଢ଼ ଅର୍ଥର ହସକଥା ବୁଝିପାରୁଛି । ଏକଥା କିନ୍ତୁ ସତ ଯେ ଛୋଟ ପିଲାଙ୍କର ମଧ୍ୟ ମଜା କଥା ବିଷୟରେ କିଛି ଗହନ ବୁଝାମଣା ରହିଛି । କେଉଁ କଥା ସତରେ ମଜାଦାର ଛୋଟ ପିଲାଟିଏ ତାକୁ ଧରିପାରେ ।

## ଆଉ ଗୋଟିଏ ରେଳଡବା

"ଆଜି ରାତିରେ ଗୋଟିଏ ନୂଆ ରେଳଡବା ଆସୁଛି", ଖାଇବା ସମୟରେ ମିୟୋ-ଗ୍ୱନ୍ କହିଲା । ସେ ଥିଲା ପ୍ରଧାନ ଶିକ୍ଷକଙ୍କର ତୃତୀୟ ଝିଅ ଓ ତୋତୋ-ଗ୍ୱନ୍‌ର ସହପାଠୀ ।

ଏଯାଏଁ ୬ଟି ରେଳଡବାରେ ଶ୍ରେଣୀ ଚାଲିଥିଲା । କିନ୍ତୁ ଆଜି ଆଉ ଗୋଟିଏ ଆସୁଛି, ମିୟୋ-ଗ୍ୱନ୍ କହିଲା ନୂଆ ଡବାରେ ତାଙ୍କର ପାଠାଗାର ରହିବ, ପିଲାମାନେ ଖୁସିରେ ଉଛୁଳି ପଡିଲେ । କିଏ ଜଣେ କହିଲା, "ମୁଁ ଭାବିପାରୁନି କେଉଁ ରାସ୍ତାରେ ଏହା ସ୍କୁଲ୍ ଭିତରକୁ ଆସିବ ।" କେହି ଏ ବିଷୟରେ ଜାଣି ନଥିଲେ, କିଛି ସମୟ ପାଇଁ ସମସ୍ତେ ଚୁପ୍ ହୋଇ ଭାବିବାକୁ ଲାଗିଲେ ।

"ବୋଧେ ଏହା ଓଇମାଚି ଲାଇନ୍‌ରେ ଆସିବ ଓ ଲେଭେଲ୍ କ୍ରସିଂ ପାଖରେ ଅଲଗା ହୋଇ ଏଆଡେ ଆସିବ ।" କିଏ ଜଣେ ମତ ଦେଲା, ଏପରି ହେଲେ ତାକୁ ରେଳଲାଇନ୍ ଛାଡିବାକୁ ପଡିବ ।

ଆଉ ଜଣେ କହିଲା, "ସେମାନେ ତାକୁ ଗୋଟିଏ ଶଗଡରେ ବୋହିକି



ଆଣିପାରନ୍ତି ।'' ସାଙ୍ଗେ ସାଙ୍ଗେ ଆଉ ଜଣେ କହିଲା, ''ଏହି ଡବାଗୁଡ଼ିକୁ ବୋହିବା ପାଇଁ ଏତେ ବଡ ଶଗଡ କାହିଁ ?''

''ମୁଁ କିଛି ଭାବିପାରୁନି ଆଉ ବାଟ ଦିଶିଲାନି । ପିଲାମାନେ ଜାଣୁଥିଲେ ଯେ ବଗିଟି ଗୋଟିଏ ଶଗଡ ବା ଟ୍ରକରେ ବି ଜାଗା ଧରିବନି । ବେଶ୍ ସମୟ ଭାବିବା ପରେ ତୋତ୍ତୋଗ୍ୱନ୍ କହିଲା, ''ରେଳଲାଇନ୍ ! ମୁଁ ଭାବୁଛି ସେମାନେ ସ୍କୁଲଯାଏଁ କିଛି ରେଳଧାରଣା ଦିଛାଇ ଦେବେ ।''

ଜଣେ କିଏ ପଗ୍ୱରିଲା, ''କେଉଁଠୁ ଲାଇନ୍ ପକାଇବେ ?'' ''କେଉଁଠୁ ? ଏବେ ଯେଉଁଠି ବି ଟ୍ରେନ୍‌ଟି ଅଛି ସେଇଠୁ,'' ଏହା କହିବା ସଙ୍ଗେ ସଙ୍ଗେ ତୋତ୍ତୋ-ଗ୍ୱନ୍ ବୁଝିଲା ଯେ ତା' ଉପାୟଟି ସେତେ ଭଲ ନୁହେଁ । ସେ ଜାଣିନଥିଲା ଯେ ବଗିଟି କେଉଁଠୁ ଆସିବ । ସିଧା ବାଟ ପାଇଁ ସେମାନେ ତ ଆଉ ଘରଦ୍ୱାର ଭାଙ୍ଗି ଲାଇନ୍ ଟାଣି ଦେଇ ପାରିବେନି ।

ଏମିତି କେତେ ଉପାୟ ସେମାନେ ଖୋଜିଲେ ହେଲେ କିଛି କାମର ହେଲାନି । ପିଲାମାନେ ଠିକ୍ କଲେ ଯେ ସେଦିନ ଉପର ବେଳା ଘରକୁ ନ ଫେରି ରେଳ ଡବା ଆସିବା ଯାଏଁ ଅପେକ୍ଷା କରିବେ । ପ୍ରଧାନ ଶିକ୍ଷକଙ୍କ ଝିଅ ମିୟୋ-ଗ୍ୱନ୍‌କୁ ବାଛି ତା ବାପାଙ୍କ ପାଖକୁ ପଠାଇଲେ । ରାତି ଯାକେ ସ୍କୁଲରେ ରହି ପାରିବା ପାଇଁ ଅନୁମତି ଆଣିବା କାମ ସେ କରିବ । ସେ ବେଶ୍ କିଛି ସମୟ ପରେ ଫେରିଲା । ସେ କହିଲା, ''ଆଜି ବେଶୀ ରାତିରେ ବଗିଟି ଅଣାଯିବ । ସବୁ ଟ୍ରେନ୍ ଯିବା ଆସିବା ବନ୍ଦ ହେବା ପରେ । ତେଣୁ ସମସ୍ତେ ଘରକୁ ଯିବେ, ଯିଏ ଦେଖିବାକୁ ଗ୍ୱହୁଁଛି ସେ ଘରୁ ଅନୁମତି ନେଇ ଆସିବ । ଘରେ ଖିଆ ସାରି, ପାଇଜାମା କମ୍ବଳ ଆଣି ରାତିରେ ସ୍କୁଲରେ ରହିପାରିବ । ''ହୋ—ହୋ'', ପିଲାଙ୍କ ଭିତରେ ନାହିଁ ନଥିବା ଉତ୍ସାହ ଦେଖାଗଲା । ''ସାର ଆମକୁ ପାଇଜାମା ଆଣିବାକୁ କହିଲେ ?'' ''ଆଉ କମ୍ବଳ ?''

ସେଦିନ ଉପରବେଳା ପାଠରେ ଆଉ କାହାରି ବି ମନ ନଥାଏ । ସ୍କୁଲ ପରେ ତୋତ୍ତୋ-ଗ୍ୱନ୍‌ର କ୍ଲାସ୍ ସାଙ୍ଗମାନେ ସିଧା ଘରକୁ ଗ୍ୱଲିଲେ । ସମସ୍ତେ ଆଶା କରୁଥିଲେ ଯେ ଥରେ ଭେଟ ହେବ । ରାତିରେ ପୁଣି ଘରେ ପହଞ୍ଚୁ ପହଞ୍ଚୁ ତୋତ୍ତୋ-ଗ୍ୱନ୍ ମା'ଙ୍କୁ କହିଲା, ''ଗୋଟେ ଟ୍ରେନ୍ ଆସୁଛି, ଆମେ ଜାଣିନୁ ସେଇଟା କେମିତି ପହଞ୍ଚିବ । ପାଇଜାମା ଓ କମ୍ବଳ ନେଇ ମୁଁ ଯିବି ?''

ଏପରି ବର୍ଣ୍ଣନାରୁ ମା' ବା କ'ଣ ବୁଝନ୍ତେ ? ସେ କ'ଣ କହୁଛି ମା' ତା'ର କିଛି ଧାରଣା ପାଇଲେନି, କିନ୍ତୁ ତୋତ୍ତୋ-ଗ୍ୱନ୍‌ର ଗମ୍ଭୀର ଗ୍ୱହାଣୀ ଓ ଭଙ୍ଗୀରୁ ସେ ଅନୁମାନ କରିନେଲେ ଯେ କିଛି ଗୋଟିଏ ଅସାଧାରଣ କଥା ଘଟିବାକୁ ଯାଉଛି । ତାକୁ ପ୍ରଶ୍ନ ପଗ୍ୱରି ପଗ୍ୱରି ଘଟଣାଟା କ'ଣ ମା' ବୁଝି ପାରିଲେ । ସେ ଭାବିଲେ, ତୋତ୍ତୋ-ଗ୍ୱନ୍ ଏହା ଦେଖିବା ଉଚିତ୍, ଏପରି ସୁଯୋଗ ବୋଧେ ଆଉ କେବେ ମିଳିବନି । ରେଳଡବାଟି ଅଣାଯିବା ସମୟରେ ମା' ନିଜେ ବି ଦେଖିବାକୁ ଗ୍ୱହିଁଲେ ।

ମା' ତୋତ୍ତୋ-ଗ୍ୱନ୍‌ର ପାଇଜାମା ଓ କମ୍ବଳ ସଜାଡ଼ି ଓ ଖାଇବା ପରେ ତାକୁ ନେଇ ସ୍କୁଲ୍‌କୁ ଗଲେ । ପ୍ରାୟ ଦଶ ଜଣ ପିଲା ଆସିଥିଲେ । ସେମାନଙ୍କ ଭିତରେ

କେତେ ଜଣ ବଡ ଶ୍ରେଣୀ ପିଲା ବି ଥିଲେ । ଯେଉଁମାନେ ଏ ବିଷୟରେ ଶୁଣିଥିଲେ ।

ଆଉ କେତେ ଜଣଙ୍କ ମା' ବି ପିଲାଙ୍କ ସହ ଆସିଥିଲେ । ସେମାନେ ରହିବାକୁ ଗ୍ୱହୁଁଥିଲା ଭଳି ଜଣାପଡୁଥିଲେ, କିନ୍ତୁ ପିଲାଙ୍କୁ ପ୍ରଧାନ ଶିକ୍ଷକଙ୍କ ଜିମା ଦେବା ପରେ ସମସ୍ତେ ଫେରିଗଲେ ।

''ଏହା ଆସିଲେ ମୁଁ ତୁମ ସମସ୍ତଙ୍କୁ ଉଠେଇଦେବି'', ପ୍ରଧାନ ଶିକ୍ଷକଙ୍କଠୁଁ ଏକଥା ଶୁଣି ପିଲାଏ ପ୍ରାର୍ଥନା ଘରେ କମ୍ବଳ ଘୋଡେଇ ହୋଇ ଶୋଇଗଲେ । ପିଲାଏ ଭାବିଲେ ଯେ ବଗିଟି କିପରି ଆସିବ ଭାବି ଭାବି ତାଙ୍କୁ ନିଦ ହେବନି । କିନ୍ତୁ ଏତେ ହୋ ହଲ୍ଲା ଓ ଉଦ୍ଦୀପନା ପରେ ସେମାନେ ଥକିଯାଇଥିଲେ ଓ ଶୀଘ୍ର ଢୁଳେଇବାରେ ଲାଗିଲେ । ''ହେ ମତେ ନିଶ୍ଚୟ ଉଠେଇଦେବ'' କହିବା ଆଗରୁ ଅଧିକାଂଶ ଶୋଇପଡିଲେ । ''ଆସିଗଲା ! ଆସିଗଲା !''

ଏପରି କୋଳାହଳ ଶୁଣି ତୋତୋ-ଗ୍ୱନ୍ ଡେଇଁ ଠିଆ ହୋଇଗଲା ଓ ସ୍କୁଲ୍ ପଡିଆ ଟପି ଫାଟକ ପାଖରେ ପହଞ୍ଚିଗଲା । ସକାଳର ଫିକା କୁହୁଡି ଭିତରେ ଗୋଟିଏ ବିରାଟ ବଗି ଦେଖାଯାଉଥାଏ, ସବୁ କିଛି ସ୍ୱପ୍ନ ଦେଖିଲା ପରି ଲାଗୁଥାଏ । ବିନା ରେଳ ଲାଇନ୍‌ରେ ପିଚୁ ରାସ୍ତା ଉପରେ ଟ୍ରେନ୍‌ଟିଏ ଆସୁଛି ! ଶବ୍ଦ ଟିକିଏ ବି ହେଉନି ! ଏହା ଗୋଟିଏ ବଡ ଟ୍ରେଲର୍ ଉପରେ ରଖାହୋଇ ଟ୍ରାକ୍ଟର ଦ୍ୱାରା ଟଣା ହେଉଥିଲା । ଓଇମାଚି ଲାଇନ୍ ଷ୍ଟେସନ୍‌ରୁ ଡବାଟି ଏଭଳି ଆସୁଥାଏ, ତୋତୋ-ଗ୍ୱନ୍ ଓ ସାଙ୍ଗମାନେ ନୂଆ କଥାଟିଏ ଶିଖିଲେ - ଟ୍ରାକ୍ଟର ବୋଲି ଜିନିଷଟିଏ ଅଛି ଯାହା ଶଗଡଠୁଁ ବଡ ଟ୍ରେଲର୍‌କୁ ଟାଣି ଆଣିପାରୁଛି । ତାଙ୍କ ମନ ପ୍ରଶଂସାରେ ଭରିଗଲା ।

ସକାଳର ଶୂନ୍‌ଶାନ୍ ରାସ୍ତା ଉପରେ ବଗିଟି ଟ୍ରେଲର ଉପରେ ଧୀରେ ଧୀରେ ଗ୍ୱଲିଥାଏ । ଫାଟକ ପାଖରୁ ପଡିଆ ଭିତରକୁ ଡବାଟି ଯିବ କିପରି ? ସେ ସମୟରେ ବଗିଟିକୁ ଟେକିଲା ଭଳି ବଡ ବଡ କ୍ରେନ୍ ଜଣା ନଥାଏ । ବଡ଼ ବଡ କାଠ ଗଣ୍ଡି ଉପରେ ବଗିକୁ ଗଡେଇ ଗଡେଇ ସ୍କୁଲ ଭିତରକୁ ନେବାକୁ ହେବ ।

''ଭଲକରି ଦେଖ'', ପ୍ରଧାନ ଶିକ୍ଷକ କହିଲେ, ''ଏତେ ବଡ ବଗିଟିକୁ ଗଡେଇ କରି ସହଜରେ ନିଆଯାଇପାରେ ! ଚକ ବା କାଠ ଗଣ୍ଡି ବିନା ଟାଣି କରିନେବା ବହୁତ କଷ୍ଟ ।'' ପିଲାମାନେ ମନଦେଇ ଦେଖୁଥାନ୍ତି । ''ଜୋର ଲଗାକେ, ହୈଆ'' ଆଦି ପାଟି କରି ବୋହିବା ଲୋକମାନେ କାମରେ ଲାଗିଥା'ନ୍ତି । ତାଙ୍କ ପାଟି ସହ ତାଳ ଦେଇ ସୂର୍ଯ୍ୟ ଧୀରେ ଧୀରେ ଉଠିଲା ଭଳି ଲାଗୁଥାଏ । ବଗିଟି ତା'ର ରହିବା ଜାଗାକୁ ଆସିଗଲା ।

ସ୍କୁଲ୍‌ର ଆଉ ଛ'ଟି ବଗି ଭଳି ଏହି ବଗିର ଚକଗୁଡିକୁ କାଢି ନିଆଯାଇଥିଲା । ଆଉ ସେ ଗଡିବ ନାହିଁ କି ଯାତ୍ରୀ ବୋହିବ ନାହିଁ । ଏବେ ସେ ପିଲାଙ୍କ ହସର ଶବ୍ଦ ବୋହିବ !

ସକାଳର କଅଁଳ ଖରାରେ ପାଇଜାମା ପିନ୍ଧି ଠିଆ ହୋଇଥିବା ପୁଅଝିଅଙ୍କ ଖୁସି କହିଲେ ନ ସରେ । ସେମାନେ ଏତେ ଖୁସି ହୋଇଯାଇଥିଲେ ଯେ ଖାଲି ତଳ ଉପର ହୋଇ ଡେଇଁଥା'ନ୍ତି । ପ୍ରଧାନ ଶିକ୍ଷକଙ୍କ ବେକକୁ ଧରି ଓହଳି ପଡୁଥାନ୍ତି ଓ ତାଙ୍କ ହାତକୁ

ଧରି ଝୁଲୁଥା'ନ୍ତି । ପିଲାଙ୍କ ଏହି ଟିଙ୍କାଟିଙ୍କିରେ ଦୋହଲି ଦୋହଲି ପ୍ରଧାନ ଶିକ୍ଷକ ଖୁସିରେ ହସୁଥା'ନ୍ତି । ସେଦିନ ସେମାନେ କେତେ ଖୁସି ଥିଲେ ସେ କଥା କେହି କେବେ ଭୁଲି ନାହାନ୍ତି ।

## ସ୍କୁଲ୍ ପୋଖରୀ

ଏହା ଥିଲା ତୋତ୍ତୋ-ଚ୍ୟାନ୍ ପାଇଁ ଏକ ସ୍ମରଣୀୟ ଦିନ । ପ୍ରଥମ ଥର ପାଇଁ ସେ ଏକ ପୋଖରୀରେ ପହଁରିଲା, ଜାମାପଟା ସବୁ ଖୋଲି ଦେଇ । ସେଦିନ ସକାଳେ ପ୍ରଧାନ ଶିକ୍ଷକ ସମସ୍ତଙ୍କୁ କହିଲେ, "ଆଜି ହଠାତ୍ ବେଶ୍ ଗରମ ଲାଗୁଛି, ମୁଁ ଯାଉଛି ପୋଖରୀଟିରେ ପାଣି ଭରିଦେବି ।" "ହଁ" ସମସ୍ତେ ଖୁସିରେ ନାଚି ଡେଇଁ ଚିତ୍କାର କରି ଉଠିଲେ । ତୋତ୍ତୋ-ଚ୍ୟାନ୍ ଓ ପ୍ରଥମ ଶ୍ରେଣୀର ପିଲାମାନେ ବଡଙ୍କ ଅପେକ୍ଷା ଅଧିକ ଉତ୍ସାହରେ ମାତିଲେ । ତୋମୋଏର ପହଁରା ପୋଖରୀଟି ଗୋଟିଏ ବଡ ସିମେଣ୍ଟ କୁଣ୍ଡଭଳି, ଏହା ପୂରା ଚ୍ୟରିକୋଣିଆ ନଥିଲା । ଡଙ୍ଗା ଭଳି ଏହାର ଗୋଟିଏ ପଟ ଗୋଜିଆ ଥିଲା । ଜାଗା କମ୍ ଥିବାରୁ ହୁଏତ ତା'ର ଆକାର ଏପରି ହୋଇଥିଲା । କିନ୍ତୁ ଯାହା ହେଲେ ବି ଏହା ଏକ ବିରାଟକାୟ ଓ ଚମତ୍କାର ପୋଖରୀ ଥିଲା ଏହା ଥିଲା ଶ୍ରେଣୀ ଘର ଓ ପ୍ରାର୍ଥନା ଘର ମଝିରେ ।

ପାଠପଢ଼ା ସମୟରେ ତୋତ୍ତୋ-ଚ୍ୟାନ୍ ଓ ସାଙ୍ଗମାନେ ଝରକା ଦେଇ କଣେଇ କଣେଇ ପୋଖରୀ ଆଡେ ଚାହୁଁଥାନ୍ତି । ଶୁଖିଲା ଥିବା ସମୟରେ ପତ୍ର ଆଦି ପଡି ଏହା ଏକ ଖେଳପଡିଆ ଭଳି ଦେଖାଯାଉଥିଲା । ଏବେ ସଫା ହୋଇ ପାଣି ଭରାଗଲା ପରେ ସତ ପୋଖରୀ ପରି ଦେଖାଯାଉଥାଏ।

ଶେଷରେ ଖାଇବା ସମୟ ଆସିଲା । ସବୁ ପିଲା ଯାଇ ପୋଖରୀ ପାଖରେ ପହଞ୍ଚିଗଲେ । ପ୍ରଧାନ ଶିକ୍ଷକ କହିଲେ, "ଆମେ କିଛି ବ୍ୟାୟାମ କରିବା ଓ ତା'ପରେ ପହଁରିବା ।"

"ମୋର ଗୋଟିଏ ପହଁରା ପୋଷାକ ଦରକାର", ତୋତ୍ତୋ-ଚ୍ୟାନ୍ ଭାବିଲା । ଯେତେବେଳେ ସେ ବାପା, ମା'ଙ୍କ ସାଙ୍ଗରେ କାମାକୁର ଯାଇଥିଲା ସେ ପହଁରିବା ପୋଷାକ, ମଟରଟ୍ୟୁବ୍ ଆଉ କେତେ ଜିନିଷ ନେଇଥିଲା । ସେ ମନେ ପକାଇବାକୁ ଚେଷ୍ଟା କଲା ଶିକ୍ଷକ ତାକୁ ପହଁରିବା ପୋଷାକ ଆଣିବାକୁ କହିଥିଲେ ନା ନାହିଁ । ତା'ର ମନ କଥା ବୁଝିଗଲା ପରି ପ୍ରଧାନ ଶିକ୍ଷକ କହିଲେ, "ପହଁରିବା ପୋଷାକ ପାଇଁ ବ୍ୟସ୍ତ ହୁଅନି, ଯାଇ ପ୍ରାର୍ଥନା ଘରେ ଦେଖ ।"

ତୋତ୍ତୋ-ଚ୍ୟାନ୍ ଓ ପ୍ରଥମ ଶ୍ରେଣୀ ପିଲାଏ ପ୍ରାର୍ଥନା ଘରେ ଯାଇ ଦେଖିଲେ ଯେ

ବଡ଼ ପିଲାମାନେ ଗାଧୋଇବା ଖୁସିରେ ଚିତ୍କାର କରି ପୋଷାକ କାଢୁଛନ୍ତି । ଜଣଙ୍କ ପରେ ଜଣେ ଲଙ୍ଗଳା ହୋଇ ପଡିଆକୁ ଦୌଡିଲେ । ତୋତ୍ତୋ-ଗ୍ୱନ୍ ଓ ସାଙ୍ଗମାନେ ବି ପୋଷାକ କାଢି ତାଙ୍କ ପଛେ ପଛେ ଦୌଡିଲେ । ଗରମରେ ଖାଲି ଦେହ ଭଲ ଲାଗୁଥାଏ । ସେମାନେ ପାହାଚ ଚଢ଼ି ପ୍ରାର୍ଥନା ଘରେ ପହଞ୍ଚିଲା ବେଳକୁ ଅନ୍ୟମାନେ ବ୍ୟାୟାମ ଆରମ୍ଭ କରି ସାରିଥା'ନ୍ତି । ତୋତ୍ତୋ-ଗ୍ୱନ୍ ଓ ସାଙ୍ଗମାନେ ଖାଲି ପାଦରେ ପାହାଚ଼ ତଳକୁ ଦୌଡିଲେ ।

ପହଁରା ଶିକ୍ଷକ ଥିଲେ ମିୟୋ-ଗ୍ୱନ୍‌ର ବଡ ଭାଇ । ପ୍ରଧାନ ଶିକ୍ଷକଙ୍କ ଏହି ପୁଅ ଜଣକ ଜଣେ ବ୍ୟାୟାମ ବିଶାରଦ ଥିଲେ । ସେ ତୋମୋଏରେ ନିୟମିତ ଶିକ୍ଷକ ନଥିଲେ । ସେ ବିଶ୍ୱବିଦ୍ୟାଳୟର ପହଁରା ଦଳରେ ଜଣେ ସଭ୍ୟ ଥିଲେ । ତାଙ୍କ ନାଁଟି ସ୍କୁଲ ନାଁ ସହ ଏକା ଥିଲା - ତୋମୋଏ । ସେ ପହଁରା ପୋଷାକ ପିନ୍ଧିଥା'ନ୍ତି ।

ବ୍ୟାୟାମ ପରେ ଉପରେ ଥଣ୍ଡା ପାଣି ପଡିବା କ୍ଷଣି ସେମାନେ ଖୁସିରେ ପାଟି କରି ଉଠିଲେ ଓ ପୋଖରୀକୁ ଡେଇଁଲେ । କେତେ ଜଣ ପାଣି ଭିତରେ ଠିଆ ହେବା ଦେଖିବା ପରେ ଯାଇ ତୋତ୍ତୋ-ଗ୍ୱନ୍ ପାଣିକୁ ଗଲା । ଏହା ଗାଧୁଆ ପାଣି ପରି ଉଷୁମ ନଥିଲା । ତଥାପି ଏତେ ବଡ ପୋଖରୀରେ ହାତ ପାହାନ୍ତାରେ ପାଣି ଛଡା ଆଉ କିଛି ବି ନଥିଲା ।

ମୋଟା ପୁଅ, ଝିଅ ସବୁ କିସମର ଛୁଆ ହସୁଥା'ନ୍ତି, ପାଟି କରୁଥା'ନ୍ତି । ପୂରା ଲଙ୍ଗଳା ହୋଇ ପାଣିରେ ଚ଼ବର ଚ଼ବର କରୁଥା'ନ୍ତି । ତୋତ୍ତୋ-ଗ୍ୱନ୍ ଭାବିଲା, କି ମଜା ! କେତେ ବଢିଆ ଲାଗୁଛି ସତେ ! ତାକୁ ଏତିକି ଖାଲି ଦୁଃଖ ଲାଗୁଥିଲା ଯେ ରକି ତା' ପାଖରେ ନାହିଁ ! ସେ ନିଶ୍ଚିତ ଥିଲା ଯେ ବିନା ପହଁରା ପୋଷାକରେ ଚ଼ଳିବ ଜାଣିଥିଲେ ରକି ବି ନିଶ୍ଚୟ ପୋଖରୀକୁ ଡେଇଁଥାନ୍ତା ।

କିଏ ହୁଏତ ଭାବୁଥିବେ ଯେ ପ୍ରଧାନ ଶିକ୍ଷକ ପିଲାଙ୍କୁ ଲଙ୍ଗଳା ହୋଇ ପହଁରିବାକୁ କାହିଁକି ଛାଡିଦେଲେ । ଏ ବିଷୟରେ କୌଣସି ନୀତି ନିୟମ ନଥିଲା । କିଏ ଯଦି ପହଁରା ପୋଷାକ ଆଣି ପିନ୍ଧିବାକୁ ଗ୍ୱହିଁଲା ସେ ପିନ୍ଧିବ । କିନ୍ତୁ ଆଜି ପରି ହଠାତ୍ ପହଁରିବା ପାଇଁ ଇଚ୍ଛା ହେଲେ ବିନା ପୋଷାକରେ ବି ପହଁରା ଯାଇପାରିବ । ଏହାଛଡା ସେ ଗ୍ୱହୁଁଥିଲେ ଯେ ପୁଅ, ଝିଅମାନେ ସେମାନଙ୍କ ଦେହର ଅଲଗା ଗଠନ ବିଷୟରେ ସଚେତନ ହେବା ଉଚିତ୍ । ଅଧିକ ଲୁଗ୍ୱଛପା କଲେ ପିଲାଙ୍କ ମନରେ ଏ ସବୁ ବିଷୟରେ ଅପ୍ରାକୃତିକ କୌତୂହଳ ଦେଖାଦେବ । ନିଜ ଦେହକୁ ଲୁଚ଼ାଇ ରଖିବା ପାଇଁ ଅତ୍ୟଧିକ ଚେଷ୍ଟା କରିବାଟା ଅସ୍ୱାଭାବିକ ବୋଲି ପ୍ରଧାନ ଶିକ୍ଷକ ଭାବୁଥିଲେ ।

ସେ ପିଲାଙ୍କୁ ଶିଖାଇବାକୁ ଗ୍ୱହୁଁଥିଲେ ଯେ ସବୁ ଦେହ ସୁନ୍ଦର । ପିଲାଙ୍କ ଭିତରେ ୟାସୁଆକି-ଗ୍ୱନ୍ ଥିଲା । କେତେ ଜଣଙ୍କୁ ପୋଲିଓ ହୋଇ କାହାର ଦେହ ଦୁର୍ବଳିଆ ଓ ପତଳା ଥିଲା । ଆଉ କାହାର କିଛି ଶାରୀରିକ ଅକ୍ଷମତା ଥିଲା; କିନ୍ତୁ ସେମାନେ ଖାଲି ଦେହରେ ଥିବାରୁ ଓ ସମସ୍ତଙ୍କ ସହ ମିଶି ଖେଳୁଥିବାରୁ ତାଙ୍କର ଲାଜ ଛାଡିଯାଉଥିଲା । ଅନ୍ୟମାନଙ୍କ ଆଗରେ ସେମାନେ ନିଜକୁ ନ୍ୟୁନ ମନେ କରୁନଥିଲେ । ପିଲା ପ୍ରଥମେ ସଂକୋଚ ଦେଖାଉଥିଲେ, କିନ୍ତୁ ଖେଳର ମଜାରେ ଧୀରେ ଧୀରେ

ତାଙ୍କର ଲାଜ ପୂରା କଟିଗଲା ।

କେତେ ବାପା, ମା' ଏହି ଚିନ୍ତାଧାରାକୁ ଗ୍ରହଣ କରି ପାରୁନଥିଲେ। ନିଜ ଛୁଆଙ୍କୁ ପହଁରା ପୋଷାକ ଦେଇ ସବୁବେଳେ ପିନ୍ଧିବାକୁ ତାଗିଦ୍ କରି ଦେଉଥିଲେ । ସେମାନେ ଜାଣି ପାରୁ ନଥିଲେ ଯେ ଏହି ପୋଷାକ ପ୍ରାୟ କେବେ ବ୍ୟବହାର ହେଉ ନଥିଲା । ତୋତ୍ତୋ-ଗ୍ୱାନ୍ ଭଳି ପିଲା ପ୍ରଥମରୁ ହିଁ ଠିକ୍ କଲା ଯେ ଖାଲି ଦେହରେ ପହଁରିବାଟା ହିଁ ସବୁଠୁ ବଢ଼ିଆ । ଆଉ କେହି କେହି ପୋଷାକ ଆଣିବାକୁ ଭୁଲିଗଲେ କହି ଲଙ୍ଗଳା ହୋଇ ପହଁରୁଥିଲେ। ଏମାନେ ସମସ୍ତେ ବୁଝି ସାରିଥିଲେ ଯେ ଖାଲି ଦେହରେ ପହଁରିବାଟା ସବୁଠୁ ମଉଜିଆ । ତେବେ ଘରକୁ ଫେରିଲା ବେଳକୁ ନିଜ ପହଁରା ପୋଷାକଗୁଡ଼ିକୁ ଖାଲି ଓଦା କରି ଦେଇ ନେବାକୁ ହେଉଥିଲା । ଖାଲି ଦେହରେ ଡେଇଁବା ଫଳରେ ତୋମୋଏର ଛୁଆଙ୍କ ସାରା ଦେହ ରଙ୍ଗ ବାଦାମୀ ହୋଇ ଯାଉଥିଲା । ପହଁରା ପୋଷାକ ପିନ୍ଧା ଜାଗାରେ ଯେପରି ଧଳା ଚିହ୍ନ ରହିବା କଥା ତାହା କାହାରି ଦେହରେ ବି ନଥିଲା ।

## ରିପୋର୍ଟ କାର୍ଡ୍

ତୋତ୍ତୋ-ଗ୍ୱାନ୍ ସେଦିନ ଷ୍ଟେସନ୍‌ରୁ ସିଧା ଘରକୁ ଦୌଡ଼ିଲା । ବାଁ ଡାହାଣ କୁଆଡେ ବି ସେ ଅନାଉ ନଥାଏ । ତା' ପିଠିରେ ବହି ମୁଣିଟି ଧପ୍ ଧପ୍ ହୋଇ ବାଡେଇ ହେଉଥାଏ । ତାକୁ ଦେଖିଲେ ଯିଏ ଭାବିବ ନିଶ୍ଚୟ କିଛି ଗୁରୁତର ଘଟଣା ଘଟିଛି । ପ୍ରକୃତରେ ସ୍କୁଲ ଫାଟକ ଟପିବା ପରଠୁ ସେ ଏଭଳି ଦୌଡୁଥିଲା ।

ଘରେ ପହଞ୍ଚିଲା କ୍ଷଣି ସେ ଦାଣ୍ଡ କବାଟ ଖୋଲି ପାଟି କରି ଜଣେଇ ଦେଲା, "ମୁଁ ଆସିଗଲି" । ଆଉ ରକି ପାଖକୁ ଦୌଡିଗଲା । ସେ ପଛ ବାରଣ୍ଡା ଉପରେ ଗୁରିକାତ ମେଲାଇ ଶୋଇଥାଏ । ତୋତ୍ତୋ-ଗ୍ୱାନ୍ କିଛି କହିଲାନି। ରକି ସାମନାରେ ବସିଯାଇ ସେ ବ୍ୟାଗ୍ ଓହ୍ଲାଇ ଦେଲା । ବ୍ୟାଗ୍‌ରୁ ଗୋଟିଏ ରିପୋର୍ଟ କାର୍ଡ୍ ବାହାର କଲା - ଏହା ଥିଲା ତା'ର ପ୍ରଥମ ରିପୋର୍ଟ କାର୍ଡ । ସେଇଟାକୁ ସେ ରକି ଆଗରେ ଖୋଲି ଧରି ମାର୍କଗୁଡ଼ିକ ଦେଖାଇଲା ।

"ଦେଖ", ସେ ଗର୍ବର ସହ କହିଲା । ସେଥିରେ 'କ', 'ଖ' ଓ ଅନ୍ୟ ବର୍ଣ୍ଣ ସବୁଥିଲା । ଅବଶ୍ୟ ତୋତ୍ତୋ-ଗ୍ୱାନ୍ ଏ ଯାଏଁ ଜାଣି ନ ଥିଲା 'କ' ଠାରୁ 'ଖ' ଭଲ ବା ଖରାପ । ତେଣୁ ରକି ଏହା ବୁଝିବା ଆହୁରି କଷ୍ଟକର କଥା। କିନ୍ତୁ ତା'ର ବିଲ୍‌କୁଲ୍ ପ୍ରଥମ ରିପୋର୍ଟ କାର୍ଡ ପ୍ରଥମେ ସେ ରକିକୁ ହିଁ ଦେଖାଇବାକୁ ଗୁହିଁଲା । ସେ

ନିଶ୍ଚିତ ଥିଲା ଯେ ରକି ଖୁବ୍ ଖୁସି ହେବ ।

କାଗଜଟିକୁ ମୁହଁ ସାମନାରେ ଦେଖି ରକି ସେଇଟିକୁ ଶୁଙ୍ଘିଲା ଓ ତୋତୋ-ଚ୍ରନ୍‌କୁ ଚ୍ହହିଁଲା । "ତୁ ମତେ ପ୍ରଶଂସା କରୁଛୁ ନୁହେଁ ?", ତୋତୋ-ଚ୍ରନ୍ କହିଲା, "କିନ୍ତୁ ଏଥିରେ ବହୁତ କଷ୍ଟ ଶବ୍ଦ ଅଛି, ତେଣୁ ତୁ ସବୁ ବୋଧେ ପଢ଼ିପାରିବୁନି ।"

ରକି ବେକ ଭାଙ୍ଗି ଚ୍ହହିଁଲା ଯେପରିକି ସେ ଆଉ ଥରେ କାର୍ଡ୍‌ଟିକୁ ଭଲ କରି ଦେଖୁଛି । ତା'ପରେ ସେ ତୋତୋ-ଚ୍ରନ୍ ହାତକୁ ଚ୍ରଟିଲା । "ବଢ଼ିଆ" ଖୁସିରେ ଉଠୁ ଉଠୁ ସେ କହିଲା । "ଏଥର ମୁଁ ଯାଉଛି ମା'କୁ ଦେଖାଇବି ।"

ତୋତୋ-ଚ୍ରନ୍ ଯିବା ପରେ ରକି ଉଠି ଠିଆ ହେଲା ଓ ଆଉ ଟିକିଏ ଥଣ୍ଡା ଜାଗାକୁ ଚ୍ରଲିଗଲା । ତା'ପରେ ଧୀରେ ଧୀରେ ସେ ଶୋଇପଡ଼ିଲା । ଖାଲି ତୋତୋ-ଚ୍ରନ୍ ନୁହେଁ ଯିଏ ଦେଖିଥିଲେ ବି କହିଥା'ନ୍ତା ଯେ ରକି ଯେଉଁପ୍ରକାରେ ଆଖି ବନ୍ଦ କଲା ସେ ରିପୋର୍ଟ କାର୍ଡ୍‌ଟି ବିଷୟରେ ଭାବୁଥିଲା ।

## *ଖରାଛୁଟି ଆରମ୍ଭ*

"ଆସନ୍ତା କାଲି ଆମେ କ୍ୟାମ୍ପ କରିବୁ, ଦୟାକରି ପାଇଜାମା ଓ କମ୍ବଳ ନେଇ ସନ୍ଧ୍ୟାବେଳେ ସ୍କୁଲ୍‌କୁ ଆସ ।" ଏଭଳି ଚିଠା ଖଣ୍ଡେ ତୋତୋ-ଚ୍ରନ୍ ଘରକୁ ଆଣିଥିଲା । ମା'ଙ୍କୁ ଦେଖାଇଲା । ତା'ପର ଦିନ ଖରାଛୁଟି ଆରମ୍ଭ ହେବାର ଥିଲା ।

"କ୍ୟାମ୍ପ ମାନେ କ'ଣ ?", ତୋତୋ-ଚ୍ରନ୍ ପଚ୍ରରିଲା । ମା' ବି ସେ କଥା ଭାବୁଥିଲେ । ସେ କହିଲେ, "ତୁମେମାନେ ବାହାରେ କେଉଁଠି ତମ୍ବୁ ପକାଇ ଶୋଇବ । ତମ୍ବୁରେ ଶୋଇ ତୁମେମାନେ ଜହ୍ନ ଓ ତାରା ଦେଖି ପାରିବ । ହେଲେ ମୁଁ ଭାବୁଛି ପାଖରେ କେଉଁଠି ସେମାନେ କ୍ୟାମ୍ପ ପକାଇବେ । କେଉଁଠି ହେବ କିଛି ଲେଖା ହୋଇନି । ଯିବା ଆସିବା ଖର୍ଚ୍ଚ ବି ମାଗି ନାହାନ୍ତି ।"

ସେଦିନ ରାତିରେ ତୋତୋ-ଚାନ୍ ଅନେକ ବେଳ ଯାଏଁ ଶୋଇ ପାରିଲାନି । କ୍ୟାମ୍ପକୁ ଯିବା କଥା ଭାବି ତାକୁ ବଡ ଡର ଲାଗିଲା । ଏହି ଦୁଃସାହସିକ ଅଭିଯାନ କଥା ଭାବି ତା'ର ଛାତି ଧଡ ଧଡ ହେଲା ।

ତା' ପରଦିନ ସକାଳେ ସେ ଉଠୁ ଉଠୁ ତା'ର ଜିନିଷ ସଜାଡିବା ଆରମ୍ଭ କରିଦେଲା । କିନ୍ତୁ ସେଦିନ ସନ୍ଧ୍ୟାରେ ବ୍ୟାଗ୍ ଉପରେ କମ୍ବଳ ଥୋଇ ସେ ଯେତେବେଳେ ଘରୁ ବାହାରିଲା ତାକୁ ଅତି ଛୋଟ ପିଲାଟିଏ ଭଳି ଲାଗିଲା ଓ ଡର ବି ଲାଗିଲା ।

ପିଲାଏ ସ୍କୁଲରେ ଏକାଠି ହେବା ପରେ ପ୍ରଧାନ ଶିକ୍ଷକ କହିଲେ, "ଆଚ୍ଛା ଏଥର ସମସ୍ତେ ପ୍ରାର୍ଥନା ଘରକୁ ଯିବା ।" ସେଠାରେ ପହଞ୍ଚିବା ପରେ ସେ ଛୋଟ

ଷ୍ଟେଜଟିର ଉପରକୁ ଉଠିଲେ । ହାତରେ ଗୋଟିଏ ମୋଟା ଓ ଟାଣୁଆ ଜିନିଷ ଧରିଥା'ନ୍ତି । ସେଇଟି ଥିଲା, ଗୋଟିଏ ଶାଗୁଆ ତମ୍ବୁ ।

"ମୁଁ ଏବେ ତୁମକୁ ତମ୍ବୁ କିପରି ଟଣାଯାଏ ଦେଖାଉଛି", କହି ସେ ସେଇଟିକୁ ଖୋଲିବାକୁ ଲାଗିଲେ । "ଭଲ କରି ଦେଖ" । ଏକା ଏକା ସେଇଟାକୁ ଖୋଲି, ଏପଟେ ତମ୍ବୁକୁ ଟାଣି, ସେପଟେ ଦଉଡିକୁ ଭିଡି, ସେ ତମ୍ବୁଟିକୁ ଠିଆ କରିଦେଲେ । ପୂରା କାମଟି ଖୁବ୍ କମ୍ ସମୟରେ ହୋଇଗଲା । "ଆସ", ଏଥର ସେ କହିଲେ, "ପ୍ରାର୍ଥନା ଘର ସାରା ତମ୍ବୁ ବିଛେଇ ଦିଅ ଓ କ୍ୟାମ୍ପ ଆରମ୍ଭ କର ।" ଅନ୍ୟମାନଙ୍କ ପରି ମା' ବି ଭାବିଥିଲେ ଯେ ସେମାନେ ବାହାରେ କେଉଁଠି ତମ୍ବୁ ପକାଇବେ, କିନ୍ତୁ ପ୍ରଧାନ ଶିକ୍ଷକ ଅନ୍ୟପ୍ରକାରେ ଭାବିଥିଲେ । ବର୍ଷା ହେଲେ ବା ଥଣ୍ଡା ପଡିଲେ ବି ପ୍ରାର୍ଥନା ଘର ଭିତରେ ପିଲାଙ୍କର କିଛି ଅସୁବିଧା ହେବନି ।

ଖୁସିରେ "ଆମେ କ୍ୟାମ୍ପ କରୁଛୁ, ଆମେ କ୍ୟାମ୍ପ କରୁଛୁ" ପାଟି କରି ପିଲାମାନେ ଦଳ ଦଳ ହୋଇ ଶିକ୍ଷକମାନଙ୍କ ସହାୟତାରେ ତମ୍ବୁ ବିଛାଇ ଦେଲେ । ଗୋଟିଏ ତମ୍ବୁରେ ତିନି ଜଣ ଶୋଇ ପାରିବେ । ତୋତୋ-ଗ୍ୱନ୍ ଚଟାପଟ୍ ତା' ପାଇଜାମା ପିନ୍ଧିନେଲା । ପିଲାମାନେ ଏ ତମ୍ବୁରୁ ବାହାରି ଆସି ସେ ତମ୍ବୁରେ ପଶି ଯାଉଥା'ନ୍ତି । ପୁଣି ସେ ତମ୍ବୁରୁ ଆର ତମ୍ବୁ - ଏପରି ବୁଲାବୁଲି ଚଳାଇଥା'ନ୍ତି ।

ସମସ୍ତେ ପାଇଜାମା ପିନ୍ଧିଥାନ୍ତି । ପ୍ରଧାନ ଶିକ୍ଷକ ମଝିରେ ବସିଗଲେ ଯେପରି ସମସ୍ତେ ତାଙ୍କୁ ଦେଖିପାରିବେ, ଆଉ ତାଙ୍କର ବିଦେଶ ବୁଲା କାହାଣୀ ଆରମ୍ଭ କଲେ ।

କିଛି ଛୁଆ ତମ୍ବୁ ଭିତରେ ଥାଇ ଖାଲି ମୁଣ୍ଡଟିମାନ ବାହାର କରିଥା'ନ୍ତି । କେତେ ଜଣ ସିଧା ବସି ଶୁଣୁଥା'ନ୍ତି । ଆଉ କେତେ ଜଣ ବଡ ଛୁଆଙ୍କ ଉପରେ ମୁଣ୍ଡ ଥୋଇଥା'ନ୍ତି । ସମସ୍ତେ ତାଙ୍କ କାହାଣୀ ଶୁଣୁଥା'ନ୍ତି । ଏଭଳି କେତେ ଦେଶର କାହାଣୀ ଯାହା ସେମାନେ ଦେଖି ନଥିଲେ କି ଯାହାର ନାଁ ବି ଶୁଣି ନଥିଲେ । ପ୍ରଧାନ ଶିକ୍ଷକଙ୍କ ଗପଗୁଡିକ ବହୁତ ଆମୋଦଦାୟକ ଥିଲା । ଆଉ କେତେବେଳେ ସେମାନେ ଅନୁଭବ କରୁଥିଲେ ସତେ ଯେପରି ସମୁଦ୍ର ସେପାରିରେ ଛୁଆ ସବୁ ତାଙ୍କରି ସାଙ୍ଗ ।

ପ୍ରାର୍ଥନା ଘରେ ତମ୍ବୁ ବିଛେଇ ଶୋଇବା ଭଳି ସାଧାରଣ ଘଟଣାଟି ମଧ୍ୟ ପିଲାଙ୍କ ପାଇଁ ବହୁତ ଖୁସିକର ଓ ଉପଯୋଗୀ ଅନୁଭୂତି ହେଲା । ଏହା ସେମାନେ କେବେ ବି ଭୁଲିବେନି । ପ୍ରଧାନ ଶିକ୍ଷକ ଠିକ୍ ଜାଣିଥିଲେ ପିଲାଙ୍କୁ କିପରି ଖୁସି କରାଯାଇପାରେ ।

ପ୍ରଧାନ ଶିକ୍ଷକ ଯେତେବେଳେ କହିସାରିଲେ ଓ ପ୍ରାର୍ଥନା ଘରର ଆଲୁଅ ଲିଭେଇ ଦିଆଗଲା, ସବୁ ଛୁଆ ନିଜ ନିଜ ତମ୍ବୁ ଭିତରକୁ ଗ୍ଳଲିଗଲେ । କେତେବେଳେ ହସ ଶୁଭୁଥାଏ, କେଉଁ ତମ୍ବୁରୁ ଫୁସ୍‌ଫୁସ୍ କଥା ଶୁଣାଯାଉଥାଏ । ଆଉ ଦୂର ତମ୍ବୁଟିରୁ ଧସ୍ତାଧସ୍ତି ଶୁଣାଗଲା । କ୍ରମେ କ୍ରମେ ସବୁଆଡେ ଚୁପ୍‌ଚାପ୍ ହୋଇଗଲା ।

ବିନା ଜହ୍ନ ବା ତାରା ଦେଖାରେ ବି ପିଲାଏ କ୍ୟାମ୍ପଟିକୁ ମନଭରି ଉପଭୋଗ କଲେ । ସେହି ଛୋଟିଆ ପ୍ରାର୍ଥନାଘରଟି ତାଙ୍କୁ ଗୋଟିଏ ସତ କ୍ୟାମ୍ପଜାଗା ଭଳି ଲାଗିଲା । ସେହି ରାତିର ସ୍ମୃତି ସବୁ ଦିନ ପାଇଁ ତାଙ୍କ ମନରେ ଆଙ୍କି ହୋଇ ରହିଗଲା ।

# ଏକ ଦୁଃସାହସିକ ଅନୁଭୂତି

ପ୍ରାର୍ଥନା ଘରେ କ୍ୟାମ୍ପ କରିବାର ଦୁଇ ଦିନ ପରେ, ତୋତ୍ତୋ-ଚ୍ୱାନ୍ ପାଇଁ ଏକ ଚମତ୍କାର ଦୁଃସାହସିକ ଅନୁଭୂତି ଆସିଲା । ସେଇଦିନ ସେ ୟାସୁଆକି-ଚ୍ୱାନ୍ ସହ ସମୟ କଟାଇବାକୁ ଠିକ୍ କରିଥିଲା । ଏହା ପୂରା ଗୋପନୀୟ ଥିଲା କାରଣ ନା ତା'ର ବାପା, ମା' ନା ୟାସୁଆକି-ଚ୍ୱାନର ବାପା, ମା' ଏକଥା ଜାଣିଥିଲେ । ସେ ୟାସୁଆକି-ଚ୍ୱାନ୍‌କୁ ତା' ସ୍କୁଲ୍ ଗଛ ପାଖକୁ ଡାକିଥିଲା ।

ତୋମୋଏର ପ୍ରତି ପିଲାର ଗୋଟିଏ ଲେଖାଁ ଗଛ ଥିଲା ଯେଉଁଥିରେ ସେମାନେ ଚଢୁଥିଲେ । ପଡିଆର ଶେଷ ଆଡକୁ କୁହୋନବୁତ୍ସୁକୁ ଯାଇଥିବା ଗଳି ଜଡରେ ବାଡକୁ ଲାଗି ତୋତ୍ତୋ-ଚ୍ୱାନ୍‌ର ଗଛଟି ଥିଲା । ଏହା ଏକ ବିରାଟ ଗଛ, ଏହାର ଗଣ୍ଡିଟି ଚିକ୍କଣ ଥିଲା ତେଣୁ ଚଢିବାକୁ ଟିକିଏ କଷ୍ଟ ହୁଏ । କିନ୍ତୁ ଜଣେ ଯଦି ସତର୍କ ହୋଇ ଚଢ଼ିବ ତେବେ ସେ ଭୂଇଁରୁ ପ୍ରାୟ ଛଅ ଫୁଟ ଉଚ୍ଚରେ ଏକ ଦୋକେନାରେ ପହଞ୍ଚିବ । ଏହା ବସିବା ପାଇଁ ଏକ ବଢ଼ିଆ ଜାଗା ଥିଲା - ଠିକ୍ ଗୋଟିଏ ଝୁଲା ଭଳି । ଖେଳଛୁଟି ବେଳେ ବା ସ୍କୁଲ୍ ପରେ ତୋତ୍ତୋ-ଚ୍ୱାନ୍ ଯାଇ ସେହି ଡାଳ ଉପରେ ବସୁଥିଲା । ସେଠାରୁ ଦୂରକୁ ବା ଆକାଶକୁ ଚାହୁଁଥିଲା, ନହେଲେ ତଳେ ଯାଉଥିବା ଲୋକମାନଙ୍କୁ ଦେଖୁଥିଲା ।

ପିଲାମାନେ ଏହି ଗଛଗୁଡିକୁ ନିଜ ନିଜର ବ୍ୟକ୍ତିଗତ ସମ୍ପତ୍ତି ବୋଲି ବିଚାର କରୁଥିଲେ । ତେଣୁ ତୁମେ ଯଦି ଆଉ ଜଣଙ୍କର ଗଛରେ ଚଢ଼ିବାକୁ ଚାହିଁବ, ତେବେ ତୁମକୁ ଭଦ୍ର ଭାବରେ ଅନୁମତି ମାଗିବାକୁ ପଡିବ । ତୁମେ କହିବ ଯେ, "ଶୁଣିବେ କି ? ମୁଁ ଉପରକୁ ଆସି ପାରିବି କି ?"

ପୋଲିଓରେ ୟାସୁଆକି-ଚ୍ୱାନ୍‌ର ଗୋଡ ଦୁର୍ବଳ ହୋଇଯାଇଥିଲା । ସେ କେବେ ଗଛ ଚଢ଼ି ନଥିଲା ଓ କୌଣସି ଗଛକୁ ନିଜର ବୋଲି ଦାବି କରି ପାରୁନଥିଲା । ସେଇଥିପାଇଁ ତୋତ୍ତୋ-ଚ୍ୱାନ୍ ତାକୁ ନିଜ ଗଛକୁ ନିମନ୍ତ୍ରଣ କରିଥିଲା । ସେମାନେ କଥାଟିକୁ ଲୁଚାଇ ରଖିଥିଲେ, କାରଣ ସେମାନେ ଭାବିଥିଲେ ଯେ ଅନ୍ୟମାନେ ଜାଣିଲେ ଛାନିଆ ହୋଇଯିବେ ।

ଘରୁ ଆସିବା ବେଳେ ସେ ମା'ଙ୍କୁ କହିଥିଲା ଯେ ସେ ଡେନେନ୍ ଚୋଫୁରେ ୟାସୁଆକି-ଚ୍ୱାନ୍‌ର ଘରକୁ ଯାଉଛି । ସେ ମିଛ କହୁଥିବାରୁ ମା'ଙ୍କ ଆଖିକୁ ନଚାହିଁପାରି ତା' ଜୋତା ଫିତାକୁ ଚାହିଁ ସେ ଏକଥା କହିଥିଲା । ରକି କିନ୍ତୁ ତା' ପଛେ ପଛେ ଷ୍ଟେସନ ଯାଏଁ ଆସିଥିଲା । ତାକୁ ଛାଡିଲା ବେଳେ ସେ ରକିକୁ ସତକଥାଟି କହି ପକାଇଲା । କହିଲା, "ମୁଁ ଯାଉଛି ୟାସୁଆକି-ଚ୍ୱାନ୍‌କୁ ମୋ ଗଛରେ ଚଢ଼ାଇବା ପାଇଁ ।"

ତୋତ୍ତୋ-ଚ୍ୱାନ୍ ସ୍କୁଲ୍‌ରେ ପହଞ୍ଚିଲା ବେଳକୁ ଟ୍ରେନ୍‌ପାସ୍‌ଟି ତା' ବେକରେ ଝୁଲୁଥାଏ । ସେ ଦେଖିଲା ୟାସୁଆକି-ଚ୍ୱାନ୍ ଫୁଲ ବଗିଚା ପାଖରେ ଅପେକ୍ଷା କରିଛି । ଖରା ଛୁଟି ଯୋଗୁଁ ସ୍କୁଲ୍ ହତା ଶୁନ୍‌ଶାନ୍, କେହି ନାହାନ୍ତି । ସେ ତୋତ୍ତୋ-ଚ୍ୱାନ୍‌ଠୁଁ ମୋଟେ ବର୍ଷେ

ବଡ; କିନ୍ତୁ କଥାବାର୍ତ୍ତାରେ ସେ ବେଶ୍ ଅଧିକ ବୟସର ପିଲା ଭଳି ଜଣା ପଡୁଥାଏ।

ତୋତୋ-ଗ୍ୱନ୍‌କୁ ଦେଖି ସେ ତା'ର ସରୁ ଗୋଡକୁ ଘୋଷାରି କରି ମାଡି ଆସିଲା। ପଡି ନଯିବା ପାଇଁ ସେ ହାତ ଦୁଇଟିକୁ ଆଗକୁ ମେଲାଇ ଧରିଥାଏ। ସେମାନେ କିଛି ଗୋପନୀୟ ଭାବେ କରିବାକୁ ଯାଉଛନ୍ତି ଜାଣି ତୋତୋ-ଗ୍ୱନ୍ ଉଲ୍ଲସି ଉଠୁଥାଏ । ସେ ଖିଲି ଖିଲି ହୋଇ ହସୁଥାଏ । ୟାସୁଆକି-ଗ୍ୱନ୍ ବି ସେପରି ହସୁଥାଏ।

ତୋତୋ-ଗ୍ୱନ୍ ୟାସୁଆକି-ଗ୍ୱନ୍‌କୁ ତା' ଗଛ ପାଖକୁ ନେଇଗଲା । ଗଲା ରାତିରେ କରିଥିବା ଯୋଜନା ଅନୁସାରେ ମାଳୀ କୁଡିଆରୁ ଗୋଟିଏ ନିଶୁଣି ଆଣିଲା । ଗଛର ଗଣ୍ଡିରେ ନିଶୁଣିଟି ଡେରି ଦେଲାରୁ ତାହା ଦୋକେନା ଯାଏଁ ପହଞ୍ଚିଗଲା । ସେ ସାଙ୍ଗେ ସାଙ୍ଗେ ଉପରକୁ ଚଢିଯାଇ ନିଶୁଣିର ଅଗକୁ ଜାବୁଡି ଧରିଲା ଓ ୟାସୁଆକି-ଗ୍ୱନ୍‌କୁ କହିଲା, ''ଠିକ୍ ଅଛି । ଏଥର ଚଢି ଆସିବାକୁ ଚେଷ୍ଟାକର ।''

କିନ୍ତୁ ୟାସୁଆକି-ଗ୍ୱନ୍‌ର ହାତ ଗୋଡ ବେଶ୍ ଦୁର୍ବଳ ଥିଲା । ମନେ ହେଲା ବିନା ସାହାଯ୍ୟରେ ସେ ନିଶୁଣିର ପ୍ରଥମ ବାଡିରେ ବି ଚଢି ପାରିବନି, ତେଣୁ ତୋତୋ-ଗ୍ୱନ୍ ଓହ୍ଲାଇ ଆସି ୟାସୁଆକି-ଗ୍ୱନ୍‌କୁ ପଛରୁ ଉଠାଇବାକୁ ଚେଷ୍ଟାକଲା । କିନ୍ତୁ ତୋତୋ-ଗ୍ୱନ୍



ଏତେ ଛୋଟ ଓ ପତଳା ଥିଲା ଯେ ସେ କେବଳ ଯାସୁଆକି-ଗ୍ୱନ୍‌କୁ ଠେଲି ଧରିବାକୁ ସକ୍ଷମ ହେଲା । ଏହା ସହିତ ନିଶୁଣିକୁ ଧରି ରଖିବା ସମ୍ଭବ ହେଲାନି । ଯାସୁଆକି-ଗ୍ୱନ୍ ନିଶୁଣିର ତଳ ପାହାଚରୁ ଗୋଡ ଖସାଇ ମୁହଁ ତଳକୁ କରି ନିଶୁଣି କଡରେ ଠିଆ ହେଲା । ତୋଓ୍ୱୋ-ଗ୍ୱନ୍ ପ୍ରଥମ ଥର ପାଇଁ ବୁଝିପାରିଲା ଯେ, ସେ ଯାହା ଭାବିଥିଲା ଏହା ତାଠୁଁ ଯଥେଷ୍ଟ ବେଶୀ କଷ୍ଟକର । ସେ ଏବେ କ'ଣ କରିବ ?

ସେ ଯେମିତି ହେଲେ ବି ଯାସୁଆକି-ଗ୍ୱନ୍‌କୁ ତା' ଗଛରେ ଚଢ଼ାଇବାକୁ ଗ୍ୱହୁଁଥିଲା, ଆଉ ଯାସୁଆକି-ଗ୍ୱନ୍‌ର ବି ଏହା ଗୋଟିଏ ବଡ ଇଚ୍ଛା ଥିଲା । ସେ ବୁଲିଆସି ତା ମୁହଁକୁ ଗ୍ୱହିଁଲା । ତା' ମୁହଁଟି ଶୁଖି ଯାଇଥାଏ । ତୋଓ୍ୱୋ-ଗ୍ୱନ୍ କୌତୁକିଆ ମୁହଁ କରି ତାକୁ ହସାଇବାକୁ ଚେଷ୍ଟା କଲା ।

"ରହ ମୁଁ ଗୋଟିଏ କଥା ଭାବିଛି ।" ସେ ପୁଣି ମାଳୀ ବସାକୁ ଦୌଡିଯାଇ ଗୋଟିଏ ପରେ ଗୋଟିଏ ଜିନିଷ ଟାଣି ଦେଖିଲା କିଏ ତା' କାମରେ ସାହାଯ୍ୟ କରିବ। ଶେଷରେ ସେ ଗୋଟିଏ ପାହାଚବାଲା ନିଶୁଣି ପାଇଲା ଯାହାକୁ ଧରି ରଖିବାକୁ ପଡିବନି।

ସେ ସେଇଟିକୁ ଟାଣିବାରେ ଲାଗିଲା, ନିଜ ବଳ ଦେଖି ସେ ନିଜେ ବି ଆଶ୍ଚର୍ଯ୍ୟ ହୋଇଗଲା । ସେ ଆହୁରି ଖୁସି ହୋଇଗଲା, ଯେତେବେଳେ ଏହା ଉପର ଡାଳଟିକୁ ଛୁଇଁଲା ।

"ଏଥର ଆଉ ଡରେନା", ଏଥର ସେ ଜଣେ ବଡଭଉଣୀ ଢଙ୍ଗରେ କହିଲା, "ଏଇଟା ଟଳମଳ ହେବନି ।"

ଯାସୁଆକି-ଗ୍ୱନ୍ ଡରି ଡରି ନିଶୁଣିଟିକୁ ଗ୍ୱହିଁଲା, ତା'ପରେ ତୋଓ୍ୱୋ-ଗ୍ୱନ୍ ଆଡକୁ ଗ୍ୱହିଁଲା । ତୋଓ୍ୱୋ-ଗ୍ୱନ୍ ଝାଳରେ ଗାଧୋଇ ପଡିଥାଏ । ଯାସୁଆକି-ଗ୍ୱନ୍‌ର ବି ବେଶ୍ ଝାଳ ବୋହୁଥାଏ । ସେ ଗଛ ଉପରକୁ ଗ୍ୱହିଁଲା, ତା'ପରେ ମନ ଟାଣ କରି ସେ ପ୍ରଥମ ପାହାଚରେ ପାଦ ଥୋଇଲା । ପାହାଚ ଶିଡିର ଉପରେ ପହଞ୍ଚିବା ପାଇଁ କେତେ ସମୟ ଲାଗିଲା ସେ ବିଷୟରେ କେହି ସଚେତନ ନଥିଲେ ।

ଖରା ବେଶ୍ ଟାଣ ହେଉଥାଏ । କିନ୍ତୁ ଯାସୁଆକି-ଗ୍ୱନ୍‌କୁ ନିଶୁଣି ଉପରେ ପହଞ୍ଚାଇବା ଛଡା ଆଉ କୌଣସି ଚିନ୍ତା ତାଙ୍କ ମୁଣ୍ଡରେ ନଥିଲା । ତୋଓ୍ୱୋ-ଗ୍ୱନ୍ ଠିକ୍ ଯାସୁଆକି-ଗ୍ୱନ୍‌ର ଗୋଡ ତଳକୁ ଠିଆ ହେଉଥାଏ। ତା'ର ଗୋଡ ଦୁଇଟିକୁ ଟେକି ଧରୁଥାଏ ଓ ମୁଣ୍ଡରେ ତା' ଦେହଟିକୁ ସମ୍ଭାଳୁଥାଏ । ଯାସୁଆକି-ଗ୍ୱନ୍ ତା'ର ପୂରା ଦମ୍ ଲଗାଇ ଚେଷ୍ଟା କରି ଶେଷରେ ଉପର ପାହାଚରେ ପହଞ୍ଚି ଗଲା।

"ହୁର୍‌ରେ !"

କିନ୍ତୁ ତା'ପରେ ହତାଶ। ତୋଓ୍ୱୋ-ଗ୍ୱନ୍ ଡେଇଁପଡି ଡାଳ ଉପରେ ଚଢ଼ିଗଲା। କିନ୍ତୁ ବିଚରା ଯାସୁଆକି-ଗ୍ୱନ୍ ? ଆଉ ଯେତେ ଚେଷ୍ଟାକଲେ ବି ସେ ଯାସୁଆକି-ଗ୍ୱନ୍‌କୁ ଡାଳ ଉପରକୁ ଆଣି ପାରିଲାନି। ନିଶୁଣିଟିକୁ ଜାବୁଡି ଧରି ଯାସୁଆକି-ଗ୍ୱନ୍ ତୋଓ୍ୱୋ-ଗ୍ୱନ୍‌କୁ ଗ୍ୱହିଁଲା। ତୋଓ୍ୱୋ-ଗ୍ୱନ୍ କାନ୍ଦ କାନ୍ଦ ହୋଇଗଲା। ସେ ଗ୍ୱହୁଁଥିଲା ଯେମିତି ହେଲେ ବି ଯାସୁଆକି-ଗ୍ୱନ୍‌କୁ ଗଛ ଉପରକୁ ଆଣିବ। ଆଉ ତା'ର ସବୁପ୍ରକାର ଜିନିଷ ଦେଖାଇବ।

ସେ କିନ୍ତୁ କାନ୍ଦିଲାନି । ସେ ଡରିଲା ଯେ ସେ ଯଦି କାନ୍ଦେ ଯାସୁଆକି-ଗ୍ୱନ୍

ବି ତାକୁ ଦେଖି କାନ୍ଦିବାରେ ଲାଗିବ । ତା' ବଦଳରେ ସେ ୟାସୁଆକି-ଗ୍ୱନ୍‌ର ହାତକୁ ଧରିନେଲା । ତା' ଆଙ୍ଗୁଠିଗୁଡ଼ିକ ପୋଲିଓ ଯୋଗୁଁ ଲାଖି ଯାଇଥା'ନ୍ତି । ତା'ର ହାତଟି ବେଶ୍ ବଡ ଥିଲା ଓ ଆଙ୍ଗୁଠି ଗୁଡିକ ଅଧିକ ଲମ୍ବା ଥିଲା । ସେ ତା' ହାତକୁ ଅନେକ ସମୟ ଯାଏଁ ଧରି ବସିଲା । ଶେଷରେ କହିଲା, "ତୁ ଶୋଇ ପଡ଼, ଆଉ ମୁଁ ତତେ ଉପରକୁ ଟାଣି ଆଣିବି ।"

ଯଦି କେହି ବଡ ଲୋକ ଦେଖିଥା'ନ୍ତେ ତୋତ୍ତୋ-ଗ୍ୱନ୍ ଗଛ ଉପରେ ବସିଛି ଆଉ ନିଶୁଣି ଉପରେ ପେଟେଇ ରହିଥିବା ୟାସୁଆକି-ଗ୍ୱନ୍‌ର ହାତକୁ ଧରି ଟାଣିଛି ସେ ଭୟରେ ଚିତ୍କାର କରିଥା'ନ୍ତେ । ଅବସ୍ଥାଟା ନିଶ୍ଚୟ ବିପଦଜନକ ଦେଖାଯାଉଥିଲା ।

କିନ୍ତୁ ୟାସୁଆକି-ଗ୍ୱନ୍‌ର ତୋତ୍ତୋ-ଗ୍ୱନ୍ ଉପରେ ପୂରା ଭରସା ଥିଲା । ଆଉ ତୋତ୍ତୋ-ଗ୍ୱନ୍ ବି ନିଜ ଜୀବନକୁ ବିପଦରେ ପକାଉଥିଲା । ତା'ର କୁନି ହାତ ଦୁଇଟିରେ ୟାସୁଆକି-ଗ୍ୱନ୍‌ର ହାତକୁ ଧରି ସେ ସାଧ୍ୟ ମତେ ଟାଣୁଥାଏ । ମଝିରେ ମଝିରେ ବଡ଼ ମେଘଖଣ୍ଡ ଦୟା ଦେଖାଇ ପ୍ରଚଣ୍ଡ ଖରାରୁ ତାଙ୍କୁ ରକ୍ଷା କରୁଥା'ନ୍ତି ।

ଶେଷରେ ଦୁହେଁ ଡାଳ ଉପରେ ମୁହାଁମୁହିଁ ହୋଇ ଠିଆ ହେଲେ । ତୋତ୍ତୋ-ଗ୍ୱନ୍ ତା'ର ଓଦା ବାଳକୁ ପଛକୁ ସାଉଁଳେଇ ଦେଇ ମୁଣ୍ଡ ନୁଆଇଁ ଭଦ୍ରାମୀ ସହ କହିଲା, "ମୋ ଗଛକୁ ମୁଁ ତତେ ସ୍ୱାଗତ କରୁଛି ।"

ୟାସୁଆକି-ଗ୍ୱନ୍ ଗଛ ଉପରେ ଭରା ଦେଇ ହସି ହସି ଲାଜରା ସ୍ୱରରେ କହିଲା "ମୁଁ ଆସିପାରେ କି ?" ୟାସୁଆକି-ଗ୍ୱନ୍ ଗଛ ଉପରୁ ଗ୍ୱରିଆଡର ଦୃଶ୍ୟ କେବେ ଦେଖିନଥିଲା । ଏବେ ସେ ଖୁସିରେ କହିଲା, "ଓହୋ, ତାହେଲେ ଏଇଆ ହେଉଛି ଗଛଚଢ଼ାର ମଜା ।" ସେମାନେ ଗଛ ଉପରେ ବହୁତ ସମୟ ଧରି ରହିଲେ ଓ ନାହିଁ ନଥିବା କଥା ଗପିଲେ ।

ୟାସୁଆକି-ଗ୍ୱନ୍ ବଡ଼ ଆଗ୍ରହର ସହ କହି ପକାଇଲା, "ଆମେରିକାରେ ରହୁଥିବା ମୋ ଭଉଣୀ କହେ ଯେ ତାଙ୍କର ଟେଲିଭିଜନ୍ ବୋଲି କଣ ଗୋଟେ ଜିନିଷ ଅଛି । ସେ କହୁଛି ଯେ ଯେତେବେଳେ ଏହା ଆମ ଜାପାନକୁ ଆସିଯିବ ଆମେ ଘରେ ବସି କୁସ୍ତି କାର୍ଯ୍ୟକ୍ରମ ଦେଖିପାରିବା । ସେଇଟା କୁଆଡେ ଗୋଟିଏ ବାକ୍ସ ପରି ।"

ଅବଶ୍ୟ ତୋତ୍ତୋ-ଗ୍ୱନ୍ ବୁଝି ପାରିଲାନାହିଁ ଘରେ ବସି ସବୁ କଥା ଦେଖି ପାରିବାଟା କାହିଁକି ଏତେବଡ଼ କଥା । କିନ୍ତୁ ବାହାରକୁ ଯାଇପାରୁନଥିବା ୟାସୁଆକି-ଗ୍ୱନ୍ ପାଇଁ ଏହା ଏକ ବିରାଟ ସ୍ୱପ୍ନ । ତୋତ୍ତୋ-ଗ୍ୱନ୍ କେବଳ ଏତିକି ଭାବୁଥାଏ ଯେ, ତାଗଡା ତାଗଡା ସୁମୋ ପହିଲମାନ୍‌ମାନେ କିପରି ଗୋଟିଏ ଛୋଟ ବାକ୍ସ ଭିତରେ ରହିପାରିବେ ? ତଥାପି କଥାଟା ତାକୁ ଆଗ୍ରହଜନକ ମନେହେଲା । ସେ ସମୟରେ କେହି ଟେଲିଭିଜନ୍ ବିଷୟରେ ଜାଣିନଥିଲେ । ୟାସୁଆକି-ଗ୍ୱନ୍ ହିଁ ପ୍ରଥମଥର ପାଇଁ ତାକୁ ଏ ବିଷୟରେ କହୁଥିଲା

ଗ୍ୱରିଆଡେ ଝିଙ୍କାରିଗୁଡିକ ଝିଁ ଝିଁ ଶବ୍ଦ କରୁଥିଲେ । ଛୁଆ ଦୁଇଟି ବହୁତ ଖୁସି ଥିଲେ ।,ଆଉ ୟାସୁଆକି-ଗ୍ୱନ୍ ପାଇଁ ଏହା ଥିଲା ପ୍ରଥମ ଓ ଶେଷ ଗଛଚଢ଼ା ଅନୁଭୂତି ।

# ସାହସ ପରୀକ୍ଷା

"କ'ଣ ଭୟଙ୍କର ଦିଶେ, ଦୁର୍ଗନ୍ଧ ହୁଏ, ଓ ଦେଖିଲେ ପାଟିରୁ ଲାଳ ବୁହେ ?" ତୋତ୍ତୋ-ଗ୍ୱନ୍ ଓ ତା'ର ସାଙ୍ଗମାନଙ୍କୁ ଏହି ଧନ୍ଦାଟି ଖୁବ୍ ଭଲ ଲାଗୁଥିଲା । ସେମାନେ ଏହାର ଉତ୍ତରଟି ଜାଣିଥିଲେ ମଧ୍ୟ ପଚ଼ରାପଚ଼ରି ହେବାରେ କେବେ ଥକିନଥିଲେ । ବେଳେ ବେଳେ କିଏ କହିବ ମୋତେ ସେ ଧନ୍ଦାଟା ପଗ୍ୱରିଲୁ କ'ଣ ଭୟଙ୍କର ଦିଶେ, ଦୁର୍ଗନ୍ଧ ହୁଏ ....?

ଏହାର ଉତ୍ତରଟି ଥିଲା, "ପାଇଖାନାରେ ଗୋଟିଏ ରାକ୍ଷସ ବସି ମଣ୍ଡା ପିଠା ଖାଇବାର ଦୃଶ୍ୟ ।" ଯେଉଁ ପ୍ରକାରରେ ତୋମୋଏ ସାହସପରୀକ୍ଷା ସରିଲା ସେଥିରୁ ବି ଗୋଟିଏ ମଜା ଧନ୍ଦା ବାହାରି ପାରିଥା'ନ୍ତା । "କେଉଁ ଜିନିଷଟା ଦେଖିଲେ ଡର ଲାଗେ, କୁଣ୍ଡାଇ ହୁଏ ଓ ହସାଏ ?"

ଯେଉଁଦିନ ସେମାନେ ପ୍ରାର୍ଥନା ଘରେ ତମ୍ବୁଲଗାଇ କ୍ୟାମ୍ପ କଲେ ପ୍ରଧାନ ଶିକ୍ଷକ ଘୋଷଣା କଲେ, "ଆମେ ଦିନେ ରାତିରେ କୁହୋନ୍‌ବୁତ୍‌ସୁ ମନ୍ଦିରରରେ ସାହସ ପରୀକ୍ଷା କରିବା । ହାତ ଟେକିଲ କିଏ କିଏ ସେଦିନ ଭୂତ ହେବ ।"

ପ୍ରାୟ ସାତ ଜଣ ପୁଅ ଏହି ସୁଯୋଗ ପାଇଁ ଆଗେଇ ଆସିଲେ, ସେଦିନ ସନ୍ଧ୍ୟାରେ ପିଲାଏ ସ୍କୁଲରେ ଏକାଠି ହେଲେ । ଯେଉଁ ପିଲାମାନେ ଭୂତ ହେବାକୁ ଠିକ୍ କରିଥିଲେ ସେମାନେ ସମସ୍ତେ ନିଜ ତିଆରି ବେଶଭୂଷା ନେଇ ଆସିଥିଲେ । ଏହି ଭୂତମାନେ ମନ୍ଦିର ବେଢ଼ାରେ ଲୁଚିବାକୁ ଆଗୁଆ ଗଲେ ।

"ଆମେ ତମକୁ ଡରାଇ ଖତମ କରିଦେବୁ", ଅନ୍ୟପିଲାଙ୍କୁ ଏକଥା କହି ସେମାନେ ଗ୍ୱଲିଗଲେ ।

ବାକି ତିରିଶି ପାଖାପାଖି ଛୁଆ ପାଞ୍ଚ ଜଣିଆ ଦଳରେ କିଛି କିଛି ସମୟ ଛାଡି ମନ୍ଦିରକୁ ଗଲେ । ଠିକ୍ କରାଯାଇଥିଲା ଯେ ସେମାନେ ମନ୍ଦିରବେଢ଼ା ଗ୍ୱରିକଡ କବରଖାନାରେ ବୁଲିବେ । ତା'ପରେ ସ୍କୁଲକୁ ଫେରି ଆସିବେ ।

ପ୍ରଧାନ ଶିକ୍ଷକ ବୁଝାଇ ଦେଲେ ଯେ ଏହା ତାଙ୍କ ସାହସ ମାପିବା ପାଇଁ ଏକ ପରୀକ୍ଷା, ତଥାପି କିଏ ଯଦି ଏହି କାମ ପୂରା ନ କରି ଫେରିଆସେ ତେବେ ସେଥିରେ କିଛି ଅସୁବିଧା ହେବନି ।

ମା'ଙ୍କଠାରୁ ତୋତ୍ତୋ-ଗ୍ୱନ୍ ଟର୍ଚ୍ଚଟିଏ ଆଣିଥିଲା । ମା' କହିଥିଲେ, "ହଜେଇବୁନି ।"

କେତେଜଣ ପୁଅ ଭୂତମାନଙ୍କୁ ଧରିବା ପାଇଁ ପ୍ରଜାପତି ଧରା ଜାଲ ଆଣିଥିଲେ । ଅନ୍ୟ କେତେ ଜଣ ଭୂତ ବାନ୍ଧିବା ପାଇଁ ଦଉଡି ଆଣିଥିଲେ।

ସେମାନେ କ'ଣ କରିବେ ବୁଝାସରିଲା ବେଳକୁ ପୂରା ଅନ୍ଧାର ହୋଇ ଯାଇଥିଲା । ପିଲାଏ ବି "ପଥର, କାଗଜ, କଇଁଚି" ଖେଳ ଖେଳି ଦଳ ଦଳ ହୋଇ ସାରିଥିଲେ । ବେଶ୍ ଉତ୍ତେଜନା ସହ ପ୍ରଥମ ଦଳ ସ୍କୁଲ ଫାଟକ ଟପି ବାହାରିଗଲେ । ଶେଷରେ ତୋତ୍ତୋ-ଗ୍ୱନ୍ ଦଳର ଯିବା ସମୟ ଆସିଗଲା ।

ପ୍ରଧାନ ଶିକ୍ଷକ କହିଲେ ସେମାନେ ମନ୍ଦିରରେ ନପହଞ୍ଚିବା ଯାଏଁ କୌଣସି ଭୂତ ବାହାରିବ ନାହିଁ । କିନ୍ତୁ ପିଲାଏ ସେ ବିଷୟରେ ନିଶ୍ଚିତ ନଥିଲେ ଓ ମନ୍ଦିରଫାଟକ ନିକଟରେ ପହଞ୍ଚିବା ଯାଏଁ ଡରି ଡରି ଯାଉଥିଲେ । ଫାଟକ ପାଖରୁ ସେମାନେ ପଥର ଦ୍ୱାରପାଳଙ୍କୁ ଦେଖି ପାରୁଥିଲେ । ଜହ୍ନ ଉଠିଥିଲେ ବି ମନ୍ଦିର ବେଢାରେ କିଟିମିଟି ଅନ୍ଧାର ଥିଲା । ଦିନବେଳେ ଏହି ବେଢାଟି ବେଶ୍ ମଉଜିଆ ଓ ଫାଙ୍କା ଲାଗେ । କିନ୍ତୁ ଏବେ କେଉଁଠି କେତେବେଳେ ଭୂତ ସହ ଭେଟ ହେବ ସେ ଭୟରେ ପିଲାଏ ଥୟ ଧରି ରହି ପାରୁନଥା'ନ୍ତି ।

ପବନରେ ପତ୍ର ଖସ୍ ଖସ୍ ଶବ୍ଦ ହେଲେ କିଏ ଗୋଟେ ଚିତ୍କାର କରି ଉଠିବ, "ଇ...." । କାହା ଗୋଡରେ କିଛି ଗୋଟେ ନ'ରମ ଜିନିଷ ବାଜିଗଲେ ସେ ଚିଲେଇ ଉଠୁଥିଲା ଭୂତଟେଲୋ ମା ! ଶେଷରେ ଏମିତି ଜାବୁଡ଼ି କରି ଧରିଥିବା ସାଙ୍ଗର ହାତଟା ମଧ୍ୟ ଭୂତଟେ ଭଳି ଲାଗିଲା । ତୋତୋ-ଗ୍ୱିନ୍ ଠିକ୍ କରିନେଲା ଯେ ସେ ଜମା କବର ପଡିଆକୁ ଯିବନି । ସେଇଠି ହିଁ ଭୂତଗୁଡାକ ଅପେକ୍ଷା କରି ରହିଥିବେ । ତା'ଛଡା ସିଏ ଏବେ ଜାଣି ସାରିଥିଲା ସାହସ ପରୀକ୍ଷା କ'ଣ । ତେଣୁ ଫେରିଗଲେ କିଛି କଥା ନାହିଁ । ତା' ଦଳର ଅନ୍ୟମାନେ ବି ଠିକ୍ ଏଇ କଥା ଭାବୁଥିଲେ । ଏତେ ଜଣ ବାହାରିବାକୁ ଫେରିବା ବିଷୟରେ କାହାରିକୁ ଖରାପ ଲାଗିବାର ନଥିଲା । ସେ ସମସ୍ତେ ଏକା ଥରକେ ଆଖିକାନ ମୁଜି ଫେରନ୍ତା ଦଉଡିଲେ ।

ସେମାନେ ସ୍କୁଲରେ ଦେଖିଲେ ଯେ ତାଙ୍କ ଆଗରୁ ଯାଇଥିବା ଦଳଗୁଡିକ ଫେରି ସେଠାରେ ପହଞ୍ଚି ସାରିଥିଲେ । ଜଣାପଡିଲା ଯେ କେହି ବି କବର ପଡିଆ ଯାଏଁ ଯିବାକୁ ସାହସ କରି ନଥିଲେ ।

ଠିକ୍ ସେତିକି ବେଳେ ପୁଅଟିଏ ମୁହଁରେ ଧଳାକନା ଘୋଡେଇ ହୋଇ ଫାଟକ ଦେଇ କାନ୍ଦି କାନ୍ଦି ଜଣେ ଶିକ୍ଷକଙ୍କ ସହ ଆସୁଥାଏ । ସେ ଥିଲା ଭୂତଙ୍କ ଭିତରୁ ଜଣେ । ସେ ଆରମ୍ଭରୁ କବରଖାନା ଭିତରେ ହିଁ ଜଗିଥିଲା; କିନ୍ତୁ କେହି ସେଠାକୁ ଆସିଲେନି । ତାକୁ ବେଶୀ ବେଶୀ ଡର ଲାଗିଲା । ଶେଷରେ ସେ ବାହାରି ଆସିଲା ଓ ରାସ୍ତା ଉପରେ କାନ୍ଦୁଥିବା ଅବସ୍ଥାରେ ସେଠି ଜଗିଥିବା ଶିକ୍ଷକ ତାକୁ ଧରି ଫେରିଲେ । ସମସ୍ତେ ମିଶି ତାକୁ ଖୁସି କରାଇବାକୁ ଚେଷ୍ଟା କଲେ । ଏତିକି ବେଳେ ଆଉ ଗୋଟିଏ ଭୂତ ଓ ଜଣେ ପୁଅ ପହଞ୍ଚିଲେ । ଦୁହେଁ କାନ୍ଦୁଥାନ୍ତି, ଭୂତ ହୋଇଥିବା ଏ ପିଲାଟି ମଶାଣି ପଦାରେ ଲୁଚିଥିଲା ସମୟରେ ତା' ଆଡକୁ କିଏ ଜଣେ ଦଉଡି ଆସୁଥିଲା ଶବ୍ଦ ଶୁଣି ସେ ତାକୁ ଡରାଇବାକୁ ବାହାରକୁ ଡେଇଁ ପଡିଲା । ହେଲେ ଦୁହିଁଙ୍କ ମୁଣ୍ଡ ମାଡ ହୋଇ ଗଲା । ମୁଣ୍ଡ କାଟିବାକୁ ଏଣେ ଡର ମାଡୁଛି, ତେଣୁ ଦୁହେଁ ଦଉଡି ଦଉଡି ଲେଉଟିଆସିଲେ । ଘଟଣାଟା ଖୁବ୍ ମଉଜିଆ ଥିଲା । ସମସ୍ତେ ଡରିକରି ଥିବାବେଳେ ଏହି ଘଟଣା ମନକୁ ହାଲୁକା କରି ଦେଲ । ପିଲାଏ ହସି ହସି ବେଦମ୍ ହୋଇଗଲେ । ଭୂତମାନେ ଏକାବେଳେ ହସୁଥା'ନ୍ତି ଓ କାନ୍ଦୁଥାନ୍ତି । ତୋତୋ-ଗ୍ୱିନ୍‌ର ମିଗିତା ବୋଲି ଜଣେ ସାଙ୍ଗ ଟିକିଏ ପରେ ଫେରିଲା । ସେ ଖବରକାଗଜରେ ତିଆରି ଗୋଟିଏ ଭୂତମୁଖା ପିନ୍ଧିଥାଏ ଓ ରାଗରେ ଗର ଗର ହେଉଥାଏ । କାହିଁକି ନା କବରଖାନାକୁ

କେହି ବି ଆସିଲେନି ।

"ମୁଁ କେତେ ସମୟ ହେଲା ସେଇଠି ଜଗିଛି ?" ହାତ ଓ ଗୋଡରେ ମଶା କାମୁଡା ଫୁଲାଗୁଡିକୁ କୁଣ୍ଡାଉ କୁଣ୍ଡାଉ ସେ ଅଭିଯୋଗ କଲା ।

"ହେ...., ଭୂତଟାକୁ ମଶା କାମୁଡି ପକାଇଲେରେ", କିଏ ଗୋଟିଏ ଥଟ୍ଟା କଲା ଓ ସମସ୍ତେ ପୁଣି ହସିବାରେ ଲାଗିଲେ ।

"ଆଚ୍ଛା ଏଥର ମୁଁ ଯାଇ ବାକି ସବୁ ଭୂତଙ୍କୁ ଫେରାଇ ଆଣେ", କହି ପଞ୍ଚମ ଶ୍ରେଣୀର ଶିକ୍ଷକ ମାରୁୟାମା ବାହାରିଲେ । ସେ ସବୁ ଭୂତଙ୍କୁ ଖୋଜି ଦେଖିଲେ କିଏ ରାସ୍ତା ଆଲୁଅ ତଳେ ଡରି ଠିଆ ହୋଇଛି ତ କିଏ ବହୁତ ଡରି ଘରକୁ ଫେରିଯାଇଛି । ସେ ସମସ୍ତଙ୍କୁ ସ୍କୁଲକୁ ନେଇ ଫେରିଲେ ।

ସେହି ରାତି ପରେ ଟୋମୋଏର ପିଲାମାନେ ଭୂତକୁ ଜମା ଡରୁନଥିଲେ । ଭୂତମାନେ ନିଜେ ବି ଡରି ଯାଆନ୍ତି, ନୁହେଁ କି ?

## *ଅଭ୍ୟାସଘର*

ଟୋଟୋ-ଚ୍ୟାନ୍ ଧୀରେ ଧୀରେ ଚାଲୁଥିଲା । ରକି ବି ଧୀରେ ଧୀରେ ଚାଲିଲା । ମଝିରେ ସେ ଟୋଟୋ-ଚ୍ୟାନ୍‌କୁ ଚାହୁଁଥାଏ । ଏଭଳି ଚାଲିର କେବଳ ଗୋଟିଏ ଅର୍ଥ ହୋଇପାରେ ! ସେ ଦୁହେଁ ବାପାଙ୍କ ସଙ୍ଗୀତ ଅଭ୍ୟାସଘର ଭିତରକୁ ଉଣ୍ଡିବା ପାଇଁ ଚାଲିଥିଲେ । ଅନ୍ୟ ସବୁବେଳେ ଟୋଟୋ-ଚ୍ୟାନ୍ ତା'ର ପୂରା ବେଗରେ ଦୌଡୁଥାଏ । ଏପଟସେପଟ ଚାଲୁଥିବ, ଗଳି ପଡିଥିବା କିଛି ଜିନିଷ ଖୋଜୁଥିବ । ନହେଲେ ଗୋଟିଏ ପରେ ଗୋଟିଏ ବଗିଚାର ବାଡ ତଳେ ଗଳି ଚାଲିଥିବ ।

ବାପାଙ୍କ ଅଭ୍ୟାସଘର ତାଙ୍କ ରହିବା ଘରଠୁ ପାଞ୍ଚ ମିନିଟର ବାଟ । ସେ ଥିଲେ ଗୋଟିଏ ବାଜାଦଳର ମୁଖ୍ୟ, ତେଣୁ ସେ ବେହେଲା ବଜାନ୍ତି । ଟୋଟୋ-ଚ୍ୟାନ୍‌କୁ ସେ ତାଙ୍କର ସଙ୍ଗୀତ କାର୍ଯ୍ୟକ୍ରମକୁ ନେଇଥିଲେ । କାର୍ଯ୍ୟକ୍ରମ ସରିବାପରେ ସଙ୍ଗୀତ ପରିଚାଳକ ତାଙ୍କ ମଞ୍ଚରୁ ଓହ୍ଲାଇ ଟୋଟୋ-ଚ୍ୟାନ୍‌ର ବାପାଙ୍କ ସହିତ ହାତ ମିଳାଇଲେ । ଏହାପରେ ବାପା ଓ ଅନ୍ୟ ବାଦ୍ୟକାରମାନେ ଉଠି ଛିଡାହେଲେ । ଏହା ଟୋଟୋ-ଚ୍ୟାନ୍‌ର ମନକୁ ଖୁବ୍ ପାଇଗଲା । ଟୋଟୋ-ଚ୍ୟାନ୍ ଫୁସ୍‌ଫୁସ୍ କରି ପଚାରିଲା, "ସେମାନେ କାହିଁକି ହାତ ମିଳେଇଲେ ?"

ମା' ବୁଝେଇ ଦେଲେ ଯେ ଅର୍କେଷ୍ଟ୍ରା ଦଳ ବହୁତ ଭଲ ବଜାଇଥିଲେ, ତେଣୁ ପରିଚାଳକ ବାପାଙ୍କ ଜରିଆରେ ଅର୍କେଷ୍ଟ୍ରା ଦଳର ସମସ୍ତଙ୍କୁ ଧନ୍ୟବାଦ ଜଣାଇଲେ ।

ଟୋଟୋ-ଚ୍ୟାନ୍ ଅଭ୍ୟାସ ଘରକୁ ଯିବାକୁ ଭଲପାଇବା କାରଣ ହେଉଛି ସ୍କୁଲରେ କେବଳ ସାନପିଲା ଥା'ନ୍ତି । କିନ୍ତୁ ଏଠି ବଡଲୋକମାନେ ଥା'ନ୍ତି ଓ ସେମାନେ ସବୁ ପ୍ରକାରର ବାଜା ବଜାନ୍ତି । ଏହାଛଡା ପରିଚାଳକ ରୋଜେନ୍‌ଷ୍ଟକ ବଡ଼ ମଉଜିଆ ଜାପାନୀ

ଭାଷାରେ କଥା କହନ୍ତି ।

ବାପା କହୁଥିଲେ ଜୋସେଫ୍ ରୋଜେନ୍‌ଷ୍ଟକ କୁଆଡେ ୟୁରୋପରେ ଜଣେ ନାମଜାଦା ପରିଚାଳକ ଥିଲେ । କିନ୍ତୁ ହିଟ୍‌ଲର୍ ବୋଲି ଜଣେ ଲୋକ ସେଠାରେ ଅନେକ ସାଙ୍ଘାତିକ କାମ କରିବାକୁ ଆରମ୍ଭ କରିଦେଲେ । ତେଣୁ ସେ ଜାଗା ଛାଡ଼ିବାକୁ ରୋଜେନ୍‌ଷ୍ଟକ ବାଧ୍ୟ ହେଲେ । ସେ ଜାପାନକୁ ପଳାଇ ଆସିଲେ ତାଙ୍କ ସଙ୍ଗୀତ ସାଧନା ଚାଲୁରଖିବା ପାଇଁ । ବାପା ରୋଜେନ୍‌ଷ୍ଟକଙ୍କୁ ବହୁତ ପ୍ରଶଂସା କରୁଥିଲେ । ପୃଥିବୀର ଅବସ୍ଥା ବିଷୟରେ ତୋତୋ-ଚାନ୍ କିଛି ବୁଝୁ ନଥିଲା, କିନ୍ତୁ ସେତିକିବେଳେ ହିଟ୍‌ଲର୍ ଇହୁଦୀମାନଙ୍କ ଉପରେ ନାନା ଅତ୍ୟାଚାର ଆରମ୍ଭ କରି ଦେଇଥା'ନ୍ତି । ଏପରି ନ ହୋଇଥିଲେ ରୋଜେନ୍‌ଷ୍ଟକ କଦାପି ଆସି ନଥା'ନ୍ତେ । ସଙ୍ଗୀତଜ୍ଞ କୋଶାକ୍ ୟାମାଦା ଏହି ଅର୍କେଷ୍ଟ୍ରା ଦଳଟିକୁ ଆରମ୍ଭ କରିଥିଲେ । ବିଶ୍ୱପ୍ରସିଦ୍ଧ ପରିଚାଳକ ରୋଜେନ୍‌ଷ୍ଟକଙ୍କ ଚେଷ୍ଟାରେ ଏହା ଖୁବ୍ ଶୀଘ୍ର ଆଗେଇ ଯାଇପାରିଲା । ରୋଜେନ୍‌ଷ୍ଟକ ଦାବୀ କରୁଥିଲେ ଯେ ୟୁରୋପର ଗୋଟିଏ ପ୍ରଥମ ଶ୍ରେଣୀ ଅର୍କେଷ୍ଟ୍ରା ଦଳ ଭଳି ଏହି ଜାପାନୀ ଦଳଟି ବଜାନ୍ତୁ । ତେଣୁ ପ୍ରତିଥର ଅଭ୍ୟାସ ସରିଲା ପରେ ଏଭଳି ସଙ୍ଗୀତ ନପାଇବା ଯୋଗୁଁ ସେ କାନ୍ଦି ପକାଉଥିଲେ।

"ମୁଁ ଏତେ ଚେଷ୍ଟା କରୁଛି ଅଥଚ ତୁମେମାନେ ଆଗେଇ ପାରୁନାହଁ ।"

ହିଦିଓ ସାଇତୋ ନାମକ ଜଣେ ସେଲୋ ବାଦକ ରୋଜେନ୍‌ଷ୍ଟକଙ୍କ ସହକାରୀ



ଭାବରେ ବେଳେ ବେଳେ ପରିଚ୍ଳନା କରୁଥିଲେ । ସେ ଭଲ ଜର୍ମାନ କହିପାରୁଥିଲେ । ସେ ସମସ୍ତଙ୍କ ତରଫରୁ କୁହନ୍ତି, "ଆମେ ସାଧ୍ୟମତେ ଚେଷ୍ଟା କରୁଛୁ । ଆମର ଦକ୍ଷତା ଏତେ ଟାଣ ହୋଇନାହିଁ । ଆମେ କଥାଦେଉଛୁ ଯେ ଆମେ ଜାଣିଶୁଣି ଖିଲାପ କରୁନାହୁଁ ।"

ଏସବୁ ଗଭୀର କଥା ତୋତ୍ତୋ-ଚ୍ନ୍‌ର ମୁଣ୍ଡରେ ପଶୁ ନ ଥିଲା । କିନ୍ତୁ ବେଳେ ବେଳେ ରୋଜେନ୍‌ଷ୍ଟକଙ୍କ ମୁହଁଟା ପୂରା ଲାଲ୍ ପଡିଯାଏ । ମନେହୁଏ ସତେ କି ତାଙ୍କ ମୁହଁରୁ ବାମ୍ଫ ବାହାରି ଆସିବ । ତେବେ ସେ ଜର୍ମାନ ଭାଷାରେ ଭୀଷଣ ପାଟି କରି ଉଠନ୍ତି । ତୋତ୍ତୋ-ଚ୍ନ୍ ସାଧାରଣତଃ ତା'ର ମନପସନ୍ଦ ଝରକାରେ, ସେ ଗାଲରେ ହାତ ଭରା ଦେଇ ଦେଖୁଥାଏ । ରୋଜେନ୍‌ଷ୍ଟକ ରାଗିକରି ପାଟିକଲେ ସେ ରକି ସହ ଓହ୍ଲେଇପଡ଼େ, ସେତେବେଳେ ସେ ତଳକୁ ଖସିଆସେ । ନିଶ୍ୱାସଃ ବନ୍ଦ କରି ତଳେ ସେ ବିଲ୍‌କୁଲ୍ ଅଣନିଃଶ୍ୱାସୀ ହୋଇ ପଡୁଥାଏ ଓ ପୁଣି ଚୁପ୍‌ଚାପ୍ ବସି ରହେ ଓ ପୁଣି ବାଜା ଆରମ୍ଭ ହେବା ପାଇଁ ଅପେକ୍ଷା କରୁଥାଏ ।

କିନ୍ତୁ ସାଧାରଣ ଅବସ୍ଥାରେ ରୋଜେନ୍‌ଷ୍ଟକ ଜଣେ ଅତି ଭଲ ଲୋକ ଥିଲେ । ତାଙ୍କର ଜାପାନୀ କୁହା ଢଙ୍ଗ ଖୁବ୍ ମଜାଳିଆ ଥିଲା । କାର୍ଯ୍ୟକ୍ରମ ଭଲ ହେଲେ ସେ ତାଙ୍କର ମଜାଳିଆ ଢଙ୍ଗରେ କହିବେ, "ବହୁତ ଭଲ କୁରୋୟାଗି-ଚ୍ନ୍" ବା "ଚମତ୍କାର ।"

ତୋତ୍ତୋ-ଚ୍ନ୍ କେବେ ବି ଅଭ୍ୟାସ ଘର ଭିତରକୁ ଯାଉନଥିଲା, ଝରକାରେ ଦେଖିବାକୁ ଓ ଶୁଣିବାକୁ ତାକୁ ଭଲ ଲାଗୁଥିଲା । ତେଣୁ ମଝିରେ କିଛି ସମୟ ପାଇଁ ବନ୍ଦକରି ସେମାନେ ବୁଲଚ୍ଲ କଲାବେଳେ ବାପା ତାକୁ ଦେଖୁଥିଲେ ।

ସେ କହିବେ, "ଆରେ ତୋଦ୍‌ସ୍କି ! ତୁ ଏଇଠି !"

ରୋଜେନ୍‌ଷ୍ଟକ ଯଦି ତାକୁ ଦେଖିବେ ସେ ନିଜ ମଉଜିଆ ଉଚ୍ଚାରଣରେ କହିବେ, "ଗୁଡ୍‌ମର୍ଣ୍ଣିଙ୍ଗ୍" ବା "ଗୁଡ୍ ଡ଼େ" । ଯଦିଓ ଏବେ ସେ ବଡ ହୋଇଗଲାଣି ତଥାପି ସେ ତାକୁ ଟେକି ନେଇ ଗେଲ କରିବେ । ଏବେ ତାକୁ ଟିକେ ଲାଜ ଲାଗୁଥିଲା । ତଥାପି ସେ ରୋଜେନ୍‌ଷ୍ଟକଙ୍କୁ ଭଲ ପାଉଥିଲା । ରୋଜେନ୍‌ଷ୍ଟକ ପତଳା ରୂପା ଫ୍ରେମ୍‌ଥିବା ଚ୍‌ଷମା ପିନ୍ଧୁଥିଲେ । ତାଙ୍କର ଲମ୍ବା ନାକଟି ଥିଲା ଓ ସେ ବେଶୀ ଡେଙ୍ଗା ନଥିଲେ । କିନ୍ତୁ ତାଙ୍କର ମୁହଁଟି ଖୁବ ସୁନ୍ଦର ଥିଲା । ସେଥିରୁ ସେ ଜଣେ କଳାକାର ବୋଲି ଜଣା ପଡୁଥିଲେ ।

ତୋତ୍ତୋ-ଚ୍ନ୍‌କୁ ଏହି ଅଭ୍ୟାସ ଘରଟି ଭଲ ଲାଗୁଥିଲା । ଏହାର ତିଆରି ଟିକିଏ ପାଶ୍ଚାତ୍ୟ ଢଙ୍ଗରେ ଥିଲା ଓ ତାହା ଭାଙ୍ଗିରୁଜି ଆସିଥିଲା । ସେନ୍‌ଜୋକୁ ପୋଖରୀ ପଟରୁ ପବନ ଆସି ସଙ୍ଗୀତର ଧ୍ୱନିକୁ ବହୁତ ଦୂର ଯାଏଁ ବୋହି ନେଉଥିଲା । ବେଳେ ବେଳେ ମାଛିବିକାଳିଙ୍କ ଡାକ ବି ଏହି ସଙ୍ଗୀତ ସହିତ ତାଳ ରଖୁଥିଲା ।



କିନ୍-ଗିଓ ଏ' ଏ' କିନ୍-ଗିଓ

# ଉଷ୍ଣପ୍ରସ୍ରବଣ ବୁଲା

ଖରାଛୁଟି ସରିଲା ଓ ଉଷ୍ଣପ୍ରସ୍ରବଣ ବୁଲିଯିବାର ଦିନ ଆସିଲା । ପିଲାଏ ଭାବୁଥିଲେ ଯେ ଏହା ହେଉଛି ତୋମୋଏର ମୁଖ୍ୟ କାର୍ଯ୍ୟକ୍ରମ । ସାଧାରଣତଃ ମା' ତୋତୋ-ଚ୍ୱାନ୍‌ର କୌଣସି କଥାରେ ଆଶ୍ଚର୍ଯ୍ୟ ହେଉନଥିଲେ । ଦିନେ ତୋତୋ-ଚ୍ୱାନ୍ ସ୍କୁଲ୍‌ରୁ ଫେରି କହିଲା, "ମୁଁ ଅନ୍ୟମାନଙ୍କ ସହ ଉଷ୍ଣ ଝରଣା ବୁଲିବାକୁ ଯାଇ ପାରିବି ?" ମା' ବଡ ଆଶ୍ଚର୍ଯ୍ୟ ହୋଇଗଲେ । ବଡମାନେ ଦଳ ଦଳ ହୋଇ ଉଷ୍ଣପ୍ରସ୍ରବଣ ବୁଲିଯିବା କଥା ସେ ଶୁଣିଥିଲେ; କିନ୍ତୁ ଏହି ମେଞ୍ଚଡଗୁଡା ଯିବେ କାହିଁକି ? କିନ୍ତୁ ପ୍ରଧାନ ଶିକ୍ଷକଙ୍କ ଚିଠିକୁ ପଢିବା ପରେ ସେ ଭାବିଲେ ଯେ ଏହା ଏକ ଚମତ୍କାର ଯୋଜନା । ତାଙ୍କର ଏହି ଯୋଜନାକୁ ସେ ମନେ ମନେ ବହୁତ ପ୍ରଶଂସା କଲେ । ପ୍ରକୃତରେ ଏହି ବୁଲାଟି ପିଲାଙ୍କ ପାଇଁ ସମୁଦ୍ରକୂଳିଆ ସ୍କୁଲ୍ ହେବାକୁ ଯାଉଥିଲା । ଶିଜୁଓକାର ଇଜୁ ଉପଦ୍ୱୀପରେ ଟଏ ବୋଲି ଗୋଟିଏ ଜାଗାକୁ ସେମାନଙ୍କର ଯିବା କଥା, ସେଠାରେ ସମୁଦ୍ର ଭିତରେ ଗୋଟିଏ ଉଷ୍ଣପ୍ରସ୍ରବଣ ଥିଲା ଯେଉଁଠି ପିଲାଏ "ପହଁରି ପାରିବେ ଓ ଉଷୁମ ପାଣିରେ ଗାଧୋଇ ପାରିବେ ।" ତିନି ଦିନ ଓ ଦୁଇ ରାତିର ଏହି ବୁଲା । ତୋମୋଏର ଜଣେ ପିଲାର ବାପାଙ୍କର ସେଠାରେ ଗୋଟିଏ ଛୁଟି କଟେଇବା ଘର ଥିଲା ଯେଉଁଠି ପ୍ରଥମରୁ ଷଷ୍ଠ ଯାଏଁ ସବୁ ପିଲା ରହି ପାରିବେ । ମା' ରାଜି ନହେବାର କିଛି ନଥିଲା ।

ସେହିଦିନ ସବୁ ପିଲା ବାହାରିବା ଆଗରୁ ସ୍କୁଲରେ ଏକାଠି ହେଲେ ।

ପ୍ରଧାନ ଶିକ୍ଷକ ସେମାନଙ୍କୁ କହିଲେ, "ଏବେ ଆମେମାନେ ରେଳରେ ଯିବା, ପୁଣି ଜାହାଜରେ ଯିବା। ତମ ଭିତରୁ କେହି ଜଣେ ବି ଯେପରି ହଜି ନଯାଅ । ବୁଝୁଛ ତ ? ଆଚ୍ଛା, ଚ୍ୱଲ ।"

ସେ କେବଳ ଏତିକି ନିର୍ଦ୍ଦେଶ ଦେଲେ । ତଥାପି ଜିଉଗାଓକାରେ ଟୋୟୋକା ରେଳରେ ଚଢିଲାବେଳେ ସବୁ ପିଲା ଧୀର ସ୍ଥିର ରହିଥିଲେ । କେହି ବି ବଗି ଭିତରେ ଏଣେ ତେଣେ ଦୌଡି ନଥିଲେ । କେବଳ ପାଖାପାଖି ବସିଥିବା ପିଲାଏ ଧୀର ସ୍ୱରରେ କଥା ହେଉଥିଲେ । ତୋମୋଏ ପିଲାଙ୍କୁ କେବେ ବି କହିବାକୁ ହେଉନଥିଲା ଯେ ସେମାନେ ଧାଡିରେ ଚ୍ୱଲିବେ, ଚୁପ୍‌ଚାପ୍ ବସିବେ ଓ ଖାଇବା ସମୟରେ ତଳେ କିଛି ପକାଇବେନି - ଇତ୍ୟାଦି ।

ସ୍କୁଲର ନିତିଦିନିଆ କାରବାର ତାଙ୍କୁ ଶିଖାଇଥିଲା ଯେ ସେମାନେ କାହାରିକୁ ପେଲାପେଲି ବା ଖରାପ ବ୍ୟବହାର କରିବେ ନାହିଁ । ସେପରି କରିବା ଅଭଦ୍ରାମୀ ଲାଜର କଥା । ତଳେ କିଛି ମଇଳା ପଡିଥିଲେ ତାକୁ ଉଠାଇନେବେ । ଅନ୍ୟମାନଙ୍କର କ୍ଷତି କଲାଭଳି ବା କାହାକୁ ବାଧିଲା ଭଳି କିଛି କାମ ନକରିବାକୁ ସେମାନେ ସଚେତନ ଥିଲେ । ସବୁଠୁ ଆଶ୍ଚର୍ଯ୍ୟ କଥା ହେଉଛି ଯେ, ତୋତୋ-ଚ୍ୱାନ୍ କିଛି ମାସ ଆଗରୁ ଶ୍ରେଣୀ ମଝିରେ ଝରକା ଦେଇ ରାସ୍ତାର ବାଜାବାଲାଙ୍କ ସହ ଗପୁଥିଲା । ତୋମୋଏରେ ପଶିବା

ଦିନଠାରୁ ସେ ନିଜ ଡେସ୍କରେ ବସୁଥିଲା ଓ ନିଜ ପାଠ ଠିକ୍ ଭାବେ କରୁଥିଲା । ଆଉ ସ୍କୁଲର କୌଣସି ଶିକ୍ଷକ ଯଦି ତାକୁ ରେଳବଗି ଭିତରେ ଧୀର ସ୍ଥିର ଭାବରେ ବସିଥିବାର ଦେଖିଥା'ନ୍ତେ ତେବେ ସେ କହିଥାନ୍ତେ, ''ଇଏ ଆଉ ଜଣେ କିଏ ହୋଇଥିବ।''

ନୁମାଜୁଠାରେ ସେମାନେ ଗୋଟିଏ ଜାହାଜରେ ଚଢ଼ିଲେ। ଏହା ସେମାନଙ୍କର କଳ୍ପନାର ଜାହାଜ ସହିତ ମେଳ ଖାଉଥିଲା। ଏହା ବେଶୀ ବଡ଼ ନଥିଲା। କିନ୍ତୁ ତଥାପି ସେମାନେ ବହୁତ ଖୁସି ହୋଇ ଯାଇଥିଲେ। ସେମାନେ ଡେକ୍ ସାରା ବୁଲି ଭଲ କରି ଦେଖୁଥିଲେ; କେଉଁଟା ଛୁଇଁ ଦେଖୁଥିଲେ ତ କେଉଁଠି ଓହଳି ପଡୁଥିଲେ । ଯେତେବେଳେ ଏହା ଛାଡ଼ିବାକୁ ବାହାରିଲା, ପିଲାଏ କୂଳରେ ଠିଆ ହୋଇଥିବା ଲୋକଙ୍କୁ ଦେଖି ହାତ ହଲାଇଲେ । ସେମାନେ ଅଳ୍ପ କିଛି ବାଟ ଯାଇଛନ୍ତି ବର୍ଷା ଆରମ୍ଭ ହୋଇଗଲା ଓ ସେମାନେ ଭିତରକୁ ଯିବାକୁ ବାଧ୍ୟ ହେଲେ । ଦେଖୁ ଦେଖୁ ସମୁଦ୍ର ଅଶାନ୍ତ ହୋଇ ଉଠିଲା । କେତେଜଣଙ୍କ ପରି ତୋତୋ-ଗ୍ୱିନ୍ ଓ ଆଉ କେତେ ଜଣଙ୍କୁ ବାନ୍ତି ଲାଗିଲା। ଏତିକି ବେଳେ ବଡ ପୁଅ ପିଲା ଜଣେ ମଝିରେ ଠିଆ ହୋଇପଡ଼ି ଜାହାଜକୁ ସମ୍ଭାଳିବାର ଅଭିନୟ କଲା । ଜାହାଜଟା ଗୋଟିଏ ପଟକୁ ଢଳି ପଡ଼ିଲେ ସେ ''ଉପ୍'' କହି ସେହି ପଟକୁ ଦୌଡ଼ିଯିବ ଓ ପୁଣି ''ଉପ୍'' କହି ଆରମୁଣ୍ଡକୁ ଦୌଡ଼ିଯିବ ।

ଏତେ ମଜାଳିଆ ଥିଲା ଯେ କେହି ନହସି ରହିପାରିଲେ ନାହିଁ। ଏପରିକି ଅସୁସ୍ଥ ଲାଗୁଥିବା ପିଲାମାନେ ବି ଜାହାଜ ଟଏରେ ପହଞ୍ଚିବା ଯାଏଁ ସେପରି ହସୁଥା'ନ୍ତି। ମଜା କଥା ହେଉଛି ଯେ, ସେମାନେ ଜାହାଜରୁ ଓହ୍ଲାଇବା ପରେ ସେହି ବିଚ଼ରା 'ଉପ୍' କଲାବାଲା ପୁଅଟିର ଦେହ ଖରାପ ହେଲା । ସେତେବେଳକୁ ସବୁ ପିଲା ସୁସ୍ଥ ହୋଇ ସାରିଥା'ନ୍ତି ।

ଜଙ୍ଗଲରେ ଘେରା ସମୁଦ୍ର ମଝିରେ ଟଏ ସ୍ପା (ସ୍ୱାସ୍ଥ୍ୟ କେନ୍ଦ୍ର) ଥିଲା ଗୋଟିଏ ଶାନ୍ତ ଓ ସୁନ୍ଦର ଗାଁଟିଏ ।

କିଛି ସମୟ ଥକା ମେଣ୍ଟାଇବା ପରେ ଶିକ୍ଷକମାନେ ପିଲାଙ୍କୁ ନେଇ ସମୁଦ୍ର କୂଳକୁ ଗ୍ୱଲିଲେ । ଏହା ସ୍କୁଲର ପହଁରା ପୋଖରୀ ପରି ନଥିଲା, ତେଣୁ ସେମାନେ ପହଁରିବା ପୋଷାକ ପିନ୍ଧିନେଲେ ।

ସମୁଦ୍ରରେ ଉଷ୍ଣପ୍ରସ୍ରବଣ ରହିବା ଏକ ଅତି ଅସ୍ୱାଭାବିକ କଥା। ଏହାକୁ ସମୁଦ୍ରରୁ ଅଲଗା କରିବା ପାଇଁ କିଛି ଚିହ୍ନ ନଥିଲା । ଉଷ୍ଣପ୍ରସ୍ରବଣ ଥିବା ଜାଗାରେ ବସି ପଡ଼ିଲେ ବେକ ଯାଏଁ ଉଷୁମ ପାଣି ଆସି ଯାଉଥିଲା । ଗରମ ପାଣି କୁଣ୍ଡ ଭିତରେ ବସିଲା ଭଳି ବଢ଼ିଆ ଲାଗୁଥିଲା । ତମେ ଯଦି ସେଠାରୁ ସମୁଦ୍ରକୁ ଯିବାକୁ ଗ୍ୱହିଁଲ, ତେବେ ଡାସ୍ ପନ୍ଦର ପାଦ କଡ଼େଇ କଡ଼େଇ ଗ୍ୱଲ। ଆସ୍ତେ ଆସ୍ତେ ପାଣି ଥଣ୍ଡା ଲାଗିବ । ଦୂରକୁ ଦୂରକୁ ଗଲେ ଆହୁରି ଥଣ୍ଡା ଓ ତମେ ଜାଣିଲ ଯେ ତମେ ଏବେ ସମୁଦ୍ର ପାଣିରେ । ତେବେ, କିଛି ସମୟ ସମୁଦ୍ରରେ ପହଁରି ଥଣ୍ଡା ଲାଗିଲେ ତମେ କ'ଣ କରିବ ନା ପୁଣି ଉଷ୍ଣପ୍ରସ୍ରବଣ ପାଖକୁ ଆସି ବେକଯାଏଁ ଗରମ ପାଣିରେ ବସିଯିବ। ଏହା ଠିକ୍ ଘର ଗାଧୁଆ ଭଳି ଲାଗୁଥିଲା । ଆଉ କି ମଉଜିଆ ଦେଖା ଯାଉଥିଲା ସତେ। ସମୁଦ୍ରରେ କିଛି ପିଲା ଗାଧୁଆ ଟୋପି ପିନ୍ଧି ପହଁରୁଥିଲେ। କିନ୍ତୁ

ଉଷ୍ଣପ୍ରସ୍ରବଣ ପାଖରେ ଥିବା ପିଲାଏ ଗାଧୁଆକୁଣ୍ଡ ଭିତରେ ବସିଲା ଭଳି ଗୋଲ ହୋଇ ବସି ନିଜ ନିଜ ଭିତରେ ମଜା ଗପ କରୁଥା'ନ୍ତି । କିଏ ଦେଖିଲେ ବି ଭାବିଥା'ନ୍ତା, ''କାହିଁକି ସାନ ଛୁଆମାନେ ଉଷ୍ଣପ୍ରସ୍ରବଣ ଭିତରେ ଥିଲା ବେଳେ ଠିକ୍ ବଡ ଲୋକଙ୍କ ଭଳି ବସିରହନ୍ତି ।''

ସେ ସମୟରେ ଜାଗାଟି ଏତେ ନିଛାଟିଆ ଥିଲା ଯେ ଲାଗୁଥିଲା ଯେପରି ଏହା ତାଙ୍କର ଘରୋଇ ସମୁଦ୍ର କୂଳ । ଆଉ ପିଲାମାନେ ଏହି ଅସାଧାରଣ ଉଷ୍ଣପ୍ରସ୍ରବଣ-ସମୁଦ୍ର ଗାଧୁଆକୁ ପୂରା ମାତ୍ରାରେ ଉପଭୋଗ କଲେ । ପାଣିରେ ବୁଡି ବୁଡି ସନ୍ଧ୍ୟାରେ ଘରକୁ ଫେରିଲା ବେଳକୁ ତାଙ୍କର ଆଙ୍ଗୁଠି ସବୁ ପାଣିରେ ବତୁରି ସେତା ପଡିଯାଇଥାଏ ।

ରାତିରେ ଶୋଇଲା ବେଳେ ବଡ ପିଲାମାନେ ପାଳି କରି ଭୂତ ଗପ କୁହନ୍ତି । ତୋତୋ-ଗ୍ୱିନ୍ ଓ ଅନ୍ୟ ପ୍ରଥମ ଶ୍ରେଣୀ ପିଲାମାନେ ଏତେ ଡରି ଯାଉଥିଲେ ଯେ ସେମାନେ କାନ୍ଦି ଉଠୁଥିଲେ । ଆଖିରୁ ଲୁହ ବୋହୁଥିଲାବେଳେ ବି ସେମାନେ ପଗ୍ଭରି ପକାଉଥିଲେ, ''ସେଇଠୁ କ'ଣ ହେଲା ?''

ସ୍କୁଲ ଭିତରେ କ୍ୟାମ୍ପ ବା ସାହସ ପରୀକ୍ଷାଠାରୁ ଟିଏ ସ୍ତରରେ ଏହି ତିନି ଦିନିଆ ରହଣି ବେଶ୍ ଅଲଗା ଓ ବାସ୍ତବିକ-ଜୀବନ ଅନୁଭୂତି ଥିଲା ।

ଏଠାରେ ସେମାନେ ପାଳି କରି ପରିବା, ମାଛ ଆଦି କିଣିବା ପାଇଁ ଯାଉଥିଲେ କୌଣସି ଅଚିହ୍ନା ଲୋକ ତାଙ୍କୁ ସ୍କୁଲ ବା ଘର କଥା ପଗ୍ଭରିଲେ ତାଙ୍କୁ ଭଦ୍ର ଭାବେ ଉତ୍ତର ଦେବାକୁ ହେଉଥିଲା । କିଛି ପିଲା ଥରେ ଜଙ୍ଗଲ ଭିତରେ ହଜିଯିବାରୁ ଅଳ୍ପକେ ରକ୍ଷା ପାଇଗଲେ । ଆଉ କେତେଜଣ ପହଁରୁ ପହଁରୁ ସମୁଦ୍ର ଭିତରକୁ ବହୁତ ବାଟ ଗ୍ଭଲି ଯାଇଥିଲେ, ଫେରିବାକୁ ତାଙ୍କୁ ବହୁତ କଷ୍ଟ ହେଲା । ଅନ୍ୟମାନେ ବି ବହୁତ ବ୍ୟସ୍ତ ହୋଇ ପଡିଥିଲେ । ସମୁଦ୍ର ବାଲିରେ ପଡିଥିବା କାଚ ଖଣ୍ଡରେ କେତେ ଜଣଙ୍କ ଗୋଡ ବି ଖଣ୍ଡିଆ ହୋଇ ଯାଇଥିଲା । ପ୍ରତିଥର ସେମାନେ ନିଜ ନିଜକୁ ପୂରା ସାହାଯ୍ୟ କରିଥିଲେ ।

କିନ୍ତୁ ମୋଟାମୋଟି ଏହା ମଜାରେ କଟିଗଲା । ସେଠାରେ ଝିଙ୍କାରୀରେ ଭରା ଗୋଟିଏ ଜଙ୍ଗଲ ଥିଲା ଓ ସେଇଠି ଗୋଟିଏ ଦୋକାନରେ କୁଲ୍‌ଫି ମିଳୁଥିଲା । ସେମାନେ ସମୁଦ୍ରକୂଳରେ ଗୋଟିଏ ଲୋକକୁ ଭେଟିଲେ ଯିଏ ଏକଲା ଗୋଟିଏ ବଡ଼ କାଠ ଡ଼ଙ୍ଗା ତିଆରି କରୁଥିଲା । ଡଙ୍ଗାର ଆକାର ପ୍ରାୟ ଆସି ଯାଇଥିଲା । ସବୁଦିନ ସକାଳେ ପିଲାମାନେ ଆଗ ସେହି ଜାଗାକୁ ଦୌଡି ଯାଉଥିଲେ ଓ ଦେଖୁଥିଲେ ଲୋକଟି କେତେ କାମ କରିଛି । ସେ ଲୋକଟି ତୋତୋ-ଗ୍ୱିନ୍‌କୁ ଖଣ୍ଡେ ଲମ୍ବା ମୋଡି ମୋଡିକା କାଠ ଛେଲି ଦେଲା ।

ସେ ଜାଗା ଛାଡିବା ଦିନ ପ୍ରଧାନ ଶିକ୍ଷକ ପଗ୍ଭରିଲେ, ''ଆଚ୍ଛା, ଗୋଟିଏ ସ୍ମରଣୀକା ଫଟୋ ଉଠାଇଲେ କେମିତି ହୁଅନ୍ତା ?'' ଏପରି ଦଳ ହୋଇ ସେମାନେ ଆଗରୁ କେବେ ଫଟୋ ଉଠାଇ ନଥିଲେ । ତେଣୁ ଏହି କଥାଟି ଶୁଣି ସମସ୍ତେ ବେଶ୍ ଖୁସି ହୋଇଗଲେ । କିନ୍ତୁ ଜଣେ ଶିକ୍ଷୟିତ୍ରୀ ଫଟୋ ଉଠାଇବାକୁ ପ୍ରସ୍ତୁତ ହେଲା ବେଳକୁ କିଏ ଜଣେ ପାଇଖାନାକୁ ଯାଇଥାଏ, ଆଉ ଜଣେ ତା'ର ଜୋତା ଓଲଟା ପିନ୍ଧି ଥିବାରୁ ବଦଳାଇଲା । ଶେଷରେ ଶିକ୍ଷକ ଯେତେବେଳେ କହିଲେ ''ସମସ୍ତେ ଏବେ ପ୍ରସ୍ତୁତ

ତ ?'' ଜଣେ ଦୁଇଜଣ ଭୂଇଁରେ ଗଡୁଥା'ନ୍ତି । ଫଟୋ ଉଠା ଭଙ୍ଗୀରେ ବହୁତ ସମୟ ଧରି ଅପେକ୍ଷା କରି ଛିଡା ହୋଇ ଏମାନେ ଥକି ପଡିଥିଲେ । ଫଟୋଟିଏ ଉଠାଇବା ପାଇଁ ଏଭଳି ବହୁତ ସମୟ ଲାଗିଗଲା ।

କିନ୍ତୁ ପଛପଟେ ସମୁଦ୍ର ଥାଇ, ପ୍ରତି ପିଲାର ମନ ମୁତାବକ ଭଙ୍ଗୀର ଏହି ଫଟୋଟି ସମସ୍ତଙ୍କ ପାଇଁ ଅମୂଲ୍ୟ ଧନ ହୋଇ ରହିଲା । ତାକୁ ଥରେ ଗ୍ରହିଁଦେଲେ- ଡଙ୍ଗା ଚଢା, ଉଷ୍ଣପ୍ରସ୍ରବଣ, ଭୂତ ଗପ, 'ଉପ' କରିଥିବା ପିଲା - ଏସବୁର ଝଲକ ଆଖି ଆଗରେ ନାଚି ଉଠୁଥିଲା । ତୋତୋ-ଗ୍ୱନ୍ ତା'ର ଏହି ପ୍ରଥମ ମଧୁର ଖରା ଛୁଟିଟିକୁ କେବେ ଭୁଲିନାହିଁ । ସେ ସମୟରେ ଟୋକିଓରେ ତାଙ୍କ ଘର ପାଖ ପୋଖରୀରେ କ୍ରେ ମାଛ ଥିଲେ, ଆଉ ବଳଦଟଣା ଗାଡିରେ ଅଳିଆ ବୁହା ହେଉଥିଲା ।

## *ନାଚ ଶିଖା*

ଖରାଛୁଟି ସରିବା ପରେ ସ୍କୁଲ ପୁଣି ଆରମ୍ଭ ହେଲା । ସ୍କୁଲରେ ଖରାଛୁଟିର ବିଭିନ୍ନ କାର୍ଯ୍ୟକ୍ରମ ଜରିଆରେ ତୋତୋ-ଗ୍ୱନ୍ ନିଜ ଶ୍ରେଣୀର ପିଲାଙ୍କ ଛଡା ସବୁ ପୁଅ ଝିଅଙ୍କ ସହ ସାଙ୍ଗ ହୋଇ ସାରିଥିଲା । ଆଉ ସେ ତୋମୋଏ ଗାକୁଏନ୍‌କୁ ବେଶୀ ବେଶୀ ଭଲ ପାଇଲା ।

ସାଧାରଣ ସ୍କୁଲଠାରୁ ତୋମୋଏରେ ପାଠ ପଢା ଅଲଗା ଧରଣର ଥିଲା । ଏହା ଛଡା ସଙ୍ଗୀତ ପ୍ରତି ମଧ୍ୟ ଏଠାରେ ଯଥେଷ୍ଟ ଅଧିକ ସମୟ ଦିଆଯାଉଥିଲା । ଏଠାରେ ସବୁ ପ୍ରକାରର ଗୀତ ଶିଖା ଯାଉଥିଲା, ଏହା ମଧ୍ୟରେ ପ୍ରତିଦିନ ଏକ ପିରିୟଡ୍ ଥିଲା ଇଉରିଦ୍‌ମିକ୍‌ସ୍ ବା 'ତାଳ ଜ୍ଞାନ' । ତାଳ ଶିଖିବା ପାଇଁ ଏହି ବିଶେଷ ବ୍ୟବସ୍ଥା ଆରମ୍ଭ କରିଥିଲେ ଏମିଲ୍ ଜାକ୍ ଦାଲ୍‌କ୍ରୋଜ୍ । ସେ ସ୍ୱିଜରଲ୍ୟାଣ୍ଡର ଜଣେ ସଙ୍ଗୀତ ବିଶାରଦ ଥିଲେ । ତାଙ୍କର ଏହି କାମ ବିଷୟରେ ଜଣାପଡିଲା ୧୯୦୪ରେ । ଏହି ପଦ୍ଧତି ୟୁରୋପ ଓ ଆମେରିକା ସାରା ପ୍ରଚଳିତ ହୋଇଥିଲା । ଏଥିପାଇଁ ଅନେକ ତାଲିମ୍ ଓ ଗବେଷଣା ପ୍ରତିଷ୍ଠାନ ସବୁଆଡେ ଗଢିଉଠିଲା । ଏଥର ଦେଖିବା ତୋମୋଏ ଗାକୁଏନ୍‌ରେ ଡାଲ୍‌କ୍ରୋଜ୍‌ଙ୍କ ଏହି ତାଳ ଜ୍ଞାନ ବିଦ୍ୟା କିପରି ପ୍ରଚଳିତ ହେଲା ।

ତୋମୋଏ ଆରମ୍ଭ କରିବା ଆଗରୁ ପ୍ରଧାନ ଶିକ୍ଷକ ସୋସାକୁ କୋବାୟାଶି ବିଭିନ୍ନ ଦେଶରେ ପିଲାଙ୍କ ଶିକ୍ଷା ବ୍ୟବସ୍ଥା ଦେଖିବାକୁ ୟୁରୋପ ଯାଇଥିଲେ । ସେ ଅନେକ ପ୍ରାଥମିକ ସ୍କୁଲ ବୁଲି ଦେଖିଲେ ଓ ଶିକ୍ଷାବିତ୍‌ମାନଙ୍କ ସହ କଥା ହେଲେ ।

ପ୍ୟାରିସ୍‌ରେ ସେ ଡାଲକ୍ରୋଜଙ୍କୁ ଭେଟିଲେ । ଡାଲକ୍ରୋଜ ଥିଲେ ଜଣେ ଅତି ଭଲ ସଙ୍ଗୀତକାର ଓ ଶିକ୍ଷାବିତ୍ ।

ସଙ୍ଗୀତକୁ ଖାଲି କାନରେ ନଶୁଣି ପିଲାମାନେ କିପରି ଏହାକୁ ପୂରା ମାତ୍ରାରେ ଅନୁଭବ କରିପାରିବେ, ସେ ବିଷୟରେ ଡାଲ୍‌କ୍ରୋଜ୍ ଅନେକ ଚିନ୍ତା କରିଥିଲେ । ସଙ୍ଗୀତକୁ ଅଙ୍ଗଚାଳନାର ତାଳ ଭାବରେ ଗ୍ରହଣ କରିବାକୁ ସେ ପିଲାମାନଙ୍କୁ ଶିଖାଉଥିଲେ। ଏହା ଯେପରି କେବଳ ଗୋଟିଏ ଶୁଖିଲା ଓ ନିରସ ପାଠ ହେବ ନାହିଁ। ବରଂ ପିଲାର ମନକୁ ଏହା ଆଲୋଡିତ କରିବା ଦରକାର ।

ପିଲାଙ୍କର ଡିଆଁ, କୁଦା ଓ ନାଚକୁ ଲକ୍ଷ୍ୟ କରିବା ପରେ ସେ ଏସବୁ ପାଇଁ ତାଳ ଖଞ୍ଜିଲେ, ସଙ୍ଗୀତର ତାଳରେ ଅଙ୍ଗଚାଳନା ବା ବ୍ୟାୟାମକୁ ସେ ଇଉରିଦ୍‌ମିକ୍‌ସ୍ ନାଁ ଦେଲେ ।

ଡାଲ୍‌କ୍ରୋଜ୍ ସ୍କୁଲରେ ବର୍ଷେରୁ ଅଧିକ ସମୟ ରହି କୋବାୟାଶି ଏହି ପଦ୍ଧତିକୁ ଭଲ ଭାବେ ଶିଖିଥିଲେ । ଜାପାନର ଅନେକ କଳାକାର ଡାଲ୍‌କ୍ରୋଜ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ସେମାନଙ୍କ ଭିତରେ ଥିଲେ ସଙ୍ଗୀତକାର କୋଶାକ୍ ଯାମାଦା, ଜାପାନରେ ଆଧୁନିକ ନାଚର ପ୍ରବର୍ତ୍ତକ ବାକୁଇଶୀ, କାବୁକି ଅଭିନେତା ଇଚିକାବା ସାଦାନ୍‌ଜୀ (ଦ୍ୱିତୀୟ), ଆଧୁନିକ ଡ୍ରାମାର ଜଣେ ଆଗୁଆ ଲୋକ କାଓରୁ ଓସାନାଇ, ନର୍ତ୍ତକ ମିଚିଓ ଇତୋ । ଏହି ସମସ୍ତେ ଅନୁଭବ କରିଥିଲେ ଯେ ଡାଲ୍‌କ୍ରୋଜ୍‌ଙ୍କ ଶିକ୍ଷା ଅଧିକାଂଶ କଳା ପାଇଁ ଭିତ୍ତିଭୂମି ସୃଷ୍ଟି କରିପାରିବ । କିନ୍ତୁ ଏହାକୁ ପ୍ରାଥମିକ ସ୍ତରରୁ ଶିଖାଇବାରେ ସୋସାକୁ କୋବାୟାଶି ଜାପାନରେ ପ୍ରଥମ ବ୍ୟକ୍ତି ଥିଲେ ।

ତାଙ୍କ ଭାଷାରେ ଇଉରିଦ୍‌ମିକ୍‌ସ୍ ହେଉଛି ଶରୀରଚାଳନାକୁ ସାବଲୀଳ କରିବା ପାଇଁ ଏକ ଖେଳ । ଦେହକୁ ନିୟନ୍ତ୍ରଣ କରି କାମରେ ଲଗାଇବା ପାଇଁ ମନକୁ ପ୍ରସ୍ତୁତ କରିବା ହେଉଛି ଏହି ଖେଳର ଲକ୍ଷ୍ୟ । ତାଳକୁ ବୁଝିବା ଦିଗରେ ଏହି ଖେଳ ଦେହ ଓ ମନକୁ ତାଲିମ ଦିଏ । ଇଉରିଦ୍‌ମିକ୍‌ସ୍ ଅଭ୍ୟାସ କଲେ ଜୀବନ ଛନ୍ଦମୟ ହୋଇ ଗଢ଼ିଉଠେ । ଏଭଳି ଏକ ସାବଲୀଳ ବ୍ୟକ୍ତିତ୍ୱ ପ୍ରକୃତି ସହ ତାଳ ଦେଇପାରେ ଏବଂ ଶକ୍ତ ଓ ସୁନ୍ଦର ହୁଏ ।

ପ୍ରାର୍ଥନା ଘରେ ଥିବା ଛୋଟ ମଞ୍ଚଟି ଉପରେ ପ୍ରଧାନ ଶିକ୍ଷକ ପିଆନୋ ବଜାନ୍ତି ଓ ପିଲାଏ ବାଜା ସହ ତାଳ ଦେଇ ଚାଲନ୍ତି । ଯିଏ ଯେଉଁ ଭାବରେ ଚାହିଁବ ଚାଲି ପାରିବ । କିନ୍ତୁ ସେ ଯେପରି ଅନ୍ୟ କାହା ସହ ଧକ୍କା ନହୁଏ । ତେଣୁ ସେମାନେ ପ୍ରାୟ ଗୋଲ ହୋଇ ଗୋଟିଏ ଦିଗରେ ଚାଲୁଥିଲେ ଓ ବାଜା ସହିତ ମେଳ ରଖି ହାତ ହଲାଉଥିଲେ । ଆଉ ପାଦକୁ ଜୋରରେ ନବାଡେଇ ହାଲୁକା କରି, ସ୍ୱାଭାବିକ ଭାବରେ ଚାଲିବା ଯଥେଷ୍ଟ ଥିଲା । ଦୁଇତାଳିଆ ବାଜା ସହିତ ସେମାନେ ହାତ ତଳ ଉପର କରି ଚାଲୁଥିଲେ । ଯଦି ଏହା ତିନି ତାଳକୁ ବଦଳି ଯାଉଥିଲା, ସେମାନେ ସେ ଅନୁସାରେ ହାତ ହଲାଇବା ସହିତ ବେଗ ସେ ଅନୁସାରେ ବଦଳାଉଥିଲେ । ବାଜା ଅନୁସାରେ ସେମାନେ ଧୀରେ ଧୀରେ ବା ବେଗରେ ଚାଲୁଥିଲେ । ସେମାନଙ୍କୁ ଛ'ତାଳ ବାଜା ଯାଏଁ ହାତ ହଲାଇ ଚାଲିବା ଅଭ୍ୟାସ କରିବାକୁ ହେଉଥିଲା । ଚାରି ତାଳ ପର୍ଯ୍ୟନ୍ତ ଏହା

ବେଶ୍ ସହଜ ଥିଲା । ହାତ ତଳକୁ, ଅଣ୍ଟାରେ ହାତ, କଡକୁ ମେଲାଅ ଓ ଉପରକୁ ଟେକ, ପୁଣି ହାତ ତଳକୁ..... । ପାଞ୍ଚ ତାଳର ବାଜା ପାଇଁ ହାତ ହଲାଇବାର କ୍ରମ ଥିଲା- ହାତ ତଳକୁ, ଅଣ୍ଟାରେ ହାତ, ଆଗକୁ ଟେକ, କଡକୁ ମେଲାଅ, ଉପରକୁ ଟେକ, ପୁଣି ତଳକୁ । ଆଉ ଛ'ତାଳ ପାଇଁ- ତଳ, ଅଣ୍ଟା, ଆଗ, ପୁଣି ଅଣ୍ଟା, କଡ ଓ ଉପର ।

ତେଣୁ ତାଳ ବଦଳି ଚାଲୁଥିଲା ବେଳେ ଏହା ବେଶ୍ କଷ୍ଟ ଜଣା ପଡୁଥିଲା । ଏହା ଆହୁରି କଷ୍ଟକର ହୋଇ ପଡୁଥିଲା ଯେତେବେଳେ ପ୍ରଧାନ ଶିକ୍ଷକ କହିଲେ, "ମୁଁ ପିଆନୋରେ ତାଳ ବଦଳାଇଲେ ବି ମୁଁ ନ କହିବା ଯାଏଁ ତମେ ନିଜ ଚାଲି ବଦଳାଇବନି ।" ଏହା କହି ସେମାନେ ଦୁଇ ତାଳ ବାଜାରେ ଚାଲୁଥିଲା ବେଳେ ପ୍ରଧାନ ଶିକ୍ଷକ ତିନି ତାଳରେ ପିଆନୋ ବଜାଇବେ । ପିଲାଏ ତିନି ତାଳ ଶୁଣୁଥିଲେ ବି ତାଙ୍କୁ ଦୁଇ ତାଳରେ ହିଁ ଚାଲିବାକୁ ହେଉଥିଲା ଏହା ବହୁତ କଷ୍ଟ ଥିଲା । କିନ୍ତୁ ପ୍ରଧାନ ଶିକ୍ଷକ କହୁଥିଲେ ଯେ ପିଲାର ଏକାଗ୍ରତା ବଢାଇବାରେ ଏହା ସାହାଯ୍ୟ କରିବ ।

କିଛି ସମୟ ପରେ ସେ ପାଟି କରିବେ, "ଏଥର ତୁମେ ବଦଳାଅ ।" ପିଲାମାନେ ସାଙ୍ଗେ ସାଙ୍ଗେ ତିନି ତାଳକୁ ଚାଲିବେ, କିନ୍ତୁ ସେମାନଙ୍କୁ ସବୁବେଳେ ସତର୍କ ରହିବାକୁ ପଡୁଥିଲା । କାହିଁକି ନା ସେମାନେ ନୂଆ ତାଳ ଧରୁ ଧରୁ ବାଜା ହୁଏତ ଆଉ ଥରେ ବଦଳି ଯାଇପାରେ । ପ୍ରଥମେ ପ୍ରଥମେ ଏଭଳି ହେଲା ବେଳେ ତାଙ୍କର ହାତ ଗୋଡ ଛନ୍ଦି ହୋଇ ଯାଉଥିଲା । ସେମାନେ ପାଟି, ହାତ ଆଦି ଉପରକୁ କରୁଥିଲେ ।

"ଗୁରୁଜୀ, ରହନ୍ତୁ, ରହନ୍ତୁ !" କିନ୍ତୁ ଏସବୁ ଆସ୍ତେ ଆସ୍ତେ ଅଭ୍ୟାସରେ ପଡିଗଲା ଓ ମଜାଦାର ମନେହେଲା । ଏଥିପାଇଁ ପିଲାମାନେ ନିଜ ନିଜର ନୂଆ ଉପାୟ ସବୁ ବାହାର କଲେ ।

ସାଧାରଣତଃ ପ୍ରତ୍ୟେକ ପିଲା ଅଲଗା ଚାଲୁଥିଲା । କିନ୍ତୁ ବେଳେ ବେଳେ ଦୁଇଜଣ ଏକାଠି ଚାଲିବାକୁ ଠିକ୍ କରିବେ । କିଏ ହାତ ଧରି ଚାଲିବେ, ବା ଆଖି ବନ୍ଦ କରି ଚାଲିବାକୁ ଚେଷ୍ଟା କରିବେ । ସବୁକିଛି ଚାଲୁଥିଲା ବେଳେ ଗୋଟିଏ କଥା ଛଡା - କଥାବାର୍ତ୍ତା ବିଲ୍‌କୁଲ ମନା ଥିଲା । ଶିକ୍ଷକ, ଅଭିଭାବକଙ୍କ ଆଲୋଚନାବେଳେ ମା'ମାନେ ଝରକା ବାଟେ ପିଲାଙ୍କୁ ଦେଖନ୍ତି । ଏହା ଦେଖିବାକୁ ବେଶ୍ ସୁନ୍ଦର ଥିଲା - ପ୍ରତି ପିଲା ଆରମ୍ଭରେ ହାତ ଗୋଡ ହଲାଇ ଚାଲୁଥାଏ । ବାଜା ସହ ପୂରା ତାଳ ଦେଇ ଖୁସିରେ ଡେଉଁଥାଏ ।

ମୋଟ ଉପରେ ଇଉରିଦ୍‌ମିକ୍‌ସ୍‌ର ଲକ୍ଷ୍ୟ ଥିଲା ମନ ଓ ଦେହକୁ ତାଳ ଜ୍ଞାନ ଦେବା । ଏହା ଫଳରେ ମନ ଓ ଦେହ ମଧ୍ୟରେ ଏକ ସମନ୍ୱୟ ଆସି ପାରିବ, ପିଲାର କଳ୍ପନା ଶକ୍ତି ଓ ସୃଜନଶୀଳତାର ବି ସଙ୍ଗମ ଘଟିବ ।

ତୋତୋ-ଚାନ୍ ପ୍ରଥମ ଥର ସ୍କୁଲକୁ ଆସିଲା ବେଳେ ମା'ଙ୍କୁ ପଚାରିଥିଲା ଫାଟକ ଉପରେ ଲେଖାଥିବା 'ତୋମୋଏ'ର ମାନେ କ'ଣ ? 'ତୋମୋଏ' ହେଉଛି ଗୋଟିଏ ଅତି ପୁରୁଣା ସଙ୍କେତ । ତା'ର ଆକାର ଗୋଟିଏ 'କମା'(,) ଭଳି । ପ୍ରଧାନ ଶିକ୍ଷକ ତାଙ୍କ ସ୍କୁଲ ପାଇଁ ଏହାକୁ ନେଇ ଏକ ପାରମ୍ପରିକ ସଙ୍କେତ ଗଢିଥିଲେ । ଏଥିରେ ଧଳା



ଓ କଳା ରଙ୍ଗର ଦୁଇଟି 'ତୋମୋଏ' ମିଶି ଗୋଟିଏ ପୂରା ଗୋଲ କରୁଥିଲେ ।

ଏହା ପିଲାଙ୍କ ପ୍ରତି ତାଙ୍କର ଲକ୍ଷ୍ୟ ସୂଗ୍ରଉ ଥିଲା ସମାନ ଓ ସମନ୍ୱିତ ଭାବରେ ଦେହ ଓ ମନର ବିକାଶ । ଇଉରିଦ୍‌ମିକ୍‌ସ୍ ପିଲାଙ୍କର ସ୍ୱାଭାବିକ ବିକାଶ ଦିଗରେ ଭଲ ଫଳ ଦେବ ବୋଲି ପ୍ରଧାନ ଶିକ୍ଷକ ବିଶ୍ୱାସ କରୁଥିଲେ । ତେଣୁ ତାଙ୍କ ସ୍କୁଲ ପାଠ୍ୟକ୍ରମରେ ସେ ଏହାକୁ ରଖିଥିଲେ । ଏହା ପିଲାର ବିକାଶରେ ବଡମାନଙ୍କ ପ୍ରଭାବ କମାଇ ପାରିବ ବୋଲି ସେ ଭାବୁଥିଲେ ।

ସେ ସମୟରେ ଛପାବହି ଉପରେ ଜୋର ଦେଉଥିବା ଶିକ୍ଷା ପଦ୍ଧତିକୁ ପ୍ରଧାନ ଶିକ୍ଷକ ବିରୋଧ କରୁଥିଲେ । ବହିକୁ ଶିକ୍ଷାର ଆଧାର କରିବା ଫଳରେ ପିଲା ପ୍ରକୃତିଠାରୁ ଦୂରେଇ ଯାଉଛି । ଭାବଗତ ସମ୍ପର୍କ ନରହିବା ଫଳରେ ପ୍ରକୃତିକୁ ସେ ବୁଝିପାରୁ ନାହିଁ କିମ୍ବା ସେଥିରୁ ସେ ଉଚ୍ଚତର ଉତ୍ସାହ ପାଇପାରୁ ନାହିଁ ।

କେଉଁ ଆଦିମ କାଳରୁ ଦୁନିଆର କେତେ କେତେ ମଣିଷ ବେଙ୍ଗଟିଏ ପାଣିକୁ ଡେଇଁବାର ଦେଖିଥିବେ । କିନ୍ତୁ କେବଳ କବି ବାଶୋ ତାକୁ ରୂପ ଦେଲେ !

"ଶୁଣ ! ବେଙ୍ଗଟିଏ
ଡେଉଁଛି ନୀରବତାର
ସେହି ପ୍ରାଚୀନ ପୋଖରୀକୁ !"

ସେହିଭଳି ଯୁଗ ଯୁଗର ବିଶ୍ୱ ଇତିହାସରେ ବାମ୍ଫରେ କେଟ୍‌ଲ୍‌ର ଘୋଡଣୀ ନାଚିବା ଘଟଣା ଦେଖିବାରେ ୱାଟ୍ ପ୍ରଥମ ବ୍ୟକ୍ତି ନଥିଲେ। କିମ୍ବା ଗଛରୁ ସେଓ ଖସିବାଟା ପ୍ରଥମେ ନିଉଟନ୍ ଦେଖି ନଥିଲେ ।

ପ୍ରଧାନ ଶିକ୍ଷକ କହୁଥିଲେ ଯେ ଆମ ପାଇଁ ଉଦ୍‌ବେଗର ବିଷୟ ହେଉଛି, ଆଖି ଥାଇ ସୌନ୍ଦର୍ଯ୍ୟକୁ ନଦେଖିବା, କାନ ଥାଇ ସଙ୍ଗୀତ ନଶୁଣିବା, ମନ ଥାଇ ସତକୁ ଗ୍ରହଣ ନକରିବା, ହୃଦୟ ଥାଇ ଭାବ ନଥିବା ବା ହୃଦୟଙ୍ଗମ ନକରିବା ବା ସେଥିରେ ଆଲୋଡନ ନଆସିବା ଇତ୍ୟାଦି !

ତୋତୋ-ଚ୍ୱାନ୍ ପାଇଁ ଡେଇଁବା ଓ ଇସାଡୋରା ଡନ୍‌କାନ ପରି ଖାଲି ପାଦରେ ଦୌଡିବା ଅତି ଆନନ୍ଦର କଥା ଥିଲା । ସେ ବିଶ୍ୱାସ କରିପାରୁ ନଥିଲା ଯେ ଏସବୁ ବି ସ୍କୁଲ ଶିକ୍ଷାର ଅଂଶ ।

## ମୁଁ କେବଳ ଏତିକି ଚାହେଁ

ତୋତୋ-ଚ୍ୱାନ୍ ପାଇଁ ଏହା ମେଳାକୁ ଯିବାର ପ୍ରଥମ ଅନୁଭୂତି ଥିଲା । ତା'ର ଆଗ ସ୍କୁଲ ପାଖରେ ସେନ୍‌ଜୋକୁ ପୋଖରୀର ମଝିରେ ଗୋଟିଏ ଛୋଟ ଦ୍ୱୀପ ଥିଲା ସେଠାରେ ସୌନ୍ଦର୍ଯ୍ୟ ଓ ସଙ୍ଗୀତର୍ ଦେବୀ ବେଣ୍ଟେନ୍‌ଙ୍କ ପାଇଁ ଗୋଟିଏ ମନ୍ଦିର ରହିଥିଲା। ପ୍ରତିବର୍ଷ ସେଠାରେ ଗୋଟିଏ ମେଳା ହୁଏ । ବାପା, ମା'ଙ୍କ ସହ ତୋତୋ-ଚ୍ୱାନ୍ ମିଞ୍ଜି ମିଞ୍ଜି ଆଲୁଅରେ ରାସ୍ତା ବାରି ମେଳାକୁ ଚାଲିଯାଏ। ମେଳା ଜାଗାଟା କିନ୍ତୁ ଉଜ୍ଜ୍ୱଳ ଆଲୁଅରେ ଝଲସୁ ଥାଏ । ସେଠାରେ ପହଞ୍ଚି ତୋତୋ-ଚ୍ୱାନ୍ ଲୋକ ଗହଳିରେ ମୁଣ୍ଡ ଗୁଞ୍ଜି ସବୁ ଦୋକାନକୁ ଉଙ୍କୁଥାଏ। ଚାରିଆଡେ ଟ୍ୱେଁ, ଘୁଁ, ଠୋ, ଠା ଓ ଆଉ କେତେ ନୂଆ ଶବ୍ଦ । କେତେ ରକମର ବାସ୍ନା, ସବୁ କିଛି ନୂଆ ଓ ଅଜଣା ।

କେଉଁଠି ପିପରମେଣ୍ଟ ଭରାଥିବା ଖେଳନା, ଚିଲମ୍ ଉପରେ ବିଲେଇ, କୁକୁରଙ୍କ ଚିତ୍ର ଲାଗି ବିକ୍ରି ହେଉଥିଲା। ଆଉ କେଉଁଠି ଖଜା, ମିଠେଇ ବା ଶୁନ୍‌ପାପୁଡି ମିଳୁଥିଲା। ପେଙ୍ଗୁନଳୀ ଓ ବାଉଁଶର ଅନ୍ୟ ଖେଳନା ସବୁ ବି ବିକ୍ରି ଚାଲିଥିଲା ।

ରାସ୍ତା କଡରେ ଲୋକଟିଏ ଖଣ୍ଡା ଗିଳି ପକାଉଥାଏ ଓ କାଚ ଖାଇ ନେଉଥାଏ। ଆଉ ଗୋଟିଏ ଲୋକ କିଛି ଗୁଣ୍ଡ ବିକ୍ରି କରୁଥାଏ । ଏହାକୁ ଟିପରେ ନେଇ ବେଲାର ଧାରରେ ଘଷିଲେ ଜୋର ଶବ୍ଦ ବାହାରୁଥିଲା । କେତେ ପ୍ରକାରର ମ୍ୟାଜିକ ଖେଳ ବି ଚାଲିଥାଏ - କେଉଁଠି ସୁନେଲୀ ମୁଦି ଛୁଆଁଇଲେ ଟଙ୍କା ଉଭେଇ ଯାଉଥାଏ । କେଉଁଠି ଖିରା ପଡିଲେ ଚିତ୍ର ବାହାରୁଥିଲା କିମ୍ବା ପାଣିରେ ପକାଇ ଦେଲେ କାଗଜର ଫୁଲ ଫୁଟି ଉଠୁଥିଲା। ତୋତୋ-ଚ୍ୱାନ୍ ଏଣେତେଣେ ଚାହିଁ ଚାଲିଥାଏ । ହଠାତ୍ ସେ ଅଟକି ରହିଗଲା ।

"ଓଃ, ଦେଖ !", ଗୁଡାଏ ଚ୍ୱିଁ ଚିଁ କରୁଥିବା ହଳଦିଆ କୁକୁଡା ଛୁଆମାନଙ୍କୁ ଦେଖି ସେ ଖୁସିରେ ପାଟି କରି ଉଠିଲା ।

"ମୁଁ ଗୋଟେ ନେବି", ମା', ବାପାଙ୍କୁ ଟାଣି ସେ କହିବାରେ ଲାଗିଲା, "ମା' ମୋ ପାଇଁ ଗୋଟେ କିଣିଦିଅ !"

କୁକୁଡ଼ା ଛୁଆଗୁଡ଼ିକ ତୋତୋ-ଗ୍ୱିନ୍ ଆଡ଼କୁ ବୁଲି ମୁଣ୍ଡଟେକି ତାକୁ ଗ୍ୱହିଁଲେ ଓ ତାଙ୍କ କୁନି କୁନି ଦେହଗୁଡ଼ିକୁ ଝାଡ଼ି ଆହୁରି ଜୋରରେ ଚିଁ,ଚିଁ କଲେ ।

"ସେମାନେ କି ସୁନ୍ଦର !", ତୋତୋ-ଗ୍ୱିନ୍ ଭାବିଲା ସେ ତା' ଭାବନାରେ କେବେ ଏତେ ଆକର୍ଷଣୀୟ ଜିନିଷ ଦେଖିନାହିଁ । ସେ ନଇଁ ପଡ଼ି ସେମାନଙ୍କ ପାଖରେ ବସିଲା ।

"ଦିଅ", କହି ସେ ପୁଣି ମା, ବାପାଙ୍କୁ ଗ୍ୱହିଁଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ବାପା, ମା' ତାକୁ ଶୀଘ୍ର ସେଠାରୁ ଟାଣି ନେବାକୁ ବସିଲେ ।

"କିନ୍ତୁ ତୁମେ ମୋତେ କହିଥିଲ ଯେ ମୋ ପାଇଁ କ'ଣ କିଣି ଦେବ ବୋଲି । ମୋର ଖାଲି ଏଇଟା ହିଁ ଲୋଡ଼ା ।"

"ନା ମା' !" ମା' ଧୀରେ କହିଲେ, "ଏହି ଟିକି ଛୁଆଗୁଡ଼ା ବେଶୀ ଦିନ ବଞ୍ଚିବେନାହିଁ ।"

"କାହିଁକି ?", ତୋତୋ-ଗ୍ୱିନ୍ ପଗ୍ୱରୁ ପଗ୍ୱରୁ କାନ୍ଦ କାନ୍ଦ ହୋଇଗଲା ।

ବାପା ତାକୁ କଡ଼କୁ ଟାଣିନେଲେ ଯେପରି କି ଦୋକାନୀଟି ଶୁଣି ପାରିବନି । ଆଉ ବୁଝେଇ ଦେଲେ, "ତୋତ୍‌ସ୍କି, ସେମାନେ ଏବେ ସୁନ୍ଦର ଦିଶୁଛନ୍ତି, କିନ୍ତୁ ସେମାନେ ବହୁତ ଦୁର୍ବଳ । ତେଣୁ ବେଶୀ ଦିନ ବଞ୍ଚିବେନି । ଛୁଆଟି ମରିଗଲେ ତୁ ଖାଲି କାନ୍ଦିବୁ, ସେଥିପାଇଁ ଆମେ କହୁଛୁ ଯେ ନେବାନି ।"

କିନ୍ତୁ ତୋତୋ-ଗ୍ୱିନ୍ ପୂରା ଠିକ୍ କରିସାରିଥିଲା ଯେ ସେ ଗୋଟିଏ ନେବ, ତେଣୁ ଜମା ଶୁଣିଲାନି ।

"ମୁଁ ତାକୁ ମରିବାକୁ ଦେବିନି, ମୁଁ ତା'ର ଯତ୍ନ ନେବି ।"

ମା' ଓ ବାପା ତାକୁ ସେହି ବାକ୍ସ ପାଖରୁ ଟାଣିବାରେ ଲାଗିଲେ, କିନ୍ତୁ ସେ ଲୋଭରେ ଛୁଆଗୁଡ଼ିକୁ ଗ୍ୱହିଁବାରେ ଲାଗିଲା ଓ ଛୁଆଗୁଡ଼ିକ ମଧ୍ୟ ସେପରି ତାକୁ ଗ୍ୱହିଁ ରହିଲେ, ଆହୁରି ଜୋରରେ ରାବିବାରେ ଲାଗିଲେ । ତୋତୋ-ଗ୍ୱିନ୍ ଜିଦ୍ ଧରି ବସିଥାଏ ଯେ ସେ ଖାଲି କୁକୁଡ଼ା ଛୁଆଟିଏ ହିଁ ନେବ । ସେ ବାପା, ମା'ଙ୍କୁ ଅଳି କରିବାରେ ଲାଗିଲା, "ମୋ ପାଇଁ ଏଥିରୁ ଗୋଟିଏ କିଣିଦିଅ ନା !"

ମା' ଓ ବାପା ବି ବଦଳୁ ନଥା'ନ୍ତି ।

"ଆମେ ଏଥିରୁ ଗୋଟିଏ ଜମା ନେବୁନି, କାହିଁକି ନା ଶେଷରେ ତୋତେ ତା' ପାଇଁ କାନ୍ଦିବାକୁ ହେବ ।"

ତୋତୋ-ଗ୍ୱିନ୍ କାନ୍ଦିବାରେ ଲାଗିଲା ଓ ଘରକୁ ଫେରିଯିବାକୁ ବାହାରିଲା, ତା'ର ଆଖିରୁ ଲୁହଧାର ବୋହି ଯାଉଥାଏ । ସେମାନେ ପୁଣି ଅନ୍ଧାରିଆ ରାସ୍ତାକୁ ଆସିଯିବା ପରେ ସେ ସକେଇ ସକେଇ କହିଲା, "ମୁଁ କେବେ ବି ତମକୁ କିଛି ଏତେ ମାଗିନାହିଁ । ମୁଁ ଆଉ କେବେ ମୋ ପାଇଁ କିଛି କିଣିବାକୁ କହିବିନି, ମୋ ପାଇଁ ଏଥର ଖାଲି

ଗୋଟିଏ ଛୁଆ କିଣି ଦିଅ ନା !''

ଶେଷରେ ମା', ବାପା ଆଉ ପାରିଲେନି ଏହା ଠିକ୍ ବର୍ଷା ଛାଡି ଯିବା ପରେ ସୂର୍ଯ୍ୟ ବାହାରିଲା ଭଳି ହେଲା । ଯେତେବେଳେ ସେ ଛୋଟିଆ ବାକ୍ସରେ ଦୁଇଟି କୁକୁଡା ଛୁଆ ଧରି ଘରକୁ ଫେରିଲା ତା'ର ମୁହଁରେ ହସ ଉଛୁଳି ପଡୁଥାଏ ।

ତା'ପରଦିନ ମା' ଜଣେ ବଢେଇ ଡକାଇ ଗୋଟିଏ ଜାଲି ବାକ୍ସ ତିଆରି କରେଇଲେ । ଛୁଆଗୁଡିକୁ ଉଷୁମ ରଖିବା ପାଇଁ ସେଥିରେ ଗୋଟିଏ ଆଲୁଅ ଲାଗିଥିଲା । ତୋଓ୍ବୋ-ଗ୍ରିନ୍ ଛୁଆଗୁଡିକୁ ଦିନସାରା ଦେଖିଲା । ଏହି ହଳଦିଆ ଛୁଆଗୁଡିକ ଖୁବ୍ ଗୁଲ୍‌ଗାଲିଆ ଥିଲେ । କିନ୍ତୁ ହାୟ, ଚତୁର୍ଥ ଦିନ ଗୋଟିଏ ଛୁଆ ଆଉ ହଲଚଲ ହେଲାନି । ପଞ୍ଚମ ଦିନ ଆରଟି ମଧ୍ୟ । ସେ ତାଙ୍କୁ କେତେ ଥାପୁଡେଇଲା ଓ ଡାକିଲା ପରେ ବି ତାଙ୍କ ପାଟି ଖୋଲିଲାନାହିଁ । ସେ ବହୁତ ସମୟ ଯାଏଁ ଜଗି ବସିଲା, କିନ୍ତୁ ସେମାନେ ଆଉ ଆଖି ଖୋଲିଲେନାହିଁ । ମା', ବାପା ଯାହା କହୁଥିଲେ ସେଇଆ ହିଁ ହେଲା । ସେ ଲୁଚେଇ ଲୁଚେଇ କାନ୍ଦିଲା । ବଗିଚ୍ଚାରେ ଗାତଟିଏ ଖୋଳିଲା ଓ ଦୁଇଟି ଯାକ ମଲା ଛୁଆଙ୍କୁ ପୋତି ଦେଲା । ଆଉ ସେଠାରେ ଛୋଟ ଫୁଲଟିଏ ଥୋଇ ଦେଲା । ଯେଉଁ ବାକ୍ସଟିରେ ସେମାନେ ଥିଲେ ତାହା ଏବେ ଖୁବ୍ ବଡ ଓ ଫାଙ୍କା ଦେଖାଗଲା । ବାକ୍ସ କୋଣରେ ଗୋଟିଏ ଛୋଟ ହଳଦିଆ ପର ଦେଖି ତା'ର ଯାତ୍ରା କଥା ମନେ ପଡିଲା । କିପରି ତାକୁ ଦେଖି ଛୁଆଗୁଡିକ ଚିଁ ଚିଁ ହେଉଥିଲେ । ସେ ଦାନ୍ତ କାମୁଡି ଚୁପ୍‌ଚୁପ୍ କାନ୍ଦିବାରେ ଲାଗିଲା ।

ସେ ତା' ଜୀବନରେ କେବେ କୌଣସି ଜିନିଷକୁ ପାଇବାକୁ ଏପରି ଚାହିଁ ନଥିଲା । ପାଇଲା ପରେ ତାହା ଏତେ ଶୀଘ୍ର ଚାଲିଗଲା । ଏହା ତା' ପାଇଁ ହରାଇବା ଓ ବିଚ୍ଛେଦର ପ୍ରଥମ ଅନୁଭୂତି ଥିଲା ।

## *ସବୁଠାରୁ ଖରାପ ଜାମା*

ପ୍ରଧାନ ଶିକ୍ଷକ ପିଲାମାନଙ୍କୁ ତାଙ୍କର ସବୁଠାରୁ ଖରାପ ଜାମା ପିନ୍ଧାଇ ପଠାଇବାକୁ ବାପା, ମା'ମାନଙ୍କୁ କହୁଥିଲେ । ତା'ହେଲେ ଜାମା ଚିରିଗଲେ ବା କାଦୁଅ ହେଲେ ପିଲାଙ୍କର ଗାଳି ଖାଇବାର ଡର ନଥିବ । ତେଣୁ ପିଲାମାନେ ମନ ଖୋଲି ସବୁ ଖେଳରେ ମିଶି ପାରିବେ । ତୋମୋଏ ପାଖରେ ଆଉ ଗୋଟିଏ ପ୍ରାଥମିକ ସ୍କୁଲ ଥିଲା ଯେଉଁଠି ପୁଅ, ଝିଅ ସମସ୍ତେ ବିଶେଷ ଧରଣର ଜାମା ପଟାରେ ସଜ ହୋଇ ସ୍କୁଲ ଆସନ୍ତି ।

ତୋମୋଏର ପିଲାମାନେ କିନ୍ତୁ ସବୁବେଳେ ସାଧାରଣ ପୋଷାକ ପିନ୍ଧି ସ୍କୁଲକୁ ଆସୁଥିଲେ । ନିଜ ପୋଷାକ ବିଷୟରେ କିଛି ନଭାବି ସେମାନେ ମନଭରି ଯେ କୌଣସି ଖେଳ ଖେଳିବାକୁ ଅନୁମତି ପାଇଥିଲେ । ସେତେବେଳେ ପ୍ୟାଣ୍ଟ ପାଇଁ ଅତି ଟାଣୁଆ କନା ମିଳୁ ନଥିଲା । ତେଣୁ ସବୁ ପୁଅଙ୍କ ପ୍ୟାଣ୍ଟରେ ତାଳି ପଡିଥିଲା । ଝିଅମାନଙ୍କର ପୋଷାକ ଯେତେ ସମ୍ଭବ ମୋଟା କନାରେ କରାଯାଉଥିଲା । ଅନ୍ୟମାନଙ୍କ ବଗିଚ୍ଚର ବାଡ ତଳେ ଗଳିକରି ଯିବା ତୋତ୍ତୋ-ଚ୍ଚନ୍‌ର ଗୋଟିଏ ପ୍ରିୟ ଅଭ୍ୟାସ ଥିଲା। ତାକୁ ଜାମା ବିଷୟରେ ଭାବିବାକୁ ପଡୁ ନଥିବାରୁ ତାକୁ ବେଶ୍ ସୁହାଇଲା। ସେତେବେଳେ ବହୁତ କଣ୍ଟାତାର ବାଡ ଥିଲା ଓ କେତେ ଜାଗାରେ ଏହି ତାର ମାଟିର ବେଶ୍ ପାଖରେ ରହୁଥିଲା। ଏହା ତଳେ ଯିବାକୁ ହେଲେ କୁକୁର ଭଳି ମାଟି ଖୋଳି ବାଟ କରିବାକୁ ପଡିବ। ତୋତ୍ତୋ-ଚ୍ଚନ୍ ଯେତେ ସାବଧାନ ହେଲେ ବି ସବୁବେଳେ ତା'ର ପୋଷାକ କଣ୍ଟାରେ ଲାଗି ଚିରି ଯାଉଥିଲା । ଥରେ ସେ ଅତି ପୁରୁଣା ପୋଷାକଟିଏ ପିନ୍ଧିଥିଲା । ତାହା କଣ୍ଟାରେ ଲାଗି ତଳ ଯାଏଁ ଚିରିଗଲା । ସେ ଜାଣିଥିଲା ଯେ ଏହା ପୁରୁଣା ହେଲେ ବି ମା'ଙ୍କୁ ଏଇଟି ବହୁତ ଭଲ ଲାଗୁଥିଲା, ତେଣୁ ତୋତ୍ତୋଚ୍ଚନ୍ ଘରେ କ'ଣ କହିବ ସେକଥା ଭାବିବାରେ ଲାଗିଲା । କଣ୍ଟା ବାଡରେ ଲାଗି ଚିରିଛି ବୋଲି କହିବାକୁ ତା'ର ସାହସ ହେଲାନି । ତେଣୁ ସେ ଗୋଟିଏ ମନଗଢା ଘଟଣା ଫାନ୍ଦିବାରେ ଲାଗିଲା । ଘରେ ପହଞ୍ଚି ସେ ମିଛରେ କହିଲା, "ମୁଁ ଫେରିଲାବେଳେ ଦଳେ ଅଜଣା ପିଲା ମୋ ଉପରକୁ ଛୁରୀ ଫିଙ୍ଗିଲେ। ତେଣୁ ମୋ ଜାମାଟି ଏପରି ଚିରିଗଲା ।" କିନ୍ତୁ କହିଲାବେଳେ ସେ ଭାବୁଥିଲା ଏ ବିଷୟରେ ଅଧିକ ପ୍ରଶ୍ନର ଉତ୍ତର ସେ କିପରି ଦେବ ।

ଭାଗ୍ୟକୁ ମା' କେବଳ ଏତିକି ହିଁ କହିଲେ, "ଏଇଟା ବଡ କଷ୍ଟର କଥା ହୋଇଥିବ ।"

ତୋତ୍ତୋ-ଚ୍ଚନ୍ ଶାନ୍ତିରେ ଦୀର୍ଘଶ୍ୱାସ ଛାଡିଲା । ମା' ନିଶ୍ଚିତରୂପେ ବୁଝିଗଲେ ଯେ ସେପ୍ରକାରର ପରିସ୍ଥିତିରେ ସେ ତା' ମା'ଙ୍କର ପ୍ରିୟ ପୋଷାକଟିକୁ ରକ୍ଷା କରି ପାରିଲାନାହିଁ।

ଅବଶ୍ୟ ଛୁରୀ ବିଷୟରେ ତା' କଥାକୁ ମା' ବିଶ୍ୱାସ କଲେନାହିଁ । ତା' ପଛକୁ ଛୁରୀ ଫୋପଡା ଯାଇଥିଲେ ପୋଷାକ ଚିରିବା ସଙ୍ଗେ ସଙ୍ଗେ ନିଜେ ବି ଖଣ୍ଡିଆ ଖାବରା ହୋଇ ଯାଇଥା'ନ୍ତା । ଆଉ ତୋତ୍ତୋ-ଚ୍ଚନ୍ ଏହି ଘଟଣାରେ ଜମା ଛାନିଆ ଜଣା ପଡୁ ନଥିଲା । ମା' ସାଙ୍ଗେ ସାଙ୍ଗେ ବୁଝିଗଲେ ଯେ ଏହା ପୂରା ମିଛ । ଯାହା ହେଲେ ବି ଏତେ ବଡ ମିଛ କହିବା ତୋତ୍ତୋ-ଚ୍ଚନ୍ ପାଇଁ ସ୍ୱାଭାବିକ ନଥିଲା । ଏହି ପୋଷାକଟି ଚିରିଯିବା ଯୋଗୁଁ ମା'ଙ୍କ ମନ ଦୁଃଖୀ ହେବ ଜାଣି ତୋତ୍ତୋ-ଚ୍ଚନ୍ ଏଭଳି କହିଛି । ସେ ତାଙ୍କ ମନ ଜିତିବାକୁ ଚେଷ୍ଟା କରିଥିବାରୁ ତାଙ୍କୁ ଖୁସି ଲାଗିଲା । କିନ୍ତୁ ଅନେକ ଦିନ ଧରି ଗୋଟିଏ କଥା ସେ ଜାଣିବାକୁ ଚ୍ଚାହୁଁଥିଲେ । ତାହା ଜାଣିବା ପାଇଁ ଏହା ଏକ ଭଲ ସୁଯୋଗ ମନେ ହେଲା ।

"ମୁଁ ବୁଝିପାରୁଛି ଯେ ଛୁରୀ ଦ୍ୱାରା ଆଜି କିପରି ତୋ ପୋଷାକ ଚିରି ଯାଇଛି", ମା' କହିଲେ, "ହେଲେ ଅନ୍ୟ ଦିନମାନଙ୍କରେ ତୋର ପ୍ୟାଣ୍ଟ କିପରି ଚିରିଯାଏ ?"

ମା' କେବେ ବି ବୁଝି ପାରୁନଥିଲେ କିପରି ତୋତ୍ତୋ-ଗ୍ୱାନ୍‌ର ଝାଲର ଲାଗିଥିବା ପ୍ୟାଣ୍ଟଗୁଡ଼ିକ ପ୍ରତିଦିନ ପଛଆଡୁ ଚିରି ଯାଉଥିଲା । ପ୍ୟାଣ୍ଟଗୁଡ଼ିକ କାଦୁଅ ହୋଇଯିବା ବା ଖସଡାରେ ଖସି ଖସି ପତଳା ହୋଇଯିବା କଥା ସେ ବୁଝି ପାରନ୍ତେ । କିନ୍ତୁ ସେଗୁଡ଼ିକ କିପରି ଖଣ୍ଡ ଖଣ୍ଡ ହୋଇ ଚିରି ଯାଉଥିଲା

ତୋତ୍ତୋ-ଗ୍ୱାନ୍ ଏ ବିଷୟରେ କ୍ଷଣେ ଭାବିଲା ଓ କହିଲା, "ଦେଖ ତମେ ଯେତେବେଳେ ଗୋଟିଏ ବାଡ ତଳେ ଗଳିକରି ଯିବ, ସେତେବେଳେ ସ୍କର୍ଟଟା କଣ୍ଟାରେ ଲାଗିଯିବ ସ୍କର୍ଟରୁ କଣ୍ଟା ଛଡାଇବା ପାଇଁ ପଛେଇ ପଛେଇ ଫେରିବାକୁ ହେବ । ଆଉ ଯେତେବେଳେ ଫେରି ବାହାରି ଆସିବ, ସେତେବେଳେ ପ୍ୟାଣ୍ଟ ପଛରେ କଣ୍ଟା ଲାଗିଯିବ । ଆଉ ତୁମକୁ ଏପରି କରିବାକୁ ପଡିବ । "କ୍ଷମା କରିବେ ମୁଁ ଆସି ପାରେକି ?" ଆଉ "ଆଚ୍ଛା ଶୁଭ ବିଦାୟ ।" ବାଡ ତଳେ ଗଳିବା ସମୟରେ ପ୍ୟାଣ୍ଟ ଓ ଜାମା ଚିରିବା ପୂରା ସ୍ୱଭାବିକ ।"

ମା' ଠିକ୍ କରି ବୁଝିପାରିଲେନି, କିନ୍ତୁ କଥାଟା ବଡ ମଜା ଲାଗୁଥାଏ । ସେ ପଚାରିଲେ, "ଏଇଟା କ'ଣ ଏତେ ମଜା ଲାଗେ ?" ଏପରି ପ୍ରଶ୍ନରେ ଆଶ୍ଚର୍ଯ୍ୟ ହୋଇ ତୋତ୍ତୋ-ଗ୍ୱାନ୍ କହିଲା, "ତମେ କରିକି କାହିଁକି ଦେଖୁନ ? ଏଥିରେ ବହୁତ ମଜା ହୁଏ, ତମର ମଧ୍ୟ ପ୍ୟାଣ୍ଟ ଚିରିଯିବ ।"

ଏହି ଖେଳଟି ଯାହା ତୋତ୍ତୋ-ଗ୍ୱାନ୍‌କୁ ଏତେ ବେଶୀ ଖୁସି ଦେଉଥିଲା ସେଇଟି ଏପରି ଥିଲା ।

ପ୍ରଥମେ ତୁମକୁ ବାଡ ଘେରା ଗୋଟିଏ ଖୋଲା ଜାଗା ବାଛିବାକୁ ପଡିବ । "ମୁଁ ଆସିପାରେ କି ?", କହି କଣ୍ଟା ତାରଟିକୁ ଟେକି ଧରି ତଳେ ଗୋଟିଏ ଗାତ ଖୋଳି ସେ ଭିତରେ ଗଳି ଆଗକୁ ଯିବାକୁ ପଡିବ । ଭିତରେ ପହଞ୍ଚିବା ପରେ ଆଉ ଗୋଟିଏ ଜାଗାରେ କଣ୍ଟା ତାର ଟେକି, ତା' ତଳେ ଗାତ ଖୋଳି ପଛୁଆ ଗୁରୁଣ୍ଡି ବାହାରିବାକୁ ହେବ । ବାହାରି ଆସିଲା ପରେ କହିବାକୁ ପଡିବ, "ଆଚ୍ଛା ଏବେ ମୁଁ ଗ୍ୱଲିଲି ।" ଏଥର ମା' ପରିଷ୍କାର ଭାବେ ବୁଝିପାରିଲେ ଯେ ସେ ଯେତେବେଳେ ପଛୁଆ ବାହାରୁଥିଲା ତା' ସ୍କର୍ଟ ଉପରକୁ ଟେକି ହୋଇ ଯାଉଥିଲା, ଫଳରେ ପ୍ୟାଣ୍ଟଟି କଣ୍ଟା ତାରରେ ଲାଖିଯାଉଥିଲା । ଏପରି ଥରକୁ ଥର ବାଡ ତଳେ ଗୁରୁଣ୍ଡି ଭିତର ବାହାର ହେବା ଫଳରେ ସ୍କର୍ଟ ଓ ପ୍ୟାଣ୍ଟ ଅନେକ ଥର ଚିରୁଥିଲା । ତୋତ୍ତୋ-ଗ୍ୱାନ୍ ଖୁସିରେ ବାଡର ଏ ମୁଣ୍ଡରୁ ସେମୁଣ୍ଡ ଯାଏଁ ଆଗ ପଛ ହେଉଥାଏ । ତେଣୁ ଏଥିରେ ପ୍ୟାଣ୍ଟ ଚିରିବା ଜମା ଆଶ୍ଚର୍ଯ୍ୟଜନକ ନୁହେଁ ।

ବଡମାନେ କେବେ ବି ଏହାକୁ ଖେଳ ବା ମଜାର କାମ ବୋଲି ଭାବିବେ ନାହିଁ । କିନ୍ତୁ ପିଲାଙ୍କ ପାଇଁ ଏହା କେତେ ମଉଜିଆ ହୋଇପାରେ । ତୋତ୍ତୋ-ଗ୍ୱାନ୍‌ର ମୁଣ୍ଡ, ନଖ, କାନ ସବୁଆଡେ ଧୂଳି ମଇଳା ଦେଖି ମା'ଙ୍କ ମନରେ ବି ଟିକେ ଈର୍ଷ୍ୟା ଆସିଗଲା । ଆଉ ସେ ପ୍ରଧାନ ଶିକ୍ଷକଙ୍କୁ ପ୍ରଶଂସା ନକରି ରହିପାରିଲେନି, କାରଣ ସେ ପିଲାମାନଙ୍କୁ ଭଲ ଭାବରେ ବୁଝିଥିଲେ । ସେ ଜାଣିଥିଲେ ଯେ ପିଲା ଧୂଳିମଳି ହେବାକୁ ଭଲପାଏ । ତେଣୁ ପୋଷାକ ମଇଳା ହେବାର ଡର ସେ କାଢ଼ି ନେଇଥିଲେ ।

## ଟାକାହାଶୀ

ଦିନେ ସକାଳେ ସମସ୍ତେ ସ୍କୁଲ ପଡିଆରେ ଦୌଡୁଥିବା ବେଳେ ପ୍ରଧାନ ଶିକ୍ଷକ କହିଲେ, "ତୁମର ଜଣେ ନୂଆ ସାଙ୍ଗ ଆସିଛି । ତାଙ୍କ ନାଁ ହେଉଛି ଟାକାହାଶୀ । ସେ ପ୍ରଥମ ଶ୍ରେଣୀରେ ପଢ଼ିବ ।"

ତୋତ୍ତୋ-ଚ୍ୱାନ୍ ଆଦି ସମସ୍ତେ ଟାକାହାଶୀକୁ ଚ୍ୱାହିଁଲେ । ସେ ତା' ଟୋପି କାଢ଼ିନେଇ ମୁଣ୍ଡ ନୁଆଁଇଲା ଓ ଲାଜରା ଭାବେ କହିଲା, "ତୁମେମାନେ କେମିତି ଅଛ ?"

ପ୍ରଥମ ଶ୍ରେଣୀର ତୋତ୍ତୋ-ଚ୍ୱାନ୍ ଓ ଅନ୍ୟ ପିଲାମାନେ ବେଶ୍ ଛୋଟ ଥିଲେ, କିନ୍ତୁ ଟାକାହାଶୀ ଜଣେ ପୁଅ ହୋଇ ବି ଆହୁରି ଛୋଟ ଥିଲା । ତା'ର ପାପୁଲି, ହାତ, ଗୋଡ ସବୁ ଖୁବ୍ ଛୋଟ ଥିଲା । କିନ୍ତୁ ତା' କାନ୍ଧ ବେଶ୍ ଚଉଡା ଥିଲା । ସେ ଦୁଃଖ ଭରା ମୁହଁରେ ସେଠି ଛିଡା ହୋଇ ରହିଥାଏ । "ଚ୍ୱାଲ, ତା' ସହିତ କଥା ହେବା", ତୋତ୍ତୋ-ଚ୍ୱାନ୍, ମିୟୋ-ଚ୍ୱାନ୍ ଓ ସାକୋ-ଚ୍ୱାନ୍‌ଙ୍କୁ କହିଲା । ସେମାନେ ଟାକାହାଶୀ ପାଖକୁ ଗଲେ । ସମାନେ ତା' ପାଖରେ ପହଞ୍ଚିଲାରୁ ସେ ହସିଲା ଓ ଏମାନେ ବି ହସିଲେ । ତା'ର ଆଖି ଦୁଇଟି ବେଶ୍ ବଡ ଓ ଗୋଲ ଥିଲା । ତା' ଚ୍ୱାହାଣୀରୁ ଜଣା ପଡୁଥିଲା ଯେ ସେ କିଛି କହିବାକୁ ଚ୍ୱାହୁଁଛି ।

ତୋତ୍ତୋ-ଚ୍ୱାନ୍ ନିଜ ତରଫରୁ କହିଲା, "ତୁ ରେଳବଗିର ଶ୍ରେଣୀଗୃହ ଦେଖିବୁ ?"

"ହଁ", କହି ଟାକାହାଶୀ ମୁଣ୍ଡରେ ଟୋପି ଲଗାଇ ପ୍ରସ୍ତୁତ ହେଇଗଲା ।

ତାକୁ ଶ୍ରେଣୀ ଦେଖାଇବା ପାଇଁ ତୋତ୍ତୋ-ଚ୍ୱାନ୍ ଛୁଟିଚ୍ୱାଲିଲା ସାଙ୍ଗେ ସାଙ୍ଗେ ରେଳରେ ଚଢ଼ି ସେ କବାଟ ପାଖରୁ ଡାକିଲା, "ଆ, ଜଲ୍‌ଦି ଆ !"

ଟାକାହାଶୀ ଜୋରରେ ଚ୍ୱାଲିଲା ଭଳି ଦେଖା ଯାଉଥାଏ, କିନ୍ତୁ ତଥାପି ବେଶ୍ ପଛରେ ପଡିଯାଇଥାଏ ।

"ମୁଁ ଆସୁଛି", ସେ କୁନି ଛୁଆଙ୍କ ପରି ଦୌଡିଲା ଭଳି ଯାଉ ଯାଉ କହିଲା ।

ତୋତ୍ତୋ-ଚ୍ୱାନ୍ ବୁଝିପାରିଲା ଯେ, ପୋଲିଓ ହୋଇଥିବା ଯାସୁଆକି-ଚ୍ୱାନ୍ ପରି ଗୋଡକୁ ଟାଣି ଟାଣି ନଚ୍ୱାଲିଲେ ବି ଟାକାହାଶୀକୁ ରେଳରେ ପହଞ୍ଚିବାକୁ ସମାନ ସମୟ ଲାଗୁଛି । ସେ କିଛି ନକହି ତାକୁ ଅପେକ୍ଷା କଲା । ଟାକାହାଶୀ ଆଖି କାନ ମୁଜି ଦୌଡୁଥାଏ ତେଣୁ ତାକୁ 'ଜଲ୍‌ଦି' ବୋଲି କହିବାକୁ ଦରକାର ନଥିଲା । ତା' ଗୋଡଗୁଡିକ ବହୁତ ଛୋଟ ଓ ବଙ୍କା ଥିଲା । ଶିକ୍ଷକ ଓ ବଡମାନେ ଜାଣିଥିଲେ ଯେ ସେ ଆଉ ବଢ଼ିବନି । ସେ ଯେତେବେଳେ ଦେଖିଲା ଯେ ତୋତ୍ତୋ-ଚ୍ୱାନ୍ ତାକୁ ଦେଖୁଛି ସେ ହାତକୁ ଛାଟି ଆହୁରି ଜୋରରେ ଦୌଡିବାକୁ ଲାଗିଲା । ସେ କବାଟ ପାଖେ ପହଞ୍ଚି କହିଲା, "ତୁ ତ ବହୁତ ଜୋରରେ ଦୌଡୁଛୁ ।" ତା'ପରେ କହିଲା, "ମୁଁ ଓସାକାରୁ ଆସିଛି ।"

"ଓସାକା ?" ତୋତ୍ତୋ-ଚ୍ୱାନ୍ ଖୁସିରେ ଚିତ୍କାର କଲା । ସୁନ୍ଦର ନଗରୀ ଓସାକାକୁ ସେ କେବେ ଦେଖି ନଥିଲା । ତା' ମାମୁ ବିଶ୍ୱବିଦ୍ୟାଳୟରେ ପଢୁଥିଲେ ଓ ଯେତେବେଳେ ବି ସେ ଘରକୁ ଆସୁଥିଲେ ଦୁଇ ହାତରେ ତୋତ୍ତୋ-ଚ୍ୱାନ୍‌ର ମୁଣ୍ଡକୁ ଚିପି ଧରି ଉପରକୁ

ଟେକି ଦେଉଥିଲେ, ସେ କହୁଥିଲେ, "ମୁଁ ତତେ ଓସାକା ଦେଖାଇବି, ଦେଖିପାରୁଛୁ?"

ବଡମାନେ ସବୁବେଳେ ପିଲାଙ୍କୁ ଏପ୍ରକାରେ କହନ୍ତି । କିନ୍ତୁ ତୋତ୍ତୋ-ଗ୍ରିନ୍ ତାଙ୍କୁ ବିଶ୍ୱାସ କରୁଥିଲା । ଏମିତି କଲେ ତା' ମୁହଁର ଚମ ଜୋରରେ ଟାଣି ହୋଇଯାଉଥିଲା, ଆଖି ଦୁଇଟି ଟାଣି ହୋଇ ସେମାନଙ୍କ ଆକାର ବଦଳି ଯାଉଥିଲା ଓ କାନକୁ ବି ଜୋରରେ କାଟୁଥିଲା । ତଥାପି ସେ ବଡ ଆଶାରେ ଦୂରକୁ ଗ୍ରହିଁ ଓସାକା ଦେଖିବାକୁ ଚେଷ୍ଟା କରୁଥିଲା । କିନ୍ତୁ ସେ କେବେ ବି ଦେଖିପାରି ନଥିଲା । କିନ୍ତୁ ସେ ସବୁବେଳେ ବିଶ୍ୱାସ କରୁଥିଲା ଯେ ସେ ଦିନେ ନିଶ୍ଚୟ ଦେଖିପାରିବ, ତେଣୁ ଯେତେବେଳେ ବି ମାମୁଁ ଘରକୁ ଆସିଲେ ସେ କହିବ, "ମୋତେ ଓସାକା ଦେଖାଅ ନା", ଆଉ ଓସାକା ତା'ର ସ୍ୱପ୍ନର ରାଇଜ ହୋଇସାରିଥିଲା । ଏହି ତାକାହାଶି ସେଇଠୁ ଆସିଛି !

ସେ ତାକାହାଶିକୁ କହିଲା, "ମୋତେ ଓସାକା ବିଷୟରେ କହ ।"

"ଓସାକା ବିଷୟରେ ?" କହି ସେ ଖୁସିରେ ହସିଲା । ତା' ସ୍ୱରଟି ପରିଷ୍କାର ଓ ବଡଲୋକଙ୍କ ଭଳି ଶୁଣାଯାଉଥାଏ । ହଠାତ୍ ସ୍କୁଲ ଘଣ୍ଟି ବାଜିଲା ।

"ଓଃ, କି ଦୁର୍ଭାଗ୍ୟ", ତୋତ୍ତୋ-ଗ୍ରିନ୍ କହିଲା । ତାକାହାଶି ତା' ବ୍ୟାଗ ପଛରେ ପ୍ରାୟ ଲୁଚିଯାଉଥିଲା । ସେ ତା' ଟିକି ଦେହଟିକୁ ହଲାଇ ହଲାଇ ଗ୍ରଲିଗଲା ଓ ଯାଇ ପ୍ରଥମ ଧାଡିରେ ବସିଗଲା । ତୋତ୍ତୋ-ଗ୍ରିନ୍ ସାଙ୍ଗେ ସାଙ୍ଗେ ଯାଇ ତା' କଡରେ ବସି ପଡିଲା । ଯିଏ ଯେଉଁଠି ଗ୍ରହିଁବ ସେଠି ବସି ପାରିବା ସୁବିଧାଥିବାରୁ ସେ ଖୁସି ଥିଲା। ସେ ତାକାହାଶିକୁ ଛାଡିବାକୁ ଗ୍ରହୁଁନଥିଲା। ଏପରି ତାକାହାଶୀ ବି ତା'ର ଜଣେ ସାଙ୍ଗ ହୋଇଗଲା ।

## *ଦେଖି ଗ୍ରହିଁ ଡେଇଁବ*

ସ୍କୁଲ୍‌ରୁ ଫେରିବାବେଳେ ଘର ପାଖାପାଖି ରାସ୍ତା କଡରେ କିଛି ମଜା ଜିନିଷ ପଡିଥିବାର ତୋତ୍ତୋ-ଗ୍ରିନ୍ ଦେଖିଲା । ଏହା ଥିଲା ଗୋଟିଏ ବଡ ବାଲିଗଦା। ସମୁଦ୍ରଠୁଁ ଏତେ ଦୂରରେ ଏତେ ବାଲି ଦେଖିବା ନିଶ୍ଚୟ ଏକ ଅସାଧାରଣ କଥା । ସତରେ ସେ କ'ଣ ସ୍ୱପ୍ନ ଦେଖୁଛି ? ତୋତ୍ତୋ-ଗ୍ରିନ୍ ଉଲ୍ଲସି ଉଠିଥାଏ । ପ୍ରଥମେ ଥରେ ଆସ୍ତେ କରି ଡେଇଁ ଦେଖିଲା ତା'ପରେ ଜୋରରେ ଦୌଡି ବାଲି ଗଦାର ଠିକ୍ ମୁଣ୍ଡକୁ କୁଦି ପଡିଲା, କିନ୍ତୁ ଏହା ପ୍ରକୃତରେ ବାଲି ନଥିଲା । ଏହା ଚକଟା ଚୀନା ମାଟିର ଗଦାଟିଏ ଥିଲା । ସେ ଏହା ଭିତରେ ସ୍କୁଲ୍ ମୁଣି ଓ ଜୋତା ମୁଣି ସହ ଛାତିଯାଏଁ ବୁଡିଗଲା ଓ ଏହି ଅଠାଳିଆ ମାଟି ଭିତରେ ଗୋଟିଏ ମୂର୍ତ୍ତି ଭଳି ଦେଖାଗଲା । ସେ ସେଥିରୁ ବାହାରି

ଆସିବା ପାଇଁ ଯେତେ ଅଧିକ ଭିଡ଼ି ହେଲା, ତା' ପାଦ ସେତିକି ବେଶୀ ଖସିଗଲା । ତା' ଜୋତା ଖସିବା ଉପରେ ପହଞ୍ଚିଲା । ପୂରା ନବୁଡ଼ିଯିବା ପାଇଁ ସେ ସାବଧାନ ହେଲା । ଆଉ କିଛି କରି ନପାରି ସେ ସ୍ଥିର ହୋଇ ରହିଲା । ଖାଲି ବାଁ ହାତରେ ସେ ସେହି କାଦୁଅ ଭିତରେ ତା' ମୁଣିଟିକୁ ଜାବୁଡ଼ି ଧରିଥାଏ । ଜଣେ ଦି ଜଣ ଅଜଣା ସ୍ତ୍ରୀ ଲୋକ ସେ ବାଟେ ଯାଉଥିଲେ । ସେ ତାଙ୍କୁ ଧୀରେ ପାଟିରେ ଡାକିଲା, "ଟିକେ ଶୁଣିବେ...." କିନ୍ତୁ ସେ ଖେଳୁଛି ଭାବି ହସି ଦେଇ ସେମାନେ ନିଜ ରାସ୍ତାରେ ଚାଲିଗଲେ ।

ଦେଖୁ ଦେଖୁ ବେଳ ବୁଡ଼ି ରାତି ହେବାକୁ ବସିଲା । ମା' ଖୋଜି ଖୋଜି ସେଠି ପହଞ୍ଚିଲେ । କାଦୁଅ ଗଦା ଭିତରୁ ତୋତୋ-ଗ୍ରିନ୍‌ର ମୁଣ୍ଡଟି ବାହାରି ଥିବା ଦେଖି କାବା ହୋଇଗଲେ । ମା' ପ୍ରଥମେ ଖାଲି ହାତରେ ତାକୁ ଟାଣି ଟାଣି ବାହାର କରିବାକୁ ଚେଷ୍ଟା କଲେ କିନ୍ତୁ ତାଙ୍କ ଗୋଡ ଧୀରେ ଧୀରେ କାଦୁଅ ଭିତରକୁ ପଶିବାକୁ ଲାଗିଲା । ତେଣୁ ସେ ଖୁଣ୍ଟଟିଏ ଆଣିଲେ । ତୋତୋ-ଗ୍ରିନ୍‌କୁ ଏହାର ଗୋଟିଏ ମୁଣ୍ଡ ଧରେଇ ସେ ଆର ମୁଣ୍ଡଟିକୁ ଟାଣିବାରେ ଲାଗିଲେ ।

ଧଳା କାଦୁଅ ବୋଲି ହୋଇ ତୋତୋ-ଗ୍ରିନ୍ ଗୋଟିଏ ପଲସ୍ତରା ହୋଇଥିବା କାନ୍ଥ ଭଳି ଦେଖା ଯାଉଥାଏ ।

ମା କହିଲେ, "ମୁଁ ତୋତେ ଆଗରୁ ଥରେ କହିଥିଲି ନାଁ କିଛି ଅଜଣା ଜିନିଷ ଭିତରକୁ ସିଧାସଳଖ କେବେ ଡେଇଁ ପଡ଼ିବୁନି । ଡେଇଁବା ଆଗରୁ ଦେଖିବୁ ।"

ମା' ଯେଉଁ ଆଗର କଥା କହିଲେ ତାହା ଥିଲା ସ୍କୁଲ୍‌ରେ ଥରେ ଖାଇବା ଛୁଟିର କଥା । ପ୍ରାର୍ଥନା ଘର ପଛରେ ବୁଲୁ ବୁଲୁ ତୋତୋ-ଗ୍ରିନ୍ ରାସ୍ତା ମଝିରେ ଖବରକାଗଜ ପଡ଼ିଥିବାର ଦେଖିଲା । ସେ ଖବର କାଗଜଟି ଉପରକୁ ଡେଇଁ ପାରିବ କି ନାହିଁ ଦେଖିବାକୁ ଠିକ୍ କଲା । ସେ କିଛି ପାଦ ପଛକୁ ଘୁଞ୍ଚିଗଲା, ଖୁବ୍ ବେଗରେ ସେ ଦୌଡ଼ି ଦୌଡ଼ି ଆସି ଖବରକାଗଜ ଉପରକୁ କୁଦି ପଡ଼ିଲା, କିନ୍ତୁ ସତ୍ୟାନାଶ । ସେହି ଜାଗାରେ ପାଇଖାନା ଟାଙ୍କିର ମୁହଁଟି ଥିଲା । ସଫେଇ କାମ ପାଇଁ ତା'ର ଘୋଡଣୀଟି କଢ଼ା ଯାଇଥିଲା । ଗନ୍ଧ ନ ହେବା ପାଇଁ କେହି ଖବର କାଗଜଟି ଢାଙ୍କି ଦେଇଥିଲା । ତୋତୋ-ଗ୍ରିନ୍ ଡିଆଁରେ ସଫଳ ହୋଇ ସିଧା ମଇଳା ଭିତରକୁ ଗଳି ପଡ଼ିଲା । ତା'ର ଅବସ୍ଥା ଦୟନୀୟ ହୋଇଗଲା । କିନ୍ତୁ ସୌଭାଗ୍ୟବଶତଃ ସେମାନେ ତାକୁ ପୂରା ସଫା କରି ଦେଲେ । ମା' ସେହି ଘଟଣାଟି କଥା ତାକୁ ମନେ ପକେଇ ଦେଉଥିଲେ ।

ତୋତୋ-ଗ୍ରିନ୍ ଧୀରେ ସ୍ଥିରେ କହିଲା, "ନା ଆଉ କେବେ ଏପରି ଡେଇଁବିନି ।" ମା' ଟିକେ ନିଃଶ୍ୱାସ ମାରିଲେ । କିନ୍ତୁ ଏହାପରେ ତୋତୋ-ଗ୍ରିନ୍ ଯାହା କହିଲା ତା' ଶୁଣି ମା' ଜାଣିଲେ ଯେ ତାଙ୍କ ଆଶ୍ୱସ୍ତ ହେବାଟା ଠିକ୍ ନୁହେଁ । ତୋତୋ-ଗ୍ରିନ୍ କହିଥିଲା, "ମୁଁ ଆଉ କେବେ ଖବର କାଗଜ କି ବାଲିଗଦାକୁ ଡେଇଁବିନି ।"

ମା' ପୂରା ନିଶ୍ଚିତ ଥିଲେ ଯେ ସେ ଏଥର ଆଉ କେଉଁ ନୂଆ ଜିନିଷ ଉପରକୁ ଡେଇଁବ ।

ସେମାନେ ଘରେ ପହଞ୍ଚିଲା ବେଳକୁ ପୂରା ଅନ୍ଧାର ହୋଇ ସାରିଥିଲା ।

## *ଆଉ ତା'ପରେ.... ଉଃ....*

ତୋମୋଏରେ ଖାଇବା ସମୟଟି ସବୁବେଳେ ବେଶ ମଜାଦାର ଥିଲା । କିନ୍ତୁ ଏବେ ଏଥିରେ ଆଉ ଏକ ମଜା କଥା ମିଶିଲା ।

ପ୍ରଧାନ ଶିକ୍ଷକ ଏବେ ବି ସବୁ ପଚ୍ଛିଶଜଣ ଯାକ ଛୁଆଙ୍କର ଖାଇବା ଦବା ଦେଖୁଥିଲେ ସେମାନେ "ସମୁଦ୍ରରୁ କିଛି ଆଉ ପାହାଡ଼ରୁ କିଛି" ଆଣିଛନ୍ତି କି ନା- ଆଉ ତାଙ୍କ ସ୍ତ୍ରୀ ଦୁଇଟି ହାଣ୍ଡି ଧରି ପଛରେ ପ୍ରସ୍ତୁତ ରହୁଥିଲେ, ଯାହାର ଯାହା ନଥିଲା ସେ ତାହା ଦେଇ ଦେଉଥିଲେ - ତା' ପରେ ସମସ୍ତେ ଖାଇବେ ଗ୍ରେବା, ଗ୍ରେବା, ଗ୍ରେବା ଭଲରେ ଗ୍ରେବା ପାଟିରେ ରଖିଛୁ ଯାହା ।" ପୁଣି "ମୁଁ କୃତଜ୍ଞତାର ସହ ଖାଉଛି ।" ଏସବୁ କହିବା ପରେ ଏଣିକି କିଏ ଜଣେ ଅଳ୍ପ କିଛି କହୁଥିଲେ ।

ଦିନେ ପ୍ରଧାନ ଶିକ୍ଷକ କହିଲେ, "ଆମକୁ ଆହୁରି ଭଲଭାବେ କହିବାକୁ ଶିଖିବାକୁ ପଡିବ । ତମେମାନେ କ'ଣ ଭାବୁଛ ? ଏବେଠୁଁ, ଆମେ ଖାଉଥିବା ସମୟରେ, ଜଣେ କିଏ ଗୋଲ ମଝିରେ ଠିଆ ହୋଇ ଯେ କୌଣସି ବିଷୟରେ କହିବ । ଏଇଟା କେମିତି ହେବ ?"

କେତେ ଛୁଆ ଭାବିଲେ ଆମେ ତ ଭଲ କହିପାରିବାନି, କିନ୍ତୁ ଆମେ ଅନ୍ୟମାନଙ୍କଠୁଁ ଶୁଣିବାଟା ମଜା ହେବ । ଆଉ କିଛି ପିଲା ଭାବିଲେ ଅନ୍ୟମାନଙ୍କୁ ସେମାନେ ଜାଣିଥିବା କଥା କହିବାଟା ନିଶ୍ଚୟ ମଜା ହେବ । ତୋତୋ-ଚ୍ଚାନ୍ କ'ଣ କହିବ ଜାଣି ନଥିଲା, କିନ୍ତୁ ଚେଷ୍ଟା କରିବାକୁ ଚ୍ଚାହୁଁଥିଲା । ଅଧିକାଂଶ ପିଲା ଏପରି କଥା କହିବା ଯୋଜନାକୁ ପସନ୍ଦ କଲେ, ତେଣୁ ଠିକ୍ କରାଗଲା ଯେ ତା' ପରଦିନଠୁଁ ଏହା ଆରମ୍ଭ କରିବେ ।

ସାଧାରଣତଃ ଜାପାନୀ ଛୁଆଙ୍କୁ ଖାଇବା ସମୟରେ କଥା ନହେବା ପାଇଁ ଘରେ ଶିଖାଯାଏ । କିନ୍ତୁ ବିଦେଶରେ ତାଙ୍କ ଅନୁଭୂତିରୁ ପ୍ରଧାନ ଶିକ୍ଷକ ଖାଇବା ସମୟରେ ଗପି ଗପି ବେଶ୍ ସମୟ ନେବାଟିକୁ ଉତ୍ସାହିତ କରୁଥିଲେ ।

ଏହାଛଡା ସେ ଭାବୁଥିଲେ ଯେ ଅନ୍ୟମାନଙ୍କ ଆଗରେ ଛିଡା ହୋଇ ନଡରି ନିଜ ଚିନ୍ତାକୁ ପରିଷ୍କାର ଭାବେ ପ୍ରକାଶ କରି ଶିଖିବା ଅତି ଜରୁରୀ । ତେଣୁ ଏବେ ସେ ତାଙ୍କ ଯୋଜନାଟିକୁ କାର୍ଯ୍ୟକାରୀ କରିବାପାଇଁ ଠିକ୍ କଲେ ।

ପିଲାଏ ଏ କଥାଟିରେ ରାଜି ହେବା ପରେ ସେ ଏପରି କହିଲେ । ତୋତୋ-ଚ୍ଚାନ୍ ମନ ଧ୍ୟାନ ଦେଇ ଶୁଣୁଥାଏ ।

"ତମେ ଜଣେ ଭଲ ବକ୍ତା ହେବା ପାଇଁ ବ୍ୟସ୍ତ ହେବା ଦରକାର ନାହିଁ । ତମେ ଯାହା ଚ୍ଚାହିଁବ ତାହା ଏଠି କହିପାରିବ । ତମେ ଯାହା କରିବାକୁ ଭଲ ପାଅ ସେ ବିଷୟରେ କହିପାରିବ । ଯାହା ହେଲେ ବି ଚଳିବ, ଅନ୍ତତଃ ସମସ୍ତେ ଚେଷ୍ଟା କରିବା ।"

ଦିନ ଦିନ କରି ବକ୍ତାମାନଙ୍କ ନାଁ ଠିକ୍ କରାଗଲା । କଥା ହେଲା ଯେ ଯେଉଁ ଦିନ ଯାହାର କହିବା ପାଳିଥିବ ସେ ଗୀତ ପରେ ପରେ ଶୀଘ୍ର ଖାଇନେବ ।

ପିଲାଏ ଶୀଘ୍ର ବୁଝିଗଲେ ଯେ ଖୀଇଲାବେଳେ ଦୁଇ ତିନି ଜଣ ହୋଇ କଥା ହେବାଠାରୁ ସ୍କୁଲ୍‌ରେ ସମସ୍ତଙ୍କ ମଝିରେ ଠିଆ ହୋଇ କହିବା ବେଶ୍ ଅଲଗା, ଏଭଳି ଠିଆ ହୋଇ କହିବା ପାଇଁ ବେଶ୍ ସାହସ ଦରକାର ଓ ଏହା ବେଶ୍ କଷ୍ଟ ମଧ୍ୟ । କେତେ ପିଲା ଏତେ ଲାଜକୁଳା ଥିଲେ ଯେ ପ୍ରଥମେ ପ୍ରଥମେ ଛିଡାହୋଇ ଖାଲି ହସିଲେ । ଜଣେ ପୁଅ ଲାଗିପଡି ଅନେକ ପ୍ରସ୍ତୁତି କରିଥିଲା । କିନ୍ତୁ ଠିଆ ହେବା କ୍ଷଣି ସବୁ ଭୁଲିଗଲା । ସେ ଖାଲି ତା'ର କଥାର ସୁନ୍ଦର ନାଁଟି "ବେଙ୍ଗ କାହିଁକି କଡେଇ ଡିଏଁ" କେତେଥର ଦୋହରାଇଲା ଓ ଆରମ୍ଭ କଲା, "ବର୍ଷା ହେଲେ...", ତା'ପରେ ତା'ର ଆଉ କିଛି ମନେ ପଡିଲାନାହିଁ । ଶେଷରେ ସେ କହିଲା, "ଏତିକି" ମୁଣ୍ଡ ନୁଆଁଇଲା ଓ ତା' ଜାଗାକୁ ଚ୍ଚାଲିଗଲା ।

ଏପାଏଁ ତୋତୋ-ଚ୍ଚାନ୍‌ର ପାଳି ଆସି ନଥାଏ । ସେ ଠିକ କରିଥାଏ ଯେ ତା' ବେଳ ଆସିଲେ ସେ ତା'ର ପ୍ରିୟ "ରାଜକୁମାର ଓ ରାଜକୁମାରୀ" ଗପଟି କହିବ । ଏଇଟି ସଭିଙ୍କୁ ଜଣା । ଯେତେବେଳେ ବି ସେ ଏ ଗପଟି କହିବାକୁ ଚ୍ଚାହୁଁଥିଲା ପିଲାଏ କହୁଥିଲେ, "ଆମକୁ ଏ ଗପଟା ଚିଟା ଲାଗିଲାଣି ।" ଏସବୁ ସତ୍ତ୍ୱେ ବି ସେ ଠିକ୍ କଲା ଯେ ସେ ସେହି ଗପଟି ହିଁ କହିବ ।



ଏହି ନୂଆ ଯୋଜନାଟି ଆଗେଇ ଗ୍ଭଲିଥାଏ । ହଠାତ୍ ଦିନେ ଜଣେ ପିଲା କହିବାକୁ ପୂରା ମନା କରିଦେଲା ।

"ମୋର କିଛି କହିବାକୁ ନାହିଁ", ସେ କହିଲା ।

ତୋତୋ-ଗ୍ୱନ୍ ଭାବି ଆଶ୍ଚର୍ଯ୍ୟ ହୋଇଗଲା ଯେ ଜଣକର କିପରି କିଛି କହିବାକୁ ନାହିଁ । କିନ୍ତୁ ପୁଅଟି ଜମା କହିଲାନି । ପ୍ରଧାନ ଶିକ୍ଷକ ପିଲାଟିର ଡେସ୍କ ପାଖକୁ ଗଲେ।

"ତେବେ ତମର କିଛି କହିବାକୁନାହିଁ ।" ସେ କହିଲା, "ନାଁ" ।

ପିଲାଟି ଖେଚେଡାମି କରିବାକୁ ଗ୍ଭହୁଁ ନଥାଏ । ସତରେ ସେ କ'ଣ କହିବ ଭାବି ପାରୁନଥିଲା ।

ପ୍ରଧାନ ଶିକ୍ଷକ ମୁଣ୍ଡଟାକୁ ପଛକୁ ଝୁଙ୍କାଇ ତାଙ୍କ ଭଙ୍ଗାଦାନ୍ତ କଥା ଭୁଲିଯାଇ ଜୋରରେ ହସିବାକୁ ଲାଗିଲେ ।

"ଗ୍ଭଲ, ତମେ କହିବା ପାଇଁ କିଛି ଯୋଗାଇ ଦେବା ।" "ମୋ ପାଇଁ କିଛି ଯୋଗାଇ ଦେବ ?" ପିଲାଟି ଚମକିଲା ଭଳି ଜଣାଗଲା ।

ପ୍ରଧାନ ଶିକ୍ଷକ ପୁଅଟିକୁ ଗୋଲ ମଝିରେ ଠିଆ କରେଇ ନିଜେ ତା' ଚଉକିରେ ବସିଲେ ।

"ଆଚ୍ଛା ମନେ ପକାଇଲ", ସେ କହିଲେ, "ଆଜି ତମେ ସକାଳୁ ଉଠି ସ୍କୁଲକୁ ଆସିବା ଆଗରୁ କ'ଣ କ'ଣ କଲ ?" "ପ୍ରଥମେ କ'ଣ କଲ ?"

"ହଉ", କହି ପୁଅଟି ମୁଣ୍ଡ କୁଣ୍ଡେଇବାରେ ଲାଗିଲା ।

"ବଢିଆ", ପ୍ରଧାନ ଶିକ୍ଷକ କହିଲେ, "ତମେ କହିଲ, 'ହଉ' ତମର କିଛି କହିବାକୁ ଅଛି । ଆଚ୍ଛା କହିଲ 'ହଉ' ପରେ କ'ଣ କଲ ?"

"ହଁ.... ଉଃ.... ମୁଁ ଉଠିଲି", ସେ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ କହିଲା ।

ତୋତୋ-ଗ୍ୱନ୍ ଓ ସାଥିଙ୍କୁ ମଜା ଲାଗିଲା, କିନ୍ତୁ ସେମାନେ ମନ ଦେଇ ଶୁଣିଲେ। ପିଲାଟି କହି ଗ୍ଭଲିଲା, "ତା'ପରେ,...... ଉଁ......", ସେ ପୁଣି ମୁଣ୍ଡ କୁଣ୍ଡାଇଲା । ପ୍ରଧାନ ଶିକ୍ଷକ ଧୈର୍ଯ୍ୟର ସହ ପିଲାଟିକୁ ଗ୍ଭହିଁ ହସୁଥା'ନ୍ତି ।

ତା'ପରେ ସେ କହିଲେ, "ତାହା ତ ଚମତ୍କାର । ସେତିକି ଚଳିବ, ତମେ ଆଜି ସକାଳେ ଉଠିଲ । ସମସ୍ତଙ୍କୁ ତ ବୁଝାଇ ସାରିଲଣି । ଅନ୍ୟମାନେ ହସିଲେ ଯେ ତୁମେ ଭୁଲ କହୁଛ ତାହା ନୁହେଁ । ବଡ କଥା ହେଉଛି ଯେ ତମର କହିବାର କିଛି ନାହିଁ ବୋଲି କହୁଥିଲ, ହେଲେ ତମେ କିଛି କହିବାକୁ ପାଇଲ ।" କିନ୍ତୁ ପୁଅଟି ବସିପଡିଲାନି। ଏଥର ଜୋରରେ କହିଲା, "ଆଉ ତା'ପରେ.... ଉଁ.... ।"

ସବୁ ଛୁଆ ଆଗକୁ ଝୁଙ୍କି ପଡିଲେ, ପିଲାଟି ଜୋରରେ ନିଃଶ୍ୱାସ ନେଇ କହି ଗ୍ଭଲିଲା, "ଆଉ ତା'ପରେ.... ଉଁ.... ମା'.... ଉଁ.... ସେ କହିଲେ ଦାନ୍ତ ଘଷ.... ଉଁ.... ଆଉ ମୁଁ ଦାନ୍ତ ଘଷିଲି ।"

ପ୍ରଧାନ ଶିକ୍ଷକ ତାଳି ମାରିଲେ । ସଭିଏଁ ବି ତାଳି ମାରିଲେ । ଆଉ ଏହା ଶୁଣି ପୁଅଟି ଆଗଠାରୁ ଆହୁରି ଜୋରରେ କହିଲା, "ଆଉ ତା'ପରେ.... ଉଁ.... ।"

ପିଲାଏ ତାଳି ବନ୍ଦ କରିଦେଲେ, ଆଉ ଦାନ୍ତ ଚିପି ଆଗକୁ ଆହୁରି ଝୁଙ୍କି ଶୁଣିଲେ ।

ଶେଷରେ ପୁଅଟି ଗଡ ଜିଣିଲା ଭଳି କହିଲା, ''ଆଉ ତା'ପରେ.... ଉଁ.... ମୁଁ ସ୍କୁଲ୍‌କୁ ଆସିଲି ।''

ଜଣେ ବଡପିଲା ଆଗକୁ ଏତେ ଝୁଙ୍କି ପଡିଲା ଯେ ନିଜର ଭାରସାମ୍ୟ ହରାଇ ଦେଇ ପଡିଗଲା । ତା' ମୁହଁଟି ଖାଇବା ବାକ୍ସରେ ମାଡି ହୋଇଗଲା । କିନ୍ତୁ ସଭିଏଁ ଏକଦମ୍ ଖୁସି ହୋଇ ଯାଇଥିଲେ ଯେ ପୁଅଟି କିଛି କହିପାରିଲା ।

ପ୍ରଧାନ ଶିକ୍ଷକ ଜୋରରେ ତାଳି ମାରିଲେ, ଆଉ ତୋତୋ-ଗ୍ୱିନ୍ ଓ ଅନ୍ୟମାନେ ମଧ୍ୟ । ଏପରିକି ମଝିରେ ଠିଆ ହୋଇଥିବା ''ଆଉ ତା'ପରେ.... ଉଁ.... ମଧ୍ୟ ତାଳିମାରିଲା । ପ୍ରାର୍ଥନା ଘରଟି ତାଳିରେ ଭରି ଉଠିଲା ।

ବଡ ହେଲା ପରେ ମଧ୍ୟ ସେ ପୁଅଟି ସେହି ଶବ୍ଦକୁ ଭୁଲି ପାରିନଥିବ ।



## ଆମେ ଖାଲି ଖେଳୁଥିଲୁ

ତୋତ୍ତୋ-ଗ୍ୱିନ୍ ଏକ ସାଙ୍ଘାତିକ ଦୁର୍ଘଟଣାର ସମ୍ମୁଖୀନ ହେଲା । ସ୍କୁଲରୁ ଫେରି ଘରେ ରାତିରେ ଖାଇବା ଆଗରୁ ସେ ଓ ରକି 'ଗଧିଆ' ଖେଳୁ ଖେଳୁ ଏହା ଘଟିଲା ।

ଏ ଖେଳଟିରେ ଦୁଇଜଣ ବିପରୀତ ଦିଗରୁ ଗଡି ଗଡି ଆସନ୍ତି । ଦୁହିଁଙ୍କର ଧକ୍କା ହେଲାବେଳେ କିଛି ଧରାପରା ହୁଅନ୍ତି । ସେମାନେ ଏପରି କେତେ ଥର ଖେଳିବା ପରେ ଠିକ୍ କଲେ ଯେ ଖେଳଟିକୁ ଆଉ ଟିକିଏ ଅଧିକ ମଜାଦାର କରିବେ। ଅବଶ୍ୟ ଏହା ତୋତ୍ତୋ-ଗ୍ୱିନ୍ ହିଁ ଠିକ୍ କରିଥିଲା । କାମଟି ଏପରି ଥିଲା ଯେ ଦୁହେଁ ଦୁହିଁଙ୍କ ଆଡକୁ ଗଡି ଗଡି ଘର ମଝିରେ ଏକାଠି ହେଲା ପରେ ଯିଏ ଯେତେ ଭୟଙ୍କର ଗଧିଆ ମୁହଁ କରିବ ସେ ଜିତିବ। ରକି ଗୋଟିଏ ବିଲାତି କୁକୁର ଥିବାରୁ ଗଧିଆ ପରି ଦିଶିବା ତା' ପାଇଁ କିଛି ବଡ କଥା ନଥିଲା । ତାକୁ କେବଳ କାନ ଠିଆକରି, ପାଟି ମେଲା କରି ଦାନ୍ତଗୁଡିକ ଦେଖାଇବାକୁ ପଡୁଥିଲା । ସେ ଆଖି ଦୁଇଟିକୁ ବି ବଡ ଭୟଙ୍କର କରି ପାରୁଥିଲା । ଏହା କିନ୍ତୁ ତୋତ୍ତୋ-ଗ୍ୱିନ୍ ପାଇଁ ଏହା କଷ୍ଟକର ଥିଲା । ସେ ତା'ର ହାତ ଦୁଇଟିକୁ ମୁଣ୍ଡର ଦୁଇ କଡେ କାନ ପରି ଧରି ରଖୁଥିଲା, ପାଟି ଓ ଆଖିକୁ ଯେତେ ସମ୍ଭବ ମେଲାଇ ଗର୍ଜନ କରୁଥିଲା ଓ ରକିକୁ କାମୁଡିଲା ପରି ଛଳନା କରୁଥିଲା । ପ୍ରଥମେ ରକି ଏହି ଖେଳଟି ଭଲ ଖେଳୁଥିଲା । କିନ୍ତୁ ଯେତେହେଲେ ସେ ଏକ କୁକୁର ଛୁଆ ଥିଲା କିଛି ସମୟ ପରେ ସେ ଖେଳୁଛି ବୋଲି ଭୁଲିଗଲା ଓ ହଠାତ୍ ତୋତ୍ତୋ-ଗ୍ୱିନ୍‌କୁ ସତରେ କାମୁଡି ଦେଲା । ଛୁଆ ହେଲେ ବି ରକି ଆକାରରେ ତୋତ୍ତୋ-ଗ୍ୱିନ୍‌ର ଦୁଇଗୁଣ ବଡ ଥିଲା ଓ ତା'ର ଦାନ୍ତ ବେଶ୍ ମୁନିଆ ଥିଲା। କ'ଣ ଘଟୁଛି ଜାଣିବା ପୂର୍ବରୁ ତୋତ୍ତୋ-ଗ୍ୱିନ୍‌ର ଡାହାଣ କାନ ଛିଣ୍ଡି ଓହଳି ପଡିଥାଏ ଓ ଧାରଧାର ରକ୍ତ ବୋହି ଯାଉଥାଏ ।

ତା'ର ଚିତ୍କାର ଶୁଣି ମା' ରୋଷେଇ ଘରୁ ଦୌଡି ଆସିଲେ । ଦେଖିଲେ ଗୋଟିଏ କୋଣରେ ତୋତ୍ତୋ-ଗ୍ୱିନ୍ ତା'ର ଡାହାଣ କାନକୁ ଦୁଇ ହାତରେ ଜାବୁଡି ଧରି ରକି ପାଖରେ ବସିଛି । ତା'ର ପୋଷାକ ରକ୍ତରେ ଭିଜି ଯାଇଥାଏ। ବାପା ବାହାର ଘରେ ବସି ବେହେଲା ଅଭ୍ୟାସ କରୁଥିଲେ । ସେ ବି ଦଉଡି ଆସିଲେ । ଲାଗୁଥିଲା ସତେ ଯେମିତି ରକି ବୁଝିପାରୁଛି ଯେ ସେ କିଛି ଗୋଟେ ଭୟଙ୍କର କାମ କରିଛି। ସେ ଗୋଡ ସନ୍ଧିରେ ଲାଙ୍ଗୁଡଟିକୁ ଜାକି ଦେଇ ବିକଳ ହୋଇ ତୋତ୍ତୋ-ଗ୍ୱିନ୍‌କୁ ଗ୍ୱହୁଁଥାଏ।

ତୋତ୍ତୋ-ଗ୍ୱିନ୍ କେବଳ ଏତିକି ଭାବୁଥିଲା ଯେ, ମା' ବାପା ରକି ଉପରେ ବହୁତ ରାଗି ଯଦି ତାକୁ ବାହାର କରିଦିଅନ୍ତି ବା କାହାକୁ ଦେଇ ଦିଅନ୍ତି ତା'ହେଲେ ସେ କ'ଣ କରିବ ? ତା'ପାଇଁ ଏହା ଅଧିକ ଦୁଃଖର କଥା ହେବ। ତେଣୁ ସେ ରକି ପାଖରେ ଖୁନ୍ଦି ହୋଇ ବସି, ଡାହାଣ କାନକୁ ଧରି ବାରମ୍ବାର ଚିତ୍କାର କରୁଥାଏ, "ରକିକୁ ଗାଳି ଦିଅନି ! ରକିକୁ ଗାଳି ଦିଅନି !"

ତା' କାନକୁ କ'ଣ ହୋଇଛି ଜାଣିବା ପାଇଁ ମା' ବାପା ଦୁହେଁ ଗ୍ୱହୁଁଥାନ୍ତି ଓ ତା' ହାତକୁ ଟାଣି ବାହାର କରିବାକୁ ଚେଷ୍ଟା କରୁଥାନ୍ତି । ତୋତ୍ତୋ-ଗ୍ୱିନ୍ ଜମା ଛାଡୁ

ନଥାଏ ଓ ପାଟି କରୁଥାଏ, "ମତେ କାଟୁନାହିଁ, ରକି ଉପରେ ରାଗନି ! ଜମା ରାଗନି !" ସତରେ ସତେବେଳେ ତୋତୋ-ଗ୍ୱିନ୍‌କୁ କଷ୍ଟ ଜଣା ପଡୁନଥାଏ । ସେ କେବଳ ରକି ବିଷୟରେ ହିଁ ଭାବୁଥିଲା ।

ରକ୍ତ ବହି ଗ୍ୱଲିଥାଏ, ଏବଂ ମା', ବାପା ସେଥିରୁ ଠଉରେଇ ନେଲେ ଯେ ରକି ନିଶ୍ଚୟ ତାକୁ କାମୁଡିଛି । ସେମାନେ ତୋତୋ-ଗ୍ୱିନ୍‌କୁ କଥା ଦେଲେ ଯେ ସେମାନେ ରକି ଉପରେ ରାଗିବେନାହିଁ । ଶେଷରେ ତୋତୋ-ଗ୍ୱିନ୍ ତା' ହାତ ହଟେଇଲା । କାନର ଅବସ୍ଥା ଦେଖି ମା' ଭୟରେ ଚିତ୍କାର କରି ଉଠିଲେ । କୁନି ଝିଅଟିକୁ କାଖେଇ ବାପା ଡାକ୍ତରଙ୍କ ପାଖକୁ ଗ୍ୱଲିଲେ, ମା' ଆଗେ ଆଗେ ବାଟ କଢେଇ ନେଉଥା'ନ୍ତି । ଭାଗ୍ୟକୁ ଠିକ୍ ସମୟରେ ଡାକ୍ତରଙ୍କୁ ଦେଖାଯାଇ ଥିବାରୁ ଡାକ୍ତର କାନଟିକୁ ଠିକ୍ ଆଗ ଭଳି ଯୋଡି ଦେଇପାରିଲେ ଓ ବାପା ମା' ଆଶ୍ୱସ୍ତ ହେଲେ । କିନ୍ତୁ ତୋତୋ-ଗ୍ୱିନ୍ କେବଳ ଗୋଟିଏ କଥା ଭାବୁଥିଲା ଯେ, ରକିକୁ ଗାଳି ନଦେବା ବିଷୟରେ ମା' ବାପା ତାଙ୍କ କଥା ରଖିବେ ତ !

ଡାକ୍ତରଠାରୁ ଥୋମଣୀ ଯାଏଁ ପଟି ଗୁଡା ହୋଇ ଘରକୁ ଫେରିଲା ବେଳକୁ ତୋତୋ-ଗ୍ୱିନ୍ ଠିକ୍ ଗୋଟିଏ ଧଳା ଠେକୁଆ ପରି ଦେଖା ଯାଉଥାଏ । ରକିକୁ ଗାଳି ନଦେବା ପାଇଁ ନିଜେ କଥା ଦେଇଥିଲେ ବି ଏହା କରିବାକୁ ବାପାଙ୍କର ବଡ ଇଛା ଥିଲା । କିନ୍ତୁ ମା'ଙ୍କର ଗ୍ୱହାଣୀ କହୁଥିଲା, "ଦୟାକରି ତୁମେ ତୁମ କଥା ରଖ ।" ବାପା ଅନିଚ୍ଛାର ସହ ତାହା ହିଁ କଲେ ।

ତୋତୋ-ଗ୍ୱିନ୍ ତରତର ହୋଇ ଭିତର ଘରକୁ ପଶିଗଲା ସେ ରକିକୁ ଜଣାଇ ଦେବାକୁ ଗ୍ୱହୁଁଥିଲା ଯେ, ସବୁକିଛି ଠିକ୍ ଅଛି ଓ କେହି ବି ରାଗିନାହାନ୍ତି । କିନ୍ତୁ ସେ ରକିକୁ କେଉଁଠି ବି ପାଇଲାନି । ପ୍ରଥମ ଥର ପାଇଁ ଏବେ ତୋତୋ-ଗ୍ୱିନ୍ କାନ୍ଦିଲା । ଡାକ୍ତରଙ୍କ ପାଖରେ ବି ସେ କାନ୍ଦି ନଥିଲା । କାରଣ ସେତେବେଳେ ସେ ଡରୁଥିଲା ଯେ ଯଦି ସେ କାନ୍ଦେ ତେବେ ବାପା ମା' ରକି ଉପରେ ଅଧିକ ରାଗିବେ । ଏବେ କିନ୍ତୁ ସେ ଆଉ ରହି ପାରିଲାନି । କାନ୍ଦିବା ସାଙ୍ଗେ ସାଙ୍ଗେ ସେ ଡାକ ପକାଇଲା, "ରକି ! ରକି ! ତୁ କେଉଁଠି ଅଛୁ ?"

କେତେଥର ଡାକିବା ପରେ, ତା'ର ଲୁହରେ ଓଦା ମୁହଁଟିରେ ହସ ଫୁଟିଲା ଯେତେବେଳେ ସେ ଦେଖିଲା ସୋଫା ପଛପଟୁ ତା'ର ପରିଚିତ ମାଟିଆ ପିଠିଟି ବାହାରି ଆସିଲା । ତୋତୋ-ଗ୍ୱିନ୍‌ର ପାଖକୁ ଯାଇ ସେ ପଟି ବାହାରକୁ ଦିଶୁଥିବା ଭଲ କାନଟିକୁ ଚୁପ୍‌ଗ୍ୱପ୍ ଗ୍ୱଟିବାରେ ଲାଗିଲା । ତୋତୋ-ଗ୍ୱିନ୍ ରକିର ବେକରେ ତା' ହାତ ଦୁଇଟିକୁ ଗୁଡାଇ ଧରିଲା ଓ ତା' କାନରେ ଫୁସ୍ ଫୁସ୍ କରି କ'ଣ କହିଲା । ମା' ବାପା କହୁଥିଲେ ଯେ ରକିର କାନ ଗନ୍ଧାଏ କିନ୍ତୁ ସେହି ପରିଚିତ ଗନ୍ଧଟିକୁ ସେ କେତେ ଯେ ଭଲ ନପାଏ । ରକି ଓ ତୋତୋ-ଗ୍ୱିନ୍ ବହୁତ ହାଲିଆ ହୋଇ ପଡିଥିଲେ । ତାଙ୍କୁ ନିଦ ମାଡି ଆସୁଥିଲା ।

ଜହ୍ନ ଆଲୁଅ ଆସି ପଟିବନ୍ଧା କୁନି ଝିଅଟି ଓ ତା'ର ସାଙ୍ଗ କୁକୁର ଉପରେ ପଡୁଥାଏ । ଦୁହେଁ ଆଉ କେବେ ପୁଣି 'ଗଧିଆ' ଖେଳ ଖେଳିବାକୁ ଠିକ୍ କରିଛନ୍ତି । ଏବେ ସେ ଦୁହେଁ ଆଗ ଅପେକ୍ଷା ଆହୁରି ବେଶୀ ସାଙ୍ଗ !

# ଖେଳର ଦିନ

ପ୍ରତି ବର୍ଷ ନଭେମ୍ବର ମାସ ତିନି ତାରିଖରେ ତୋମୋଏର 'କ୍ରୀଡା ଦିବସ'। ବହୁତ ଗବେଷଣା ପରେ ପ୍ରଧାନ ଶିକ୍ଷକ ଏହି ଦିନଟିକୁ ବାଛିଥିଲେ । ସେ କହୁଥିଲେ ଯେ ଶରତ ଋତୁର ଏହି ଦିନଟିରେ ସବୁଠାରୁ କମ୍ ଥର ବର୍ଷା ହେବ। ବୋଧେ ଆଗ କେତେ ବର୍ଷର ପାଣିପାଗ ବିବରଣୀରୁ ସେ ଏହି ଧାରଣା ପାଇଥିଲେ କିମ୍ବା କିଏ ଜାଣେ ହୁଏତ ସୂର୍ଯ୍ୟ ଓ ମେଘ ତାଙ୍କ ଇଚ୍ଛାକୁ ମାନି ବର୍ଷା କରୁ ନଥିଲେ ! ସେ ଚାହୁଁଥିଲେ ଯେ ପିଲାଏ ଅନେଇ ବସିଥିବା ଏଇ ଦିନଟିରେ ବର୍ଷା ନ ହେଉ । ଏଥିପାଇଁ ପିଲାମାନେ ଦିନେ ଆଗରୁ ସ୍କୁଲ୍ ପଡିଆ ସଜେଇ ପ୍ରସ୍ତୁତ ହୋଇ ରହିଥା'ନ୍ତି । କାରଣ ଯାହା ହେଉନା କାହିଁକି ଏହା ଅଦ୍ଭୁତ କଥା ଯେ କୌଣସି ବର୍ଷ ନଭେମ୍ବର ତିନି ଦିନ ବର୍ଷା ହୋଇ ନଥିଲା ।

ସବୁ ଜିନିଷ ତୋମୋଏରେ ଅଲଗା ଢଙ୍ଗରେ ହେଉଥିଲା । ସେହିଭଳି ଏହାର କ୍ରୀଡା ଦିନ ମଧ୍ୟ ଏକ ଭିନ୍ନ ଧରଣର ଥିଲା । ଏହାର ମାତ୍ର ଦୁଇଟି ଖେଳ - ଦଉଡି ଭିଡା ଓ ତିନି ଗୋଡିଆ ଦୌଡ - ଅନ୍ୟ ପ୍ରାଥମିକ ସ୍କୁଲ ମାନଙ୍କରେ ହେଉଥିଲା। ଆଉ ସବୁତକ ଥିଲା ପ୍ରଧାନଶିକ୍ଷକଙ୍କ ନିଜର ଉଦ୍ଭାବନ । ସେମିତି କିଛି ବିଶେଷ ଉପକରଣ ବା ଦୁର୍ଲଭ ଜିନିଷ ଏଥିପାଇଁ ଦରକାର ହେଉ ନଥିଲା ।

ଧରାଯାଉ ପୋହଳା ମାଛ ଦୌଡ । କନାର ବଡ ବଡ ନଳୀକୁ ମାଛ ଭଳି ରଙ୍ଗ ଦେଇ ପଡିଆ ମଝିରେ ରଖାଯାଉଥିଲା । ହୁଇସିଲ୍ ବାଜିବା କ୍ଷଣି ପିଲାମାନେ ଏହି ଲମ୍ବା ମାଛ ଯାଏଁ ଦୌଡିଯିବେ । ମାଛର ମୁହଁରେ ଭିତରେ ପଶି ଗୁରୁଣ୍ଡି ଗୁରୁଣ୍ଡି ଲାଞ୍ଜ ବାଟେ ବାହାରିବେ । ପୁଣି ଦୌଡି ଦୌଡି ଆରମ୍ଭ ଜାଗାକୁ ଫେରିବେ । ଗୋଟିଏ ନାଲି ଓ ଦୁଇଟି ନୀଳ ରଙ୍ଗର ମାଛ ଥିବାରୁ ଏକାଥରେ ମାତ୍ର ତିନିଜଣ ଛୁଆ ଦୌଡି ପାରୁଥିଲେ । ଏହି ଦୌଡଟି ସହଜ ମନେ ହେଉ ଥିଲେ ବି ବେଶ କଷ୍ଟକର ଥିଲା। ନଳୀର ଭିତର ପାଖଟା ପୂରା ଅନ୍ଧାର ଥିଲା ଓ ମାଛଗୁଡିକ ବେଶ୍ ଲମ୍ବା ଥିଲେ। ତେଣୁ ଜଣେ କେଉଁ ଦିଗକୁ ଯାଉଛି ତାହା ଜାଣିବାରେ ଗୋଳମାଳ ହୋଇଯାଏ, ତୋତୋ-ଚ୍ୱାନ୍ ଭଳି କିଛି ପିଲା ବାଟ ଜାଣି ନପାରି ମୁହଁପଟେ ବାହାରି ପଡୁଥା'ନ୍ତି; ଭୁଲ ବୁଝିପାରି ପୁଣି ଗୁରୁଣ୍ଡି ଗୁରୁଣ୍ଡି ଭିତରେ ପଶିଯାଉଥାନ୍ତି । ଏହା ଦେଖିବାକୁ ଅତି ମଉଜିଆ ଥିଲା; କାରଣ ପିଲାଏ ମାଛ ଭିତରେ ଗୁରୁଣ୍ଡିଲା ବେଳେ ମାଛଟି ଛାଟି ପିଟି ହେଲା ଭଳି ମନେ ହେଉଥିଲା । ଯେପରି ସେଗୁଡିକ ବଞ୍ଚିଛନ୍ତି ।

ଆଉ ଗୋଟିଏ ଖେଳ ଥିଲା ମା' - ଖୋଜା - ଦୌଡ । ହୁଇସିଲ୍ ବାଜିବା କ୍ଷଣି ପିଲାଏ ଦୌଡି ଯାଇ ଗୋଟିଏ କଡୁଆ ହୋଇ ରହିଥିବା ଶିଡିର ପାହିଗୁଡିକ ଭିତରେ ଗଳୁଥିଲେ । ଶିଡି ସେପଟେ ଥିବା ଝୁଡିରୁ କାଗଜ ଖଣ୍ଡେ ନେଇ ପଢୁଥିଲେ । ଯାହା କାଗଜରେ ଲେଖାଥିବ ସାକୋ-ଚ୍ୱାନ୍‌ର ମା' ସେ ଦେଖଣାହାରୀଙ୍କ ଭିତରୁ ସାକୋ-ଚ୍ୱାନ୍‌ର ମା'ଙ୍କ ହାତ ଧରି ଶେଷ ଗାର ଯାଏଁ ଆଣିବ। ସିଡି ଭିତରେ ବିଲେଇ ଭଳି ଦେହ

ଲମ୍ବାଇ ଗଲି ଯିବାକୁ ହୁଏ । ନହେଲେ ଅଣ୍ଟା ତଳକୁ ଲାଖି ରହିଯିବା ସମ୍ଭବ । ଏହା ଛଡା ଜଣେ ସାକୋ-ଗ୍ୱନ୍‌ର ମା'ଙ୍କୁ ଭଲରେ ଜାଣିଥାଇପାରେ । କିନ୍ତୁ ତା' ଭାଗରେ ଯଦି ଅଜଣା ଲୋକଙ୍କ ନାଁ ଲେଖାଥିବା କାଗଜ ପଡେ ? ହୁଏତ 'ଓକୁର ଭଉଣୀ', 'ସୁ'ର ମା' ବା 'ଶ୍ରୀମତୀ କୁନିନୋରିଙ୍କ ପୁଅ' ଆଦିଙ୍କୁ ଆଗରୁ କେବେ ସେ ଭେଟି ନଥିବ । ସେପରି ପରିସ୍ଥିତିରେ ସେ ଦେଖଣାହାରୀଙ୍କ ପାଖକୁ ଯାଇ, ଜୋରରେ ଡାକିବ, 'ଓକୁର ଭଉଣୀ' । ଏଥିପାଇଁ ଦମ୍ଭ ଦରକାର ହେଉଥିଲା । କାହା କାହା ଭାଗରେ ନିଜ ମାଁଙ୍କ ନାଁ ଲେଖା କାଗଜ ପଡୁଥିଲା । ସେମାନେ ଖୁସିରେ ''ମା' ! ମା' ! ଜଲ୍‌ଦି ଆସେ !'' କହି ଡେଉଁଥାନ୍ତି । ଦେଖଣାହାରୀଙ୍କୁ ବି ଏହି ଖେଳ ସମୟରେ ସକ୍ରିୟ ରହିବାକୁ ପଡୁଥିଲା । ସେମାନଙ୍କ ନାଁ ଯେ କେତେବେଳେ ଡକାହେବ କିଛି କହି ହେଉନଥିଲା । ନାଁ ଡକା ହେବାକ୍ଷଣି ସେମାନଙ୍କୁ ଉଠି ଅପେକ୍ଷା କରିଥିବା ପିଲା ପାଖକୁ ଯିବାକୁ ପଡୁଥିଲା । ସେଠାରୁ ତା' ହାତ ଧରି ଶୀଘ୍ର ଦୌଡିବାକୁ ପଡୁଥିଲା । ତେଣୁ ପିଲାଟିଏ ଯେତେବେଳେ ଆସି ଦର୍ଶକଙ୍କ ସାମନାରେ ପହଞ୍ଚୁଥିଲା ସମସ୍ତେ ମନ ଧ୍ୟାନ ଦେଇ, ଗପିବା ବା ଖାଇବା ବନ୍ଦ କରି ଶୁଣିବାକୁ ପ୍ରସ୍ତୁତ ରହୁଥିଲେ । ବଡମାନଙ୍କୁ ମଧ୍ୟ ଛୁଆଙ୍କ ଭଳି ଏହି ଖେଳରେ ଭାଗ ନେବାକୁ ପଡୁଥିଲା ।

ଦଉଡି ଟଣା ଖେଳରେ ପ୍ରଧାନ ଶିକ୍ଷକ ଓ ଅନ୍ୟ ଶିକ୍ଷକମାନେ ପିଲାଙ୍କ ସହ ଦୁଇଟି ଦଳରେ ମିଶୁଥିଲେ । ସେମାନେ ବି ''ଭିଡ ! ଭିଡ !'' କହି ଦଉଡି ଟାଣୁଥା'ନ୍ତି । ଏଥିରେ ଯାସୁଆକି-ଗ୍ୱନ୍ ପରି ବିକଳାଙ୍ଗ ପିଲାମାନେ ଭାଗ ନେଇ ପାରୁନଥିଲେ । ସେମାନେ ଦଉଡି ମଝିରେ ବନ୍ଧା ରୁମାଲ ଉପରେ ନଜର ରଖୁଥିଲେ ଓ ଦେଖୁଥିଲେ କିଏ ଜିତୁଛି ।

ଶେଷରେ ହେଉଥିଲା ରିଲେ ଦୌଡ । ଏଥିରେ ବି ସ୍କୁଲର ସମସ୍ତେ ଭାଗ ନେଉଥିଲେ । ଏହା ବି ତୋମୋଏରେ ଅଲଗା ଧରଣର ଥିଲା । କାହାକୁ ବି ଅତି ବେଶୀ ଦୌଡିବାକୁ ପଡୁନଥିଲା । ଜଣକ ପରେ ଜଣେ ପ୍ରାର୍ଥନା ଘର ଆଗର ଅଧା ଗୋଲ ପାହାଚତକ ଚଢି ଓହ୍ଲାଇବାକୁ ହେଉଥିଲା । ଅତି ସହଜ ମନେ ହେଉଥିଲେ ବି ଏହା ସେଭଳି ନଥିଲା । ସେଥିରେ ମୋଟରେ ଆଠଟି ପାହାଚ ଥିଲା । ଏଗୁଡିକ ଖୁବ୍ ଅଣ ଓସାରିଆ ଓ କମ୍ ଉଚ୍ଚର । ଥରକରେ ଗୋଟିଏରୁ ଅଧିକ ପାହାଚ ଚଢିବା ମନା ଥିଲା । ତେଣୁ ବଡମାନଙ୍କୁ ଏହା ବହୁତ ଅଡୁଆ ଲାଗୁଥିଲା । ପିଲାମାନଙ୍କ ପାଇଁ ଏ ପାହାଚ ଚଢିବା ନିତିଦିନିଆ କଥା ଥିଲା । ସେମାନେ ଏହାକୁ ଡେଇଁ ପ୍ରତିଦିନ ଖାଇବା ପାଇଁ ଯାଉଥିଲେ । କିନ୍ତୁ ବର୍ଷିକିଆ ଖେଳ ଦିନ ଏହି ପାହାଚଗୁଡିକ କିଛି ନୂଆ କଥା ଭଳି ମନେ ହୁଏ । ଖୁସିରେ ଚିତ୍କାର କରି ପିଲାମାନେ ଉପର ତଳ ହୋଇ ଦୌଡୁଥା'ନ୍ତି । ଦୂରରୁ ମନେ ହେଉଥାଏ ସତେ ଯେପରି ରଙ୍ଗର ଢେଉ ଖେଳି ଯାଉଛି ।

ପ୍ରଧାନ ଶିକ୍ଷକ ଆଶାକୁ ରଖି ଖେଳ ଦିନର ପାଗ ତୋତୋ-ଗ୍ୱନ୍ ଓ ସାଙ୍ଗମାନଙ୍କ ପାଇଁ ଖୁବ ବଢିଆ ଥିଲା । କାଗଜ ତାରା, ମାଳ ଓ ଝାଲର ସବୁକୁ ନେଇ ଆଗଦିନର ସାଜସଜା ସାଙ୍ଗକୁ ଗ୍ରାମୋଫୋନ୍‌ରୁ ଆସିଥିବା ଉଦ୍ଦୀପକ ଗୀତ ମିଶି ଗୋଟିଏ ମେଳାର ପରିବେଶ ଆଣି ଦେଉଥିଲା ।

ତୋତ୍ତୋ-ଗ୍ୱନ୍ ଈଷତ୍ ନୀଳ ରଙ୍ଗର ପ୍ୟାଣ୍ଟ ଓ ଧଳା ରଙ୍ଗର ସାର୍ଟ ପିନ୍ଧି ଯାଇଥାଏ । କିନ୍ତୁ ତା'ର ପୂରା ଇଚ୍ଛା ଥିଲା ବ୍ୟାୟାମ୍ ପୋଷାକ ପିନ୍ଧିବାକୁ । ଏହାର ଗୋଟିଏ ମଜା କାରଣ ଥିଲା । ଦିନେ ସ୍କୁଲ୍‌ରେ ପ୍ରଧାନ ଶିକ୍ଷକ କେତେଜଣ ଶିକ୍ଷକଙ୍କୁ ଇଉରିଦ୍‌ମିକ୍ସ୍ ଶିଖାଉଥିଲେ । ଦିଦିମାନେ ଗୋଡ କଡ୍ରୁଥିବା ବେଳେ ତାଙ୍କର ପେଣ୍ଡାତଳଗୁଡ଼ିକ ବଡ ସୁନ୍ଦର ଭାବେ ଢଳ ଢଳ ହେଉଥିଲା । ଏହା ତୋତ୍ତୋ-ଗ୍ୱନ୍‌କୁ ଖୁବ୍ ଭଲ ଲାଗିଲା । ସେ ଘରକୁ ଯାଇ ଜାମା ବଦଳାଇ ତା'ର ପାଦକୁ ଚଟାଣରେ ଧପ୍ ଧପ୍ କରି ବାଡେଇଲା । କିନ୍ତୁ ତା'ର ପିଲାଳିଆ ପେଣ୍ଡାଗୁଡ଼ିକ ଜମା ଢେଉ ଜଲେନାହିଁ । ଅନେକ ଥର ଚେଷ୍ଟା କରିବା ପରେ ସେ ଭାବିଲା ଯେ ଦିଦିମାନେ ପିନ୍ଧିଥିବା ବ୍ୟାୟାମ ପୋଷାକ ଯୋଗୁଁ ହିଁ ସେପରି ହେଉଥିଲା଼ । ତେଣୁ ସେ ଖେଳର ଦିନରେ ନିଶ୍ଚୟ ସେପରି ପୋଷାକ ପିନ୍ଧିବ ବୋଲି ଠିକ୍ କଲା । କିନ୍ତୁ ତା'ଭଳି ଛୋଟ ମାପରେ ବ୍ୟାୟାମପୋଷାକ ମିଳିଲାନାହିଁ । ସେ ଅଧା-ପ୍ୟାଣ୍ଟ ପିନ୍ଧି ହିଁ ଖେଳିବାକୁ ଗଲା । ତା'ର ଦୁଃଖ ରହିଗଲା ଯେ ଏଥିରେ ଆଉ ଗୋଡ ଢେଉ ଆସିବ ନାହିଁ !

ସ୍ପୋର୍ଟସ୍ ଦିନ ଗୋଟିଏ ଆଶ୍ଚର୍ଯ୍ୟର କଥା ହେଲା । ତାକାହାଶି ଯାହାର ହାତ ଗୋଡ ସବୁଠାରୁ ଛୋଟ ଥିଲା ଓ ଯେ ସ୍କୁଲରେ ସବୁଠାରୁ ଗେଡା ଥିଲା, ସେ ସବୁଥିରେ ପ୍ରଥମ ହେବାରେ ଲାଗିଲା । ଏହା ବିଶ୍ୱାସ କରି ହେଉନଥାଏ । ଯେତେବେଳେ ସମସ୍ତେ କନା ମାଛ ଭିତରେ ଏପଟ ସେପଟ ହେଉଥାନ୍ତି, ସେତେବେଳେ ତାକାହାଶି ଆଖି ପିଛୁଳାକେ ବାହାରିଗଲା । ଅନ୍ୟମାନେ ସିଡ଼ିରେ କେବଳ ମୁଣ୍ଡ ଗଳାଇଲା ବେଳକୁ ସେ ପୂରା ବାହାରି ଯାଇ କେତେ ବାଟ ଦୌଡ଼ି ସାରିଥାଏ । ପ୍ରାର୍ଥନା ଘର ପାହାଚରେ ରିଲେ ଦୌଡ ସମୟରେ ଅନ୍ୟମାନେ ଗୋଟିଏ ଲେଖା ପାହାଚ ଟପିଲା ବେଳକୁ, ତାକାହାଶି ତା'ର ଟିକି ଟିକି ଗୋଡଗୁଡ଼ିକରେ ଫଟାଫଟ୍ ଚଢ଼ି ଓହ୍ଲାଇଗଲା ।

"ଆମକୁ ଲାଗିପଡି ତାକାହାଶିକୁ ହରେଇବାକୁ ପଡ଼ିବ", ସଭିଏଁ କହିଲେ । ତାକୁ ହରେଇବାକୁ ଜିଦ୍ ଧରି ପିଲାଏ ପୂରା ଦମ୍‌ରେ ଲାଗିପଡିଲେ । ସେମାନଙ୍କର ସବୁ ଚେଷ୍ଟା ସତ୍ତ୍ୱେ, ତାକାହାଶି ସବୁଥିରେ ଜିଣିଗଲା । ତୋତ୍ତୋ-ଗ୍ୱନ୍ ବି ବହୁତ ଚେଷ୍ଟା କଲା, କିନ୍ତୁ ସେ କେବେ ବି ତାକାହାଶିକୁ ହରାଇବାକୁ ସକ୍ଷମ ହେଲାନି । ଦୌଡରେ ସହଜ ଅଂଶରେ ସେମାନେ ତାକୁ ଟପିଲେ ବି କଷ୍ଟ ଭାଗଗୁଡ଼ିକରେ ପଛରେ ପଡିଗଲେ ।

ତାକାହାଶି ଖୁସି ଓ ଗର୍ବରେ ପୁରସ୍କାର ଆଣିବା ପାଇଁ ଗଲା । ସେ ସବୁଥିରେ ପ୍ରଥମ ହୋଇଥିବାରୁ ଗୋଟାକ ପରେ ଗୋଟିଏ ପରୁସ୍କାର ପାଇ ଚ୍ଚଲିଥାଏ । ଅନ୍ୟମାନେ ଈର୍ଷାର ସହ ଚ୍ଚହିଁଥାନ୍ତି ।

ପ୍ରତିପିଲା ନିଜକୁ ନିଜେ କହି ଚ୍ଚଲିଥାଏ, "ମୁଁ ଆରବର୍ଷକୁ ତାକାହାଶିକୁ ନିଶ୍ଚୟ ହରାଇବି," କିନ୍ତୁ ପ୍ରତିବର୍ଷ ତାକାହାଶି ହିଁ ଶ୍ରେଷ୍ଠ ଖେଳାଳୀ ହେଉଥାଏ । ଏଥର ପୁରସ୍କାରଗୁଡ଼ିକ ମଧ୍ୟ ଅଲଗା ଧରଣର ଥିଲା । ପ୍ରଥମ ପୁରସ୍କାର ହୁଏତ ଏକ ବିରାଟ ମୂଳା, ଦ୍ୱିତୀୟ ପୁରସ୍କାର କହିଲେ ଦୁଇଟି କାକୁଡ଼ି ଓ ତୃତୀୟ ପୁରସ୍କାର ବିଡାଏ ଶାଗ । ବେଶ୍ ବଡ ହେବା ଯାଏଁ ତୋତ୍ତୋ-ଗ୍ୱନ୍ ଭାବୁଥିଲା ଯେ ସବୁ ସ୍କୁଲରେ ପରିବାପତ୍ର ହିଁ ପୁରସ୍କାର ହିସାବରେ ଦିଆଯାଏ ।

ଅନ୍ୟସ୍କୁଲରେ ଖାତା, ପେନ୍‌ସିଲ୍, ରବର ଆଦି ପୁରସ୍କାର ଦେଉଥିଲା । ତୋମୋଏ ପିଲାଏ ଏକଥା ଜାଣି ନଥିଲେ । ତଥାପି ସେମାନେ ପରିବା ପୁରସ୍କାରରେ ଖୁସି ନଥିଲେ । ତା'ର କଖାରୁ ଓ ପିଆଜ ପୁରସ୍କାରକୁ ଧରି ରେଳରେ ଘରକୁ ଯିବା ପାଇଁ ତୋତ୍ତୋ-ଗ୍ୱନ୍‌କୁ ଅଡୁଆ ଲାଗିଲା । ବିଭିନ୍ନ କାମ ପାଇଁ ଅନେକ ପୁରସ୍କାର ଦିଆଯାଉଥିଲା । ତେଣୁ ଖେଳ ଶେଷ ବେଳକୁ ତୋମୋଏର ସବୁ ପିଲା କିଛି କିଛି ପରିବା ପାଉଥିଲେ । ପରିବା ଧରି ଘରକୁ ଫେରିବାଟା କିନ୍ତୁ ପିଲାଙ୍କୁ ଖୁବ୍ ଅଖାଡୁଆ ଲାଗୁଥିଲା । ବଜାରରୁ ପରିବା କିଣିଆଣିବା ପାଇଁ ପିଲାଙ୍କର କିଛି କୁଣ୍ଠା ନଥିଲା । ହେଲେ ସ୍କୁଲରୁ ପରିବା ନେଇ ଘରକୁ ଫେରୁଥିବାର ଦେଖିଲେ ଦେଖିବା ଲୋକ ଭାବିବ କ'ଣ !

କୋବିଟିଏ ପାଇଥିବା ଜଣେ ମୋଟା ପିଲା ତାକୁ ନେଇ କ'ଣ କରିବ ଭାବି ପାରିଲାନାହିଁ ।

"ଏଇଟାକୁ ଧରି ମୁଁ ଯାଇପାରିବିନି", ସେ କହିଲା, "ଭାବୁଛି ଫିଙ୍ଗି ଦେବି ।"

ପ୍ରଧାନ ଶିକ୍ଷକ ବୋଧେ ପିଲାଙ୍କ ଅଭିଯୋଗ ଶୁଣିପାରିଲେ । ମୂଳା, ଗାଜର ଆଦି ଧରିଥିବା ପିଲାଙ୍କ ପାଖକୁ ଯାଇ ସେ ପଗ୍ୱରିଲେ, "କ'ଣ ହେଲା ? ମନକୁ ଆସୁ ନାହିଁ ?" ସେ କହିଗ୍ୱଲିଲେ, "ମା'ଙ୍କୁ କହିବ ଆଜି ରାତିରେ ସେ ଏସବୁ ରାନ୍ଧିବେ । ଏହି ପରିବାଗୁଡ଼ିକ ତମେ ନିଜେ ଅର୍ଜିଛ । ତମେ ନିଜ ଚେଷ୍ଟା ବଳରେ ଘର ପାଇଁ ଆଜି ଖାଇବା ଯୋଗାଉଛ । ଦେଖିବ, ନିଶ୍ଚୟ ଖୁବ୍ ସୁଆଦ ଲାଗିବ ।"

ବାସ୍ତବିକ ସେ ଠିକ୍ କହୁଥିଲେ । ତୋତ୍ତୋ-ଗ୍ୱନ୍ ଓ ଆଉ ସବୁ ପିଲା ପ୍ରଥମ ଥର ପାଇଁ ଘରର ରୋଷେଇକୁ କିଛି ଜିନିଷ ଦେଉଛନ୍ତି ।

ତୋତ୍ତୋ-ଗ୍ୱନ୍ କହି ପକାଇଲା, "ମୁଁ ଆଜି ମା'ଙ୍କୁ କଖାରୁ ସନ୍ତୁଳା କରିବାକୁ କହିବି । ପିଆଜଟା କ'ଣ ହେବ ପରେ କହିବା ।" ଅନ୍ୟମାନେ ମଧ୍ୟ ତାଙ୍କ ପରିବାରେ କ'ଣ କରାହେବ ସେକଥା ପ୍ରଧାନ ଶିକ୍ଷକଙ୍କୁ କହି ଗ୍ୱଲିଲେ ।

"ବଢ଼ିଆ ! ଏବେ ଯାଇ କଥାଟା ତମେ ବୁଝିଲ ।" ଏକଥା କହିଲା ବେଳକୁ ଖୁସିର ହସରେ ତାଙ୍କ ମୁହଁ ନାଲି ପଡ଼ିଗଲା । ସେଦିନର ଖେଳକୁଦ ବିଷୟରେ କଥା ହେଉ ହେଉ ଘର ଲୋକଙ୍କ ସହିତ ପିଲାମାନେ ତାଙ୍କର ପରିବା ଖାଉଥିବାର ଖୁସି ଦୃଶ୍ୟ ବୋଧହୁଏ ସେ କଳ୍ପନା କରୁଥିଲେ ।

ତାକାହାଶିର କଥା ସେ ନିଶ୍ଚୟ ଅଧିକ ଭାବୁଥିଲେ । ତା'ର ଖାଇବା ଟେବୁଲ ଗଦାଏ ପ୍ରଥମ ପୁରସ୍କାରରେ ଭରି ଯାଇଥିବ । ତା'ର ମନଟା ବି ବିଶ୍ୱାସ ଓ ଖୁସିରେ ଫୁଲି ଉଠିଥିବ । ତାହେଲେ ସେ ନିଜର ଆକାର ଓ ନବଢ଼ିବାର ଭୟରେ ଦବିଯିବ ନାହିଁ । କିଏ ଜାଣେ, ପ୍ରଧାନ ଶିକ୍ଷକ ହୁଏତ ଜାଣି ଜାଣି ଏଭଳି ଖେଳ ସବୁ ବାଛିଥିଲେ; ଯେପରି ତୋମୋଏ ଢାଞ୍ଚାର ସ୍ୱତନ୍ତ୍ର ଖେଳଗୁଡ଼ିକରେ ତାକାହାଶି ହିଁ ପ୍ରଥମ ହେବ ।

## କବି ଇଶା

ତୋମୋଏର ପିଲାମାନେ ପ୍ରଧାନ ଶିକ୍ଷକଙ୍କୁ "ଇଶା କୋବାୟାଶି" ବୋଲି ଡାକିବାକୁ ଭଲ ପାଉଥିଲେ । ତାଙ୍କ ନାଁରେ ସେମାନେ ସ୍ନେହଭରା ଗୀତ ବି ଲେଖିଥିଲେ:

ଇଶା କୋବାୟାଶି !
ଇଶା ତ ଆମର ବୁଢା ଭାଇ
ମୁଣ୍ଡରେ ତାଙ୍କର ବାଳ ନାହିଁ ?

ଏହାର କାରଣ ହେଉଛି ପ୍ରଧାନ ଶିକ୍ଷକଙ୍କ ସାଙ୍ଗିଆ ଥିଲା କୋବାୟାଶି । ଏହା ଜଣେ ପ୍ରସିଦ୍ଧ ପୁରୁଣା କବି ଇଶା କୋବାୟାଶିଙ୍କ ନାଁ ପରି । ପ୍ରଧାନ ଶିକ୍ଷକଙ୍କୁ ସେହି କବିଙ୍କର ହାଇକୁ (ଜାପାନୀ ଢଗ)ଗୁଡ଼ିକ ଖୁବ୍ ଭଲ ଲାଗୁଥିଲା । ଅନେକ ସମୟରେ ସେ ଏସବୁ ଗାଉଥିଲେ । ତେଣୁ ପିଲାଙ୍କୁ ଲାଗୁଥିଲା ତାଙ୍କ ପ୍ରଧାନ ଶିକ୍ଷକ ସୋସାକୁ କୋବାୟାଶିଙ୍କ ଭଳି କବି ଇଶା କୋବାୟାଶି ବି ତାଙ୍କର ଜଣେ ସାଙ୍ଗ ।

ଇଶାଙ୍କ ଗୀତ ସବୁ ଜୀବନର ସତ ଓ ସାଧାରଣ କଥା ଉପରେ ଲେଖାଥିଲା । ତେଣୁ ପ୍ରଧାନ ଶିକ୍ଷକଙ୍କୁ ଭଲଲାଗୁଥିଲା । ସେ ସମୟରେ ହଜାର ହଜାର କବି ଏଭଳି ଢଗ ଲେଖୁଥିଲେ । କିନ୍ତୁ ଇଶାଙ୍କର ଭାବ ଓ ଶୈଳୀକୁ ଅନ୍ୟ କେହି ନକଲ କରି ପାରୁନଥିଲେ । ତାଙ୍କ ଗୀତର ଶିଶୁ ସୁଲଭ ସରଳତା ପ୍ରଧାନ ଶିକ୍ଷକଙ୍କର ମନକୁ ଛୁଉଁଥିଲା । ତେଣୁ ଯେବେ ସୁବିଧା ପାଉଥିଲେ ସେ ତାଙ୍କ ପିଲାଙ୍କୁ ଇଶାଙ୍କ ଗୀତ ଶିଖାଉଥିଲେ । ପିଲାମାନେ ବି ଏଗୁଡ଼ିକୁ ପୂରା ମୁଖସ୍ଥ କରିଦେଉଥିଲେ । ଏଥିରୁ କିଛି ଥିଲା:

ପତଳା ବେଙ୍ଗ, ନୁଆଁନି ମୁଣ୍ଡ,
ଇଶତୋ ପାଖେ ଠିଆ
ଉଡ ଚଟିଆ,
ବାଟ ଖୋଲିଯା,
ଘୋଡା ପାଇଁ ବାଟ ଛାଡ,
ମାଛିକୁ ଛାଡ,
ହାତ ହଲାଏ, ପାଦ ହଲାଏ,
ସେ ଗ୍ୱହେଁ ତୁମ ଦୟା ।

ତୋତୋ-ଗ୍ୱନ୍ ତା'ର ପ୍ରଥମ ହାଇକୁ ଲେଖିଲା ନୋରାକୁରୋକୁ ନେଇ । ନୋରାକୁରୋ ଥିଲା ଗୋଟିଏ ବୁଲା କଳା କୁକୁର । ସେନାବାହିନୀରେ ସାଧାରଣ ସିପାହୀରୁ ଆରମ୍ଭ କରି ସେ କ୍ରମେ ଉପରକୁ ଉଠିଥିଲା । ଏହି କାହାଣୀଟି ପିଲାଙ୍କର ଖୁବ୍ ପ୍ରିୟ ଥିଲା । ତୋତୋ-ଗ୍ୱନ୍ ଲେଖିଲା

"କଳା ବୁଲା କୁକୁର
ବାହାରିଛି ଏବେ ବିଦେଶ୍ ବୁଲି
ସିପାହୀ ବେଶକୁ ଛାଡି ।"

ପ୍ରଧାନ ଶିକ୍ଷକ ଥରେ ଗୀତର ସ୍ୱରଟିଏ ତିଆରି କଲେ ଏବଂ ପିଲାମାନେ ତାକୁ ମିଶି ଗାଇଲେ ।

ପ୍ରଧାନ ଶିକ୍ଷକ ମଝିରେ ମଝିରେ ହାଇକୁ କ୍ଲାସ୍ ବି କରୁଥିଲେ, ଯଦିଓ ତାହା ପାଠ୍ୟକ୍ରମରେ ନଥିଲା ।

ସୋସାକୁ କୋବାୟାଶି




ପ୍ରଧାନ ଶିକ୍ଷକ କହିଥିଲେ, "ତମ ମନକଥାକୁ ନେଇ ଏକ ସରଳ ଓ ସାଦାସିଧା ହାଇକୁ ଲେଖ ।" ତୋତ୍ତୋ-ଚ୍ୟାନ୍‌ର ଲେଖାଟିକୁ ଏକ ଠିକ୍ ହାଇକୁ କହିହେବ ନାହିଁ । କିନ୍ତୁ ସେଥିରୁ କ'ଣ ତା'ର ମନକୁ ଛୁଉଁଥିଲା ତାହା ଜାଣି ହେଉଥିଲା । ତା'ର ହାଇକୁରେ ଶବ୍ଦ ସଂଖ୍ୟା ଠିକ୍ ନଥିଲା । ତେବେ ଇଶାଙ୍କର ହାଇକୁରେ ମଧ୍ୟ ଶବ୍ଦ ସଂଖ୍ୟା ସବୁବେଳେ ସ୍ଥିର ନଥିଲା । ତେଣୁ ତୋତ୍ତୋ-ଚ୍ୟାନ୍ ଭାବିଲା ତା'ର ଲେଖାରେ ବି ଏହା ଚଳିବ ।

କୁହୋନ୍‌ବୁତ୍‌ସୁ ମନ୍ଦିରକୁ ବୁଲି ଯିବାବେଳେ ବା ବର୍ଷା ଯୋଗୁଁ ବାହାରେ ଖେଳି ନ ହେଲାବେଳେ ତୋମୋଏର ଇଶା କୋବାୟାଶି ପିଲାଙ୍କୁ ହାଇକୁ ବିଷୟରେ କହୁଥିଲେ । ସେ ହାଇକୁ ବ୍ୟବହାର କରି ଜୀବନ ଓ ପ୍ରକୃତି ବିଷୟରେ ନିଜ ଚିନ୍ତାକୁ ବୁଝାଇ ଦେଉଥିଲେ ।

ଇଶାଙ୍କର କେତେକ ହାଇକୁ ତୋମୋଏକୁ ଲକ୍ଷ୍ୟ କରି ଲେଖାହେଲା ଭଳି ମନେ ହେଉଥିଲା ।

ବରଫ ତରଳିଲା ଭାଇ<br>
ବରଫ ତରଳିଲା,<br>
ଗାଁ ସାରା ଭରିଗଲେ<br>
ପିଲା ଆଉ ପିଲା ।

## ଏକ ରହସ୍ୟମୟ ଘଟଣା

ତୋତ୍ତୋ-ଗ୍ୱିନ୍ ଜୀବନରେ ପ୍ରଥମ ଥର ପାଇଁ କିଛି ପଇସା ପାଇଲା । ସ୍କୁଲରୁ ଘରକୁ ଫେରୁଥିବା ସମୟରେ ରେଳଗାଡ଼ିରେ ଏହା ଘଟିଲା । ସେ ଜିଉଗାଓକାଠାରେ ଓଇମାଚି ଗାଡ଼ି ଧରିଲା । ପର ଷ୍ଟେସନ୍ ମିଦୋରିଗାଓକାଠାରେ ପହଞ୍ଚିବା ଆଗରୁ, ଗୋଟିଏ ବଡ଼ ବାଙ୍କ ପଡ଼େ । ସେଠାରେ ରେଳଟି ସବୁବେଳେ କଡ୍ କଡ୍ ଶବ୍ଦ କରି ଅଣେଇ ହୋଇ ପଡୁଥିଲା । ତୋତ୍ତୋ-ଗ୍ୱିନ୍ ନିଜ ପାଦକୁ ଚ୍ୱିପି ରଖୁଥିଲା ଯେପରି ସେ ଢଳିପଡ଼ିବନି । ସେ ସବୁବେଳେ ଟ୍ରେନ୍‌ର ପଛର ଡାହାଣ ପଟ କବାଟ ପାଖରେ ଠିଆ ହେଉଥିଲା । କାରଣ ତା'ର ଷ୍ଟେସନ୍‌ରେ ପ୍ଲାଟ୍‌ଫର୍ମଟି ଡାହାଣ ପଟେ ପଡୁଥିଲା । ତେଣୁ ବାହାରକୁ ଯିବା ଲାଗି ଏହା ପାଖଦୁଆର ଥିଲା ।

ସେଦିନ ମଧ୍ୟ ଟ୍ରେନଟି ବାଙ୍କ ବୁଲିବାବେଳେ କଡ୍ କଡ୍ ଶବ୍ଦ କରି ଅଣେଇ ହୋଇପଡ଼ିଲା । ସେତେବେଳେ ତୋତ୍ତୋ-ଗ୍ୱିନ୍ ଦେଖିଲା ଯେ, ତା' ପାଦ ପାଖରେ ପଇସା ଭଳି କିଛି ଗୋଟେ ଚକ୍ ଚକ୍ କରୁଛି । ଆଗରୁ ଥରେ ସେ ପଇସାଟିଏ ପଡ଼ିଛି ଭାବି ଗୋଟାଇଲା ବେଳକୁ ପାଇଥିଲା ବୋତାମଟିଏ । ତେଣୁ ଭାବିଲା ଏଥର ଟିକେ ଭଲକରି ଦେଖି ନିଏ । ଟ୍ରେନ୍‌ଟି ସଳଖିଲା ମାତ୍ରେ, ସେ ମୁଣ୍ଡ ନୁଆଁଇ ଭଲ ଭାବେ ଦେଖିଲା । ଏଇଟା ନିଶ୍ଚୟ ପଇସା- ପାଞ୍ଚ ପଇସିଟିଏ । ଭାବିଲା ଟ୍ରେନ୍‌ଟି କଡ଼େଇ ଯାଇଥିବାବେଳେ ବୋଧେ କାହା ପକେଟରୁ ଗଳି ପଡ଼ିଛି ଓ ଗଡ଼ି ଗଡ଼ି ତା' ପାଖକୁ ଚ୍ୱଲି ଆସିଛି । ହେଲେ ଆଖ ପାଖରେ କେହି ବି ଠିଆ ହୋଇ ନଥିଲେ ।

କ'ଣ କରିବ ସେ ଭାବିଲା । ତା'ର ମନେ ପଡ଼ିଗଲା ଯେ କେଉଁଠି ପଇସା ପାଇଲେ ପୋଲିସ୍‌ବାଲାଙ୍କୁ ଦେଇଦେବା କଥା । କିନ୍ତୁ ଟ୍ରେନ୍‌ରେ ବା ପୋଲିସ୍‌ଟିଏ ସେ କୁଆଡୁ ପାଇବ ?

ଠିକ୍ ଏତିକିବେଳେ ଦୁଆର ଖୋଲି କଣ୍ଡକ୍ଟର ଡବା ଭିତରକୁ ଆସିଲେ । ତୋତ୍ତୋ-ଗ୍ୱିନ୍ କିଛି ନଭାବି ସେହି ପାଞ୍ଚ ପଇସିଟି ଉପରେ ପାଦ ଥୋଇ ଦେଲା । କଣ୍ଡକ୍ଟର୍ ତାକୁ ଚିହ୍ନିଥିଲେ ଓ ଦେଖି ହସିଦେଲେ । କିନ୍ତୁ ତୋତ୍ତୋ-ଗ୍ୱିନ୍ ଖୋଲା ମନରେ ହସିପାରିଲା ନାହିଁ । ପାଦ ତଳେ ପଇସାଟି ଚ୍ୱିପି ଧରିଥିବା ଯୋଗୁଁ ତାକୁ ଚ୍ୱୋରପଟିଆ ଲାଗୁଥାଏ । ଏତିକି ବେଳେ ଟ୍ରେନ୍‌ଟି ଓକାୟାମା ଷ୍ଟେସନ୍‌ରେ ଅଟକିଲା । ଏହା ଥିଲା ତା' ଘରର ଆଗ ଷ୍ଟେସନ୍ । ସେଠାରେ ବାଁ ପଟ କବାଟ ଖୋଲିଲା । ସେଦିନ ବେଶ୍ ଅଧିକ ଲୋକ ଚଢ଼ିଲେ । ଏତେ ଠେଲାପେଲାରେ ବି ତୋତ୍ତୋ-ଗ୍ୱିନ୍ ତା' ଡାହାଣ ପାଦଟିକୁ ଚ୍ୱିପି ରଖିଥାଏ । ତା' ଭିତରେ ସେ ଭାବି ଚ୍ୱଲିଥାଏ । ଟ୍ରେନ୍‌ରୁ ଓହ୍ଲାଇବାବେଳେ ସେ ପଇସାଟିକୁ ଗୋଟାଇ ନେବ ଓ ପୋଲିସକୁ ଦେଇ ଦେବ । ଆଉ ଏକ ଭାବନା ବି ତା' ମୁଣ୍ଡକୁ ଆସିଲା । ପାଦତଳୁ ପଇସା ଉଠାଇଲାବେଳେ ଯଦି କିଏ ତାକୁ ଦେଖନ୍ତି ? ସେମାନେ ହୁଏତ ଭାବିବେ ଯେ ସେ ଜଣେ ଚ୍ୱୋର । ସେତେବେଳେ ପାଞ୍ଚ ପଇସାରେ ମିଠା ପୁଡ଼ିଆଟିଏ କିଣି ହେଉଥିଲା । ତେଣୁ ବଡ଼ଙ୍କ ପାଇଁ ଏହା କିଛି ନଥିଲା । କିନ୍ତୁ ତୋତ୍ତୋ-ଗ୍ୱିନ୍ ଆଖିରେ ତାହା ବହୁତ ପଇସା ଥିଲା ।

"ଠିକ୍ କଥା", ସେ ନିଜକୁ କହିଲା, "ମୁଁ ଧୀରେ କହିବି, 'ଓଃ, ମୋର ପଇସାଟା ଗଳିପଡିଲା' । ତାହେଲେ ସମସ୍ତେ ଭାବିବେ ଏହା ମୋର !"

କିନ୍ତୁ ସାଙ୍ଗେ ସାଙ୍ଗେ ଆଉ ଗୋଟିଏ ଅସୁବିଧା ତା' ମନକୁ ଆସିଲା । ପଇସା ଉଠାଇଲା ବେଳେ ଆଉ କିଏ ଯଦି କହେ, ସେଇଟା ମୋର ! ତା'ହେଲେ ?

ଏମିତି ଅନେକ ବାଟ ସେ ମନରେ ଖେଳାଇଲା । ଶେଷରେ ସେ ଭାବିଲା ଯେ ଷ୍ଟେସନ୍ ପାଖେଇ ଆସିଲେ ଜୋତା ଫିତା ଭିଡିବା ଆଳରେ ନଇଁପଡି ପଇସାଟି ଉଠେଇ ନେବାଟା ସବୁଠାରୁ ଭଲ ହେବ । ଏହା ଠିକ୍ କାମ କଲା, ପାଞ୍ଚ ପଇସିଟି ମୁଠାଇ ଧରି ପ୍ଲାଟଫର୍ମକୁ ଓହ୍ଲେଇଲା ବେଳକୁ ସେ ଝାଳରେ ଜୁଡୁବୁଡୁ ହୋଇ ସାରିଥାଏ । ତାକୁ ବଡ ଥକା ବି ଲାଗୁଥାଏ । ଥାନାଟା ବେଶ୍ ଦୂରରେ । ପଇସାଟି ଦେବାକୁ ଗଲେ ଘରେ ପହଞ୍ଚିବାରେ ଡେରି ହୋଇଯିବ । ମା' ବ୍ୟସ୍ତ ହେବେ ।

ସେ ଶିଡିରୁ ଖସୁ ଖସୁ ଜୋରରେ ଭାବି ଗ୍ଲଲିଥାଏ । ଶେଷରେ ଏଇଆ ଠିକ୍ କଲା ।

"ଆଜି ଏଇଟାକୁ ଲୁଚେଇ ରଖିବି । ସକାଳେ ସ୍କୁଲରେ ସମସ୍ତଙ୍କୁ ପଗ୍ଚରି ଯାହା କରିବି । ଯାହା ହେଲେ ବି ମୁଁ ପଇସାଟି ପିଲାଙ୍କୁ ଦେଖାଇବି । କାରଣ ଆଗରୁ କେହି କେବେ ପଇସା ପାଇ ନାହାନ୍ତି ।" ସେ ଭାବିଲା ପଇସାଟିକୁ କେଉଁଠି ରଖିବ । ଘରକୁ ନେଲେ ମା' ପଗ୍ଚରିବେ । ତେଣୁ ଆଉ କେଉଁଠି ଲୁଗ୍ଚଇବାକୁ ହେବ । ଷ୍ଟେସନ୍ ପାଖରେ ଏକ ଜଙ୍ଗଲିଆ ଅଞ୍ଚଳରେ ସେ ପଶିଲା । ସେଠାରେ କେହି ତାକୁ ଦେଖି ପାରୁନଥିଲେ ଓ ସେଠାକୁ ପଶିବାର ଆଶା ନଥିଲା । ଜାଗାଟି ପୂରା ନିରାପଦ ମନେ ହେଲା । ସେଠି ଖଣ୍ଡେ ବାଡିରେ ଛୋଟ ଗାତଟିଏ ଖୋଳିଲା । ତା'ର ଅତି ମୂଲ୍ୟବାନ ପାଞ୍ଚ ପଇସିଟି ସେଠାରେ ପକାଇ ମାଟି ଘୋଡାଇ ଦେଲା । ଅଲଗା ବାରି ହେଉଥିବା ପଥରଟିଏ ତା' ଉପରେ ଥୋଇ ଚିହ୍ନ ରଖିଲା । ତା'ପରେ ଏକା ନିଃଶ୍ୱାସରେ ସେ ଘରକୁ ଦୌଡିଲା ।

ପ୍ରାୟ ସବୁ ରାତିରେ ତୋତ୍ତୋ-ଗ୍ଚନ୍ ସ୍କୁଲ ବିଷୟରେ ଗପି ଗ୍ଚଲିଥାଏ । ଶୋଇବାବେଳ ହେଲେ ମା' ତାକୁ ତଡିକରି ପଠାନ୍ତି । କିନ୍ତୁ ସେଦିନ ରାତିରେ ବିଶେଷ କିଛି ନକହି ସେ ଚଞ୍ଚଳ ଶୋଇ ପଡିଲା ।

ପରଦିନ ସକାଳେ ଉଠିଲାବେଳକୁ ତାକୁ ଲାଗୁଥାଏ ଯେପରି ତା'ର କିଛି ଅତି ଜରୁରୀ କାମ ଅଛି । ଗୁପ୍ତଧନ କଥାଟା ମନେ ପଡିଯିବାରୁ ସେ ଖୁସି ହୋଇଗଲା ।

ସେଦିନ ଘରୁ ସେ ସହଳ ବାହାରିଲା, ରକିକୁ ନେଇ ସେ ସେହି ବୁଦା ପାଖକୁ ଦୌଡିଲା ।

"ହାଁ ଏଇଠି ।" ପଥର ଚିହ୍ନଟି କାଲି ଭଳି ଯେମିତି ସେମିତି ଥିଲା ।

"ତତେ ଆଜି ମୁଁ ଗୋଟିଏ ବଢିଆ ଜିନିଷ ଦେଖାଇବି ।"

ରକିକୁ ଏପରି କହି ସେ ପଥରଟି ଘୁଞ୍ଚେଇ ଦେଲା ଓ ହୁସିଆର ହୋଇ ଖୋଳିଲା । ହେଲେ, ଆଶ୍ଚର୍ଯ୍ୟର କଥା ! ପାଞ୍ଚ ପଇସିଟି ଗାଏବ୍ । ସେ ଆଗରୁ କେବେ ଏତେ ଆଶ୍ଚର୍ଯ୍ୟ ହୋଇ ନଥିଲା । ସେ ଲୁଗ୍ଚଉଥିବାବେଳେ କିଏ ଆଉ ଦେଖି ଦେଇଥିଲା କି ? ପଥରଟା ଆପେ ଆପେ ଘୁଞ୍ଚିଗଲା କି ? ସେ ଗ୍ଚରିପଟେ ଖୋଳି ପକାଇଲା କିନ୍ତୁ

ପଇସାଟି କେଉଁଠି ବି ମିଳିଲାନି । ସେ ବଡ ହତାଶ ହୋଇ ପଡିଲା - ତୋମୋଏରେ ସେ ତା'ର ସାଙ୍ଗମାନଙ୍କୁ ଦେଖାଇ ପାରିଲାନି । ତା'ଠୁ ବଳି ତାକୁ ଘାରିଲା ଘଟଣାଟିର ରହସ୍ୟ ।

ତା'ପରଠୁ ସିଏ ଯେବେ ବି ସେ ରାସ୍ତାରେ ଯାଏ ବୁଦା ମୂଳ ଖୋଲି ଦେଖେ । କିନ୍ତୁ ସେ ପାଞ୍ଚ ପଇସିଟି ଆଉ ମିଳିଲା ନାହିଁ ।

"ବୋଧେ ଝୁଚୁନ୍ଦ୍ରା ସେଇଟିକୁ ନେଇଗଲା ।" ଆଉ କେବେ ସେ ଭାବେ, "ମୁଁ ସ୍ୱପ୍ନରେ ଦେଖୁଥିଲି କି ?" କିମ୍ବା "ବୋଧେ ଭଗବାନ ମୋର ଲୁଗ୍ୱଇବାଟା ଦେଖି ପକାଇଲେ ।" କିନ୍ତୁ ଏ ବିଷୟରେ ସେ ଯେତେ ଭାବିଲା, ଘଟଣାଟା ସେତେ ଅଦ୍ଭୁତ ମନେ ହେଲା । ସେ ରହସ୍ୟ ତୋତୋ-ଗ୍ୱନ୍ କେବେ ବି ଭୁଲିପାରିଲା ନାହିଁ ।

## ହାତରେ କଥାକୁହା

ଦିନେ ସଞ୍ଜବେଳେ ଜିଉଗାଓକା ଷ୍ଟେସନ୍ ପାଖରେ ଦୁଇଟି ପୁଅ ଓ ଝିଅଟିଏ ଏକାଠି ଠିଆ ହୋଇଥିଲେ । ସେମାନେ ତୋତୋ-ଗ୍ୱନ୍‌ଠାରୁ କିଛି ବଡ ଥିଲେ । ଲାଗୁଥିଲା ଯେପରି ସେମାନେ ଗୋଟିଏ ମଉଜିଆ ଖେଳ ଖେଳୁଛନ୍ତି । କିନ୍ତୁ ତୋତୋ-ଗ୍ୱନ୍ ଲକ୍ଷ୍ୟ କଲା ଯେ ସେମାନେ ଆଙ୍ଗୁଠିରେ ଯଥେଷ୍ଟ ଅଧିକ ସଙ୍କେତ ଦେଉଛନ୍ତି । ତାକୁ ବେଶ୍ ମଜା ଲାଗିଲା । ଭଲ କରି ଦେଖିବା ପାଇଁ ସେ ଆଉ ଟିକିଏ ପାଖକୁ ଗଲା । ମନେ ହେଲା ଯେ ସେମାନେ ଶବ୍ଦ ନକରି କିଛି କଥା ହେଉଛନ୍ତି । ଜଣେ ହାତରେ କିଛି ଭଙ୍ଗୀ କରୁଛି । ତାହା ଦେଖି ଆଉ ଜଣେ କେତେ ଅଲଗା ଭଙ୍ଗୀ ଦେଖାଉଛି । ତା'ପରେ ତୃତୀୟ ଜଣକ ବି ଅଳ୍ପ କିଛି ଯୋଡୁଛି । ଶେଷରେ ସମସ୍ତଙ୍କ ମୁହଁ ହସରେ ଫାଟି ପଡୁଛି । ହେଲେ, ପାଟିରୁ ବିଶେଷ ଶବ୍ଦ ବାହାରୁ ନାହିଁ । ଲାଗୁଥିଲା ସେମାନେ ବହୁତ ମଜା ପାଉଛନ୍ତି । କିଛି ସମୟ ଦେଖିଲା ପରେ, ତୋତୋ-ଗ୍ୱନ୍ ବୁଝିପାରିଲା ଯେ ସେମାନେ ହାତରେ କଥାବାର୍ତ୍ତା କରୁଛନ୍ତି ।

"ମୁଁ ବି ହାତରେ କଥା କହିପାରନ୍ତି କି !" ସେ ମନେ ମନେ କହିଲା । ଭାବିଲା ପାଖକୁ ଯାଇ ତାଙ୍କ ଦଳରେ ମିଶିବ; କିନ୍ତୁ ତାଙ୍କୁ ହାତରେ କିପରି ପଗ୍ୱରିବ ସେ ଜାଣି ନଥିଲା । ଆଉ ତା'ଛଡା ସେମାନେ ତୋମୋଏର ପିଲା ନଥିଲେ । ତାଙ୍କୁ ଏହା ଭଲଲାଗି ନପାରେ । ତେଣୁ ସେମାନେ ଟୋକିଓ ଗାଡି ଧରିବାକୁ ଯିବା ଯାଏଁ ତୋତୋ-ଗ୍ୱନ୍ ତାଙ୍କୁ ଖାଲି ଗ୍ୱହିଁରହିଲା ।

ସେ ଠିକ୍ କଲା, "ଦିନେ ମୁଁ ନିଶ୍ଚୟ ହାତରେ କଥା ହେବା ଶିଖିବି ।" କିନ୍ତୁ

ତୋତୋ-ଗ୍ୱନ୍ ଏପାଏଁ ମୂକ ଲୋକଙ୍କ ବିଷୟରେ ଜାଣି ନଥିଲା । ସେ ଜାଣି ନଥିଲା ଯେ ଏହି ପିଲା ସବୁ ଓଇମାଚି ମ୍ୟୁନିସିପାଲିଟି ମୂକ, ବଧିର ସ୍କୁଲର ପିଲା । ସେ ସବୁଦିନ ଚଢୁଥିବା ଟ୍ରେନ୍‌ର ଶେଷ ଷ୍ଟେସନ ଥିଲା ଏହି ଓଇମାଚି ।

ହାତରେ କଥା ହେଲାବେଳେ ସେ ପିଲାଙ୍କର ଆଖିଗୁଡ଼ିକ ଝଲ୍‌ସୁଥିଲା । ସେ ଗ୍ୱହାଣୀ ତୋତୋ-ଗ୍ୱନ୍‌କୁ ଭାରି ଭଲଲାଗିଲା । ସେମାନଙ୍କ ସହ ଦିନେ କିପରି ସାଙ୍ଗ ହୋଇ ପାରିବ ସେକଥା ସେ ଭାବିବାକୁ ଲାଗିଲା ।

## ସତଗ୍ୱାଳିଶ ପାଇକ କଥା

କୋବାୟାଶିଙ୍କ ଶିକ୍ଷା ପଦ୍ଧତି ଅଦ୍ୱିତୀୟ ଥିଲା । ସେ ୟୁରୋପ ଓ ଅନ୍ୟ ଦେଶର ଶିକ୍ଷା ପଦ୍ଧତିରୁ ଅନେକ କିଛି ଗ୍ରହଣ କରିଥିଲେ । ତେମୋଏର ଇଉରିଦ୍‌ମିକ୍‌ସ୍ ଶିକ୍ଷା, ଖାଇବାବେଳର ଭାଷଣ, ପ୍ରକୃତି ବୁଲା ଓ ଖାଇବାବେଳ ଗୀତ ଆଦିରୁ ଏହା ଜଣା ପଡୁଥିଲା ।

ଶ୍ରୀ ମାରୁୟାମା ପ୍ରଧାନ ଶିକ୍ଷକଙ୍କର ଡାହାଣ ହାତ ଲୋକ ବା ସହକାରୀ ପ୍ରଧାନ ଶିକ୍ଷକ ଭଳି କାମ କରୁଥିଲେ । କିନ୍ତୁ ଅନେକ ଦିଗରୁ ସେ ଥିଲେ ପ୍ରଧାନ ଶିକ୍ଷକଙ୍କର ଠିକ୍ ଓଲଟା । ତାଙ୍କର ନାଁ, ମାରୁୟାମାର ଅର୍ଥ ଥିଲା 'ଗୋଲ୍ ପାହାଡ଼ ।' ତାଙ୍କ ମୁଣ୍ଡଟା ବି ସେମିତି ପୂରା ଗୋଲ ଓ ଚନ୍ଦା । କେବଳ କାନ ସିଧାରେ ପଛ ଆଡ଼କୁ କେଉଁଏ ଧଳା ଚୁଟି ଥିଲା । ଗାଢ଼ ଲାଲ୍ ଗାଲ ଦିଟା ଉପରକୁ ଗୋଲ୍ ଗୋଲ୍ ଚଷମାଟା ଯୋଗୁଁ କୋବାୟାଶିଙ୍କଠାରୁ ସେ ପୂରା ଅଲଗା ଦିଶୁଥିଲେ । ଚୀନଦେଶୀୟ ଶାସ୍ତ୍ରୀୟ ସଙ୍ଗୀତ ଗମ୍ଭୀର ସ୍ୱରରେ ଗାଇବାକୁ ତାଙ୍କୁ ଭଲ ଲାଗୁଥିଲା ।

ଡିସେମ୍ବର ୧୪ ତାରିଖ ସକାଳେ ପିଲାମାନେ ସ୍କୁଲରେ ଏକାଠି ହେଲେ । ମାରୁୟାମା ଘୋଷଣା କଲେ ଯେ: ''ଆଜକୁ ଅଢେଇ ଶହ ବର୍ଷ ତଳେ, ଏହି ଦିନରେ ୪୭ଜଣ ବୀର ପାଇକ ତାଙ୍କର ବୀରତ୍ୱର ପ୍ରଦର୍ଶନ କରିଥିଲେ । ତେଣୁ ଆଜି ଆମେ ସେଙ୍ଗାକୁଜି ଦେଉଳଠାରେ ଯାଇ ସେମାନଙ୍କ କବରକୁ ସମ୍ମାନ ଦେବା । ତୁମ ଘରେ ଏକଥା ଜାଣିଛନ୍ତି ।'' ପ୍ରଧାନ ଶିକ୍ଷକ ମାରୁୟାମାଙ୍କ ଯୋଜନାକୁ ବିରୋଧ କଲେନାହିଁ । ଏ ବିଷୟରେ କୋବାୟାଶିଙ୍କର ମତ କ'ଣ ତାହା ଅଭିଭାବକମାନେ ଜାଣି ନଥିଲେ । କିନ୍ତୁ ସେମାନେ ଜାଣିଥିଲେ ଯେ ଯଦି ସେ ବିରୋଧ କରୁନାହାନ୍ତି, ତେବେ ସେ ନିଶ୍ଚୟ ରାଜି ଥିବେ । ତଥାପି ତୋମୋଏର ପିଲାମାନେ ସେଠାକୁ ଯିବାଟା ଅଭିଭାବକମାନଙ୍କୁ ବିସ୍ମିତ କରିଥିଲା ।

ବାହାରିବା ଆଗରୁ ମାରୁୟାମା ବିଖ୍ୟାତ ୪୭ଙ୍କର କଥା ଶୁଣାଇଲେ । ଏମାନେ ଆସ୍ୱାନୋ ନାମକ ଜଣେ ଜମିଦାରଙ୍କର ବିଶ୍ୱସ୍ତ ପାଇକ ଥିଲେ । ତାଙ୍କ ନେତାଙ୍କୁ ଦୟନୀୟ ଭାବେ ମାରି ଦିଆଯାଇଥିଲା । ଆସ୍ୱାନୋଙ୍କର ବୀର ଓ ଅନୁଗତ ମୃତ ପ୍ରଭୁଙ୍କର ପ୍ରତି ହୋଇଥିବା ଅସମ୍ମାନର ପ୍ରତିଶୋଧ ନେବାପାଇଁ ସେମାନେ ଦୁଇବର୍ଷ ଧରି ଯୋଜନା କରିଥିଲେ । ଜଣେ ସାହସୀ ବେପାରୀ ରିହି ଆମାନୋୟା ମଧ୍ୟ ତାଙ୍କ ସହିତ ମିଶିଥିଲେ । ସେ ହିଁ ସବୁ ଅସ୍ତ୍ରଶସ୍ତ୍ର ଯୋଗାଇଥିଲେ । ଶେଷରେ ସାମରିକ ଶାସକଙ୍କ ଦ୍ୱାରା ସେ ଧରାହେଲେ । ସେବେ ସେ କହିଗ୍ଲେଲିଲେ,"ମୁଁ ରିହି ଆମାନୋୟା, ଜଣେ ପୁରୁଷ" ଏବଂ କୌଣସି ଗୁପ୍ତ କଥା ପ୍ରକାଶ କଲେନାହିଁ । ପିଲାଏ ଅଧିକାଂଶ କଥା ବୁଝିପାରିଲେ ନାହିଁ, କିନ୍ତୁ କୁହୋନ୍‌ବୁତ୍‌ସୁ ମନ୍ଦିରଠୁ ଆହୁରି ଦୂର ଏକ ଜାଗାକୁ ବୁଲିବା ପାଇଁ ଯାଉଥିବାରୁ ବେଶ୍ ଉଲ୍ଲସିତ ଥିଲେ । ଶିକ୍ଷକମାନଙ୍କଠାରୁ ବିଦାୟ ନେଇ ପଚିଶ ଜଣ ଯାକ ପିଲା



ମାରୁୟାମାଙ୍କ ସହ ଗ୍ଲିଲେ। ମଝିରେ ମଝିରେ ପିଲାଙ୍କ ମୁହଁରୁ ଶୁଭୁଥାଏ, "ମୁଁ ରିହି ଆମାନୋୟା, ଜଣେ ପୁରୁଷ।" ଝିଅମାନେ ବି ଏପରି ପାଟି କରୁଥା'ନ୍ତି। ବାଟରେ ଯାଉଥିବା ଲୋକେ ଫେରି ଗ୍ଚୁହଁଥା'ନ୍ତି ଓ ଝିଅଙ୍କ କଥା ଶୁଣି ହସୁଥା'ନ୍ତି। ସେଙ୍ଗାକୁଜି ୭ ମାଇଲ୍‌ର ବାଟ। ବାଟରେ ଗାଡି ମଟର ପ୍ରାୟ ଦେଖା ନଥାଏ। ଡିସେମ୍ବର ନୀଳ ଆକାଶ ତଳେ ପାଟି କରି ଗ୍ଲିଥିବା ପିଲାଙ୍କୁ ବାଟ ଜଣା ପଡୁନଥିଲା।

ସେମାନେ ସେଙ୍ଗାକୁଜିରେ ପହଞ୍ଚିବା ପରେ ମାରୁୟାମା ପ୍ରତି ପିଲାକୁ ଗୋଟିଏ ଧୂପକାଠି ଓ କିଛି ଫୁଲ ଦେଲେ। କୁହୋନବୁତ୍‌ସୁ ଅପେକ୍ଷା ଏହି ଦେଉଳଟି ସାନ ଥିଲା। କିନ୍ତୁ ଏକ ଧାଡିରେ ଏଠି ଅନେକଗୁଡିଏ କବର ଥିଲା। ସତଗ୍ଳିଶ ପାଇକଙ୍କ ସ୍ମୃତିରେ ଜାଗାଟିର ପବିତ୍ରତା କଥା ଭାବି ତୋତୋ-ଗ୍ନନ୍ ବେଶ୍ ଗମ୍ଭୀର ଥିଲା। କବରରେ ଧୂପ ଓ ଫୁଲ ଦେଇ ମାରୁୟାମାଙ୍କ ଭଳି ସେ ମୁଣ୍ଡ ନୁଆଁଇଲା। ପିଲାମାନେ ପୂରା ଚୁପ୍ ଥା'ନ୍ତି। ତୋମୋଏର ପିଲାଙ୍କ ପାଇଁ ଏପରି ଚୁପ୍‌ଚାପ୍ ରହିବା ପୂରା ଅସ୍ୱାଭାବିକ। କବର ଉପରେ ପିଲାଏ ଦେଇଥିବା ଧୂପ କାଠିର ଧୂଆଁ ଉପରକୁ ଉଠୁଥାଏ। ଅନେକ ସମୟ ଧରି ସେ ଧୂଆଁ ଅଙ୍କାବଙ୍କା ଚିତ୍ର ଆଙ୍କି ଗ୍ଲିଲା।

ଏହାପରଠୁଁ ଧୂପର ବାସ୍ନା ସବୁବେଳେ ପିଲାଙ୍କୁ ମାରୁୟାମା ଓ ରିହି ଆମାନୋୟାଙ୍କ ବିଷୟରେ ମନେପକାଇ ଦେଉଥିଲା। ଏହା ତାଙ୍କ ପାଇଁ ନୀରବତାର ବାସ୍ନା ବି ହୋଇ ରହିଲା।

ପିଲାମାନେ ହୁଏତ ସତଗ୍ଳିଶ ପାଇକଙ୍କ ବିଷୟରେ ପୂରା ବୁଝି ନଥିଲେ। କିନ୍ତୁ ପାଇକମାନଙ୍କ ପାଇଁ ତାଙ୍କର ଦରଦଭରା କଥା ଶୁଣି ପିଲାମାନେ ମାରୁୟାମାଙ୍କୁ କୋବାୟାଶିଙ୍କ ଭଳି ଖୁବ୍ ଶ୍ରଦ୍ଧା ଓ ସମ୍ମାନ ଦେଖାଇଲେ। ତୋତୋ-ଗ୍ନନ୍‌କୁ ବେଶୀ ଭଲ ଲାଗୁଥିଲା ତାଙ୍କର ଚଷମାର ମୋଟାକାଚ ତଳୁ ଦେଖାଯାଉଥିବା ଟିକି ଆଖି ଦୁଇଟି ଓ ତାଙ୍କ ବିରାଟ ଦେହ ସାଙ୍ଗକୁ ମେଳ ଖାଉନଥିବା ଧୀର ସ୍ୱରଟି।

## *ମାସାଓ-ଗ୍ନନ୍*

ତୋତୋ-ଗ୍ନନ୍‌ର ଷ୍ଟେସନ୍ ଯିବା ଆସିବା ବାଟରେ ଗୋଟିଏ ଛୋଟ ବସ୍ତି ଥିଲା। ସେଠାରେ କୋରିଆରୁ ଆସିଥିବା ଲୋକମାନେ ରହୁଥିଲେ। ଅବଶ୍ୟ ସେମାନେ କୋରିଆର ବୋଲି ତୋତୋ-ଗ୍ନନ୍ ଜାଣି ନଥିଲା। ସେମାନଙ୍କ ଭିତରୁ କେବଳ ଜଣେ ସ୍ତ୍ରୀ ଲୋକକୁ ସେ କିଛି ଚିହ୍ନିଥିଲା। ସେହି ମୋଟି ସ୍ତ୍ରୀଟି ମୁଣ୍ଡରେ ଏକ ବଡ ଖୋସା ପକାଉଥିଲେ। ସେ ହଳେ ଧଳା ରବର ଜୋତା ପିନ୍ଧୁଥିଲେ ଯାହାର ଅଗ ଦୁଇଟି ଗୋଜିଆ ହୋଇ ଡଙ୍ଗା ପରି ଦିଶୁଥିଲା। ତାଙ୍କର ପୋଷାକ ଥିଲା ଗୋଟିଏ ଲମ୍ବା ଘାଘରା ଓ ଛୋଟ ବ୍ଲାଉଜ।

ବ୍ଲାଉଜର ଗୋଟିଏ ଫିତା ସାମନା ପଟେ ଗଣ୍ଠି ପଡିଥାଏ । ଆଉ ସେ ସବୁବେଳେ ତାଙ୍କ ପୁଅକୁ ଖୋଜି ଖୋଜି ଡାକୁଥାନ୍ତି "ମାସୋ-ଗ୍ୱନ୍ !" ସେ ଅନ୍ୟମାନଙ୍କ ଭଳି 'ମାସାଓ-ଗ୍ୱନ୍' ବୋଲି ଉଚ୍ଚାରଣ ନକରି 'ଓ' ଉପରେ ବେଶୀ ଜୋର ଦେଇ, 'ଗ୍ୱନ୍'କୁ ଲମ୍ୱାଇ କହୁଥିଲେ । ତାଙ୍କର ସରୁ ସ୍ୱରରେ ଏହି ଡାକରେ ଖୁବ୍ ଦୁଃଖ ଭରି ରହିଥିଲା ଭଳି ଶୁଣାଯାଉଥିଲା ।

ସେହି ବସ୍ତିଟି ଓଇମାଚି ରେଳଲାଇନ୍‌ର ଧାରରେ ଗୋଟିଏ ଛୋଟ ବନ୍ଧ ଉପରେ ଥିଲା । ମାସାଓ-ଗ୍ୱନ୍‌କୁ ତୋତ୍ତୋ-ଗ୍ୱନ୍ ଜାଣିଥିଲା । ସେ ତୋତ୍ତୋ-ଗ୍ୱନ୍‌ଠାରୁ ଟିକିଏ ବଡ ଥିଲା । ସେ ବୋଧେ ଦ୍ୱିତୀୟ ଶ୍ରେଣୀରେ ପଢୁଥିଲା, ହେଲେ କେଉଁ ସ୍କୁଲରେ ତାହା ତୋତ୍ତୋ-ଗ୍ୱନ୍ ଜାଣି ନଥିଲା । ତା'ର ଅଡୁଆ ବାଳଗୁଡାକ ଫୁରୁ ଫୁରୁ ହୋଇ ଉଡୁଥିଲା ଓ ସାଥିରେ ସବୁବେଳେ ଗୋଟିଏ କୁକୁର ଥିଲା । ତୋତ୍ତୋ-ଗ୍ୱନ୍ ଦିନେ ଘରକୁ ଫେରିଲା ବେଳକୁ ମାସାଓ-ଗ୍ୱନ୍ ବନ୍ଧ ଉପରେ ଠିଆ ହୋଇଥାଏ । ଗୋଡ ଦୁଇଟି ମେଲାଇ ଅଣ୍ଟାରେ ହାତ ଦେଇ ସେ ଗୁଣ୍ଡାଙ୍କ ଭଳି ଠିଆ ହୋଇଥାଏ ।

ତୋତ୍ତୋ-ଗ୍ୱନ୍‌କୁ ଦେଖି ସେ ଜୋରରେ ପାଟି କଲା, "କୋରିଆନ୍ !" ତା' ସ୍ୱରଟା ଧମକ ଓ ଘୃଣାରେ ଭରିଥିଲା । ତୋତ୍ତୋ-ଗ୍ୱନ୍ ଡରିଗଲା । ସେ ମାସାଓ-ଗ୍ୱନ୍‌କୁ କେବେ ଖରାପ କରି କହିନଥିଲା । ସେମାନେ ଆଦୌ କେବେ କଥା ବି ହୋଇନଥିଲେ । ତେଣୁ ଏପରି କଥାରେ ସେ ଚମକି ପଡିଲା ।

ଘରକୁ ଫେରି ମାଙ୍କୁ ସେ ସବୁକଥା କହିଲା, "ମାସାଓ-ଗ୍ୱନ୍ ମୋତେ 'କୋରିଆନ୍' କହିଲା ।" ମା' ତା'ର ପାଟିରେ ହାତ ଦେଇଦେଲେ, ତାଙ୍କ ଆଖିରେ ଲୁହ ଭରିଗଲା । କଥାଟା ନିଶ୍ଚୟ ଖରାପ ଭାବି ତୋତ୍ତୋ-ଗ୍ୱନ୍ ଘାବରାଇ ଗଲା । ମା'ଙ୍କ ଆଖିରେ ଲୁହ ଥାଏ ଓ ନାକ ଅଗଟା ନାଲି ପଡିଯାଇଥାଏ ।

ସେ କହିଲେ, "ବିଚରା ପିଲାଟି; ସମସ୍ତେ ତାକୁ ନିଶ୍ଚୟ ସବୁବେଳେ 'କୋରିଆନ୍', 'କୋରିଆନ୍' କହୁଥିବେ । ତେଣୁ ସେ ଭାବୁଛି ଯେ 'କୋରିଆନ' ଶବ୍ଦଟି ଗୋଟିଏ ଗାଳି । ସାନ ଛୁଆଟା ତ, ଏ ଯାଏଁ ଏ ଶବ୍ଦଟାର ଅର୍ଥ ବୁଝିପାରିନି । ସେ ଭାବୁଛି ଏଇଟା 'ଗଧ' ଭଳି ଗୋଟିଏ ଶବ୍ଦ । ସେ ଏହି "କୋରିଆନ" ଶବ୍ଦଟି ଏତେ ଥର ଶୁଣିଛି । ତେଣୁ ସେ ଯାହାକୁ ହେଲେ ବି ଏଭଳି କହିବାକୁ ଚାହୁଁଥିଲା । ତେଣୁ ସେ ତାକୁ କୋରିଆନ୍ କହିଲା । ଲୋକ କାହିଁକି ଏମିତି ନିଷ୍ଠୁର ହୁଅନ୍ତି ଯେ ?"

ଲୁହ ପୋଛି ମା' ତୋତ୍ତୋ-ଗ୍ୱନ୍‌କୁ ଧୀରେ ଧୀରେ କହିଲେ, "ତୁ ଜାପାନୀ; ଆଉ ମାସାଓ-ଗ୍ୱନ୍ ଆସିଛି କୋରିଆ ବୋଲି ଏକ ଦେଶରୁ । କିନ୍ତୁ ସେ ତୋ ଭଳି ଏକ ସାନ ଛୁଆ । ତେଣୁ ମା' ତୋତ୍ତୋ-ଗ୍ୱନ୍, ତୁ କେବେ ବି କାହାକୁ ଅଲଗା ଭାବିବୁନି । କେବେ ଭାବିବୁନି ଯେ, ଏ ଲୋକଟା ଜାପାନୀ, ସେ କୋରିଆନ୍ । ମାସାଓ-ଗ୍ୱନ୍‌କୁ ଭଲ ବ୍ୟବହାର ଦେଖା । ଏଇଟା କେତେ ଦୁଃଖର କଥା ଯେ କେତେ ଲୋକ ଭାବନ୍ତି ଯେ ସବୁ କୋରିଆନ୍ ଲୋକ ଖରାପ !"

ତୋତ୍ତୋ-ଗ୍ୱନ୍ ପାଇଁ ସବୁ ବୁଝିବା କଷ୍ଟକର ଥିଲା, କିନ୍ତୁ ସେ ବୁଝିଲା ଯେ ଛୋଟ ପିଲା ମାସାଓ-ଗ୍ୱନ୍‌କୁ ଲୋକେ ବିନା କାରଣରେ ଖରାପ କଥା କହୁଛନ୍ତି । ବୋଧେ

ସେଇଥିପାଇଁ ତା'ର ମା' ସବୁବେଳେ ବ୍ୟସ୍ତ ହୋଇ ତାକୁ ଖୋଜୁଥା'ନ୍ତି । ତା' ଆରଦିନ ସକାଳେ ବନ୍ଧ ପାଖରେ ''ମାସୋ-ଗ୍ୱନ୍'' ଡାକ ଶୁଣି ସେ ଭାବିଲା ଏ ପୁଅଟା କୁଆଡେ ଯାଏ ? ତା'ପରେ ମନେ ମନେ ଠିକ୍ କଲା ଯେ ଯଦି ମାସାଓ-ଗ୍ୱନ୍ ତାକୁ ପୁଣି 'କୋରିଆନ୍' ଡାକେ ତେବେ ସେ ଉତ୍ତର ଦେବ, ''ଆମେ ସଭିଏଁ ପିଲା; ସମସ୍ତେ ସମାନ ।'' ଆଉ ସେ ତା'ସହ ସାଙ୍ଗ ହେବାକୁ ଚେଷ୍ଟା କରିବ ।

ମାସାଓ-ଗ୍ୱନ୍‌ର ମା'ଙ୍କର ସ୍ୱରରେ ବିରକ୍ତି ଓ ବ୍ୟସ୍ତତା ଭରି ରହିଥିଲା । ଆଉ ଗୋଟିଏ ବିଶେଷ ଦରଦ ଥିଲା ଭଳି ମଧ୍ୟ ଲାଗୁଥିଲା । ବେଶ୍ କିଛି ସମୟ ଧରି ସେ ସ୍ୱରଟି ପବନରେ ଭାସି ବୁଲୁଥିଲା.... ରେଳ ଗାଡ଼ିର ଶବ୍ଦ ତାକୁ ବୁଡାଇ ଦେବା ଯାଏଁ । ''ମାସୋ-ଗ୍ୱନ'' ତାଙ୍କର ସେହି ଦୁଃଖ ଲୁହ ଭିଜା ସ୍ୱରଟି ଆଦୌ ସହଜରେ ଭୁଲି ହୁଏନାହିଁ ।

## ତୋଓ୍ୱୋ-ଗ୍ୱନ୍‌ର ବେଣୀ

ସେତେବେଳେ ତୋଓ୍ୱୋ-ଗ୍ୱନ୍‌ର ଦୁଇଟା ବଡ ଲକ୍ଷ୍ୟ ଥିଲା । ଗୋଟିଏ ଥିଲା ଖେଳ ପୋଷାକ ପିନ୍ଧିବା । ଆରଟି ଥିଲା ବେଣୀ ବାନ୍ଧିବା ! ଟ୍ରେନ୍‌ରେ ଝିଅମାନଙ୍କର ବେଣୀ ଦେଖି ସେ ତା'ର ବାଳକୁ ଏଭଳି ସଜାଇବାକୁ ଗ୍ୱହୁଁଥିଲା । ତା' ଶ୍ରେଣୀରେ ଅନ୍ୟସବୁ କୁନି ଝିଅଙ୍କର ବାଳ ଛୋଟ ଥିଲା ଓ ଆଗରେ ସିଧା କଟା ହୋଇଥିଲା । ତୋଓ୍ୱୋ-ଗ୍ୱନ୍‌ର ବାଳ ଅଧିକ ଲମ୍ବା ଥିଲା । ସେ କଡରେ ସିନ୍ଥା କାଟୁଥିଲା ଓ ଉପରେ ରିବନ୍ ବାନ୍ଧୁଥିଲା । ମା'ଙ୍କୁ ଏଭଳି ଭଲ ଲାଗୁଥିଲା । ତୋଓ୍ୱୋ-ଗ୍ୱନ୍ ବି ଲମ୍ବା ବାଳ ଗ୍ୱହୁଁଥିଲା ।

ଶେଷରେ ଦିନେ ସେ ମା'ଙ୍କ ସାଙ୍ଗରେ ଲଗାଇ ଦି'ଟା ସରୁ ବେଣୀ ପକାଇଲା । ବେଣୀର ମୁଣ୍ଡରେ ରବର୍ ଫିତା ଦେଇ ପତଳା ରିବନ୍ ବନ୍ଧା ହେଲା । ନିଜକୁ ସେ ଜଣେ ବଡ ଝିଅ ବୋଲି ଭାବିଲା । ଅଇନାରେ ଦେଖି ସେ ଜାଣିଲା ଯେ ତା' ବେଣୀ ଦୁଇଟି ବେଶ୍ ପତଳା ଓ ଛୋଟ । ଏହା ସରୁ ମୂଷା ଲାଞ୍ଜ ଭଳି ଦେଖା ଯାଉଥିଲା । ତଥାପି ସେ ରକି ପାଖକୁ ଦୌଡିଗଲା ଓ ଗର୍ବର ସହ ବେଣୀ ଦୁଇଟିକୁ ଟେକି ଧରି ଦେଖାଇଲା । ରକି ଆଖି ମିଟି ମିଟି କରି ଗ୍ୱହିଁଲା ।

''ମୁଁ ତୋ ରୁମରେ ବି ମୁଁ ବେଣୀ ପକେଇ ପାରନ୍ତି କି !'' ସେ କହିଲା ।

ଟ୍ରେନ୍‌ରେ ସେ ମୁଣ୍ଡକୁ ପୂରା ସ୍ଥିର ରଖିଥାଏ । କାଳେ ତା'ର ବେଣୀ ଖୋଲି ଯିବ ! ସେ ଭାବିଲା ଟ୍ରେନ୍‌ରେ କିଏ ଦେଖି କୁହନ୍ତା କି, ''କେଡେ ବଢିଆ ବେଣୀ !'' କିନ୍ତୁ କେହି କିଛି କହିଲେନାହିଁ । କିନ୍ତୁ ସ୍କୁଲ୍‌ରେ ପହଞ୍ଚୁ ପହଞ୍ଚୁ ତା' ଶ୍ରେଣୀର ଝିଅ

ମିୟୋ-ଗ୍ୱନ୍, ସାକୋ-ଗ୍ୱନ୍ ଓ କାଇକୋ ଆଓକି ଏକାଥରେ କହିଉଠିଲେ, "ଓଃ ବେଣୀ !" ତୋଓ୍ତୋ-ଗ୍ୱନ୍ ବହୁତ ଖୁସି ହୋଇଗଲା । ବେଣୀକୁ ସେମାନେ ଛୁଇଁଲେ ବି କିଛି କହିଲାନି ।

ପୁଅମାନେ କେହି କିଛି କହିଲେନାହିଁ । କିନ୍ତୁ ଖରାବେଳେ ଖାଇବା ପରେ ତା' ଶ୍ରେଣୀର ଗୋଟିଏ ପୁଅ ଓଏ ହଠାତ୍ ବଡପାଟିରେ କହିଲା, "ଆରେ ହେ ! ତୋଓ୍ତୋ-ଗ୍ୱନ୍ ଆଜି ନୂଆ ବାଗରେ ମୁଣ୍ଡ କୁଣ୍ଡାଇଛି !

ଜଣେ ପୁଅ ଏପରି କହୁଥିବା ଶୁଣି ତୋଓ୍ତୋ-ଗ୍ୱନ୍ ଗର୍ବରେ କହିଲା, "ଜାଣିଛୁ ଏଗୁଡା ମୋ ବେଣୀ !" ଏହା ଶୁଣି ଓଏ ଆସି ବେଣୀ ଦୁଇଟି ଦି' ହାତରେ ଧରି କହିଲା "ବଡ ହାଲିଆ ଲାଗୁଛି । ଏକୁ ଧରି ଟିକିଏ ଓହଳିଲେ ହୁଅନ୍ତା । ଏ ଦି'ଟାତ ଟ୍ରେନ୍‌ର ଝୁଲାଠୁଁ ଆହୁରି ବଢିଆ ହୋଇଛି ।" କିନ୍ତୁ ଏତିକିରେ ଝାମେଲା ସରିଲାନି ।

ପତଳା ତୋଓ୍ତୋ-ଗ୍ୱନ୍‌ଠାରୁ ଓଏ ଦି' ଗୁଣ ବଡ ଥିଲା । ପ୍ରକୃତରେ ଶ୍ରେଣୀରେ ସେ ସବୁଠୁ ବଡ ଓ ମୋଟା ଥିଲା । ତେଣୁ ସେ ଯେତେବେଳେ ବେଣୀକୁ ଟାଣିଲା ତୋଓ୍ତୋ-ଗ୍ୱନ୍ କଗ୍ୱଡି ହୋଇ ତଳେ ପଡିଗଲା । ତା'ର ବେଣୀକୁ ରେଳଗାଡିର ଝୁଲା କହିବାଟା ତ ମୂଳରୁ ବାଧିଥିଲା । ଏବେ ପୁଣି କଚଡା । ଶେଷରେ ଓଏ ତା'ର ବେଣୀ ଧରି ଉଠାଇଲା ବେଳେ ପଥର ଉଠାଇଲା ଭଳି ଡାକ ଛାଡିଲା, "ହେଁସା, ହେଁସା !" ଏଥର ତୋଓ୍ତୋ-ଗ୍ୱନ୍ କାନ୍ଦି ପକାଇଲା ।

ବେଣୀବାନ୍ଧିବା ତୋଓ୍ତୋ-ଗ୍ୱନ୍ ପାଇଁ ଗୋଟିଏ ବଡଟିଅର ଚିହ୍ନ ଥିଲା । ସେ ଭାବିଥିଲା ଏଥିପୋଗୁଁ ସମସ୍ତେ ତାକୁ ଅତି ଭଦ୍ର ବ୍ୟବହାର ଦେଖାଇବେ । କାନ୍ଦି କାନ୍ଦି ସେ ଯାଇ ପ୍ରଧାନ ଶିକ୍ଷକଙ୍କ କବାଟ ବାଡେଇଲା । ସେ କବାଟ ଖୋଲିଲେ ଓ ନଇଁପଡିଲେ ଯେପରି ତୋଓ୍ତୋ-ଗ୍ୱନ୍‌ର ମୁହଁ ତାଙ୍କ ମୁହଁ ସିଧାରେ ରହିବ । ପଗ୍ୱରିଲେ, "କ'ଣ ହେଲା ?"

ତା'ର ବେଣୀ ଠିକ୍ ଅଛି କି ନାହିଁ ସେ ଦେଖିନେଲା । ତା'ପରେ କହିଲ, "ହେଁସା, ହେଁସା" କହି ଓଏ ମୋ ବେଣୀକୁ ଟାଣି ଦେଲା ।

ପ୍ରଧାନ ଶିକ୍ଷକ ତା' ବେଣୀକୁ ଗ୍ୱହିଁଲେ । ତା'ର ଲୁହଭରା ମୁହଁ ତୁଳନାରେ ଟିକି ବେଣୀ ଦୁଇଟି ଖୁସିରେ ନାଚିଲା ଭଳି ଦେଖା ଯାଉଥିଲା । ସେ ବସି ପଡିଲେ, ତୋଓ୍ତୋ-ଗ୍ୱନ୍‌କୁ ବି ସାମନା କରି ବସାଇଦେଲେ ସବୁଥର ଭଳି ଭଙ୍ଗା ଦାନ୍ତକୁ ଦେଖାଇ ସେ ହସି ଦେଲେ ।

"କାନ୍ଦନି", ସେ କହିଲେ, "ତୁମ ବୁଟି ବଢିଆ ଦେଖା ଯାଉଛି ।" ତୋଓ୍ତୋ-ଗ୍ୱନ୍ ତା'ର ଲୁହ ଭରା ମୁହଁ ଟେକିଲା । ଆଉ ଲାଜରା ହୋଇ ପଗ୍ୱରିଲା, "ଆପଣଙ୍କୁ ଭଲ ଲାଗୁଛି ?"

"ଚମତ୍କାର ହୋଇଛି ।" ସେ କହିଲେ, ତୋଓ୍ତୋ-ଗ୍ୱନ୍ କାନ୍ଦ ବନ୍ଦ ହୋଇ ଗଲା । ଚଉକିରୁ ଓହ୍ଲାଇ ସେ କହିଲା, "ଏଥର ଓଏ ହେଁସା କହିଲେ ବି ମୁଁ ଆଉ କାନ୍ଦିବିନି ।"

ପ୍ରଧାନ ଶିକ୍ଷକ ମୁରୁକି ହସି ମୁଣ୍ଡ ଟୁଙ୍ଗାରିଲେ । ତୋଓ୍ତୋ-ଗ୍ୱନ୍ ବି ହସିଲା । ଆଉ ତା' ହସକୁ ବେଣୀ ଦି'ଟା ବେଶ୍ ମାନୁଥିଲା । ପ୍ରଧାନ ଶିକ୍ଷକଙ୍କୁ ନମସ୍କାର କରି ସେ ଦୌଡିଲା । ଫେରି ଆସି ସେ ଅନ୍ୟ ଛୁଆଙ୍କ ସହ ଖେଳିବାରେ ଲାଗିଲା ।

ତୋତ୍ତୋ-ଗ୍ୱିନ୍ କାନ୍ଦ କଥା ପ୍ରାୟ ଭୁଲି ଯାଇଥାଏ। ଏତିକି ବେଳେ ଓଏ ମୁଣ୍ଡକୁ କୁଣ୍ଡାଇ କୁଣ୍ଡାଇ ତା' ପାଖକୁ ଆସିଲା। ସେ କହିଲା, "ତୋ ଚୁଟି ଟାଣି ମୁଁ ଭୁଲ୍ କରିଛି। ମୋତେ ପ୍ରଧାନ ଶିକ୍ଷକ ଗାଳି ଦେଲେ। ଝିଅମାନଙ୍କ ପ୍ରତି ଭଦ୍ର ହେବାକୁ ଓ ତାଙ୍କୁ ସାହାଯ୍ୟ କରିବାକୁ ସେ କହିଲେ।" ତୋତ୍ତୋ-ଗ୍ୱିନ୍ ଟିକିଏ କାବା ହୋଇଗଲା। ଝିଅମାନଙ୍କ ପ୍ରତି ଭଦ୍ର ହେବା କଥା ସେ ଆଗରୁ ଶୁଣିନଥିଲା। ପୁଅମାନଙ୍କୁ ହିଁ ସବୁବେଳେ ଗୁରୁତ୍ୱ ଦିଆ ଯାଉଥିଲା। ଘରେ ଅଧିକ ପିଲା ଥିଲେ ପୁଅମାନଙ୍କୁ ହିଁ ସବୁବେଳେ ଆଗ ଖାଇବାକୁ ଦିଆଯାଏ। ଝିଅମାନେ କଥା କହିଲେ ମା'ମାନେ କୁହନ୍ତି ଯେ ସେମାନେ ଚୁପ୍ ହୋଇ ବସିବା ଉଚିତ୍। ତଥାପି ପ୍ରଧାନ ଶିକ୍ଷକ ଓଏକୁ କହିଲେ, "ଝିଅମାନଙ୍କ କଥା ବୁଝିବ।" ଏକଥା ତୋତ୍ତୋ-ଗ୍ୱିନ୍‌କୁ ଟିକିଏ ଅଖାଡୁଆ ଲାଗିଲା। କିନ୍ତୁ କଥାଟା ତା'ର ମନକୁ ପାଇଲା। ସେ ଭାବିଲା, "କିଏ ଜଣେ ଆମ ଭଲ ମନ୍ଦ ବୁଝିବାଟା କେତେ ଖୁସିର କଥା।"

ଓଏ ପାଇଁ ଏହା ଏକ ଚେଙ୍କା ଥିଲା। ଝିଅଙ୍କ ପ୍ରତି ପୁଣି ଭଦ୍ର ଓ ଯତ୍ନବାନ ହେବାକୁ କିଏ କହେ ! ପ୍ରଧାନ ଶିକ୍ଷକଙ୍କଠାରୁ ଗାଳି ଖାଇବାଟା ତୋମୋଏରେ ପ୍ରଥମ ଓ ଶେଷ ଏହା ତା'ପାଇଁ । ସେ ଦିନଟିକୁ ସେ କେବେ ଭୁଲିନଥିଲା।

## *ଧନ୍ୟବାଦ*

ନୂଆବର୍ଷ ପାଇଁ ଛୁଟି ପାଖେଇ ଆସୁଥାଏ। ଖରା ଛୁଟିରେ ପିଲାମାନେ ମଝିରେ ସ୍କୁଲ୍‌କୁ ଆସନ୍ତି। କିନ୍ତୁ ଏହି ଶୀତଛୁଟିଟା ସେମାନେ ପୂରା ଘରେ କଟାନ୍ତି। "ଏଥର ନୂଆ ବର୍ଷରେ ମୁଁ ମୋ ଜେଜେଙ୍କ ପାଖକୁ ଯିବି" ମିଗିତା ସମସ୍ତଙ୍କୁ କହି ବୁଲିଥାଏ। ବିଜ୍ଞାନ ପରଖ କରିବାରେ ତୋତ୍ତୋ-ଗ୍ୱିନ୍‌ର ବଡ ଆଗ୍ରହ ଥାଏ। ସେ କହିଲା, "ମୁଁ ବଡ ଭାଇ ସହିତ ଗୋଟିଏ ପଦାର୍ଥ ବିଜ୍ଞାନାଗାର ବୁଲିବାକୁ ଯିବି।" ସମସ୍ତେ ନିଜ ନିଜର ଯୋଜନା କହୁ ଥାଆନ୍ତି। "ହଉ ଛୁଟି ପରେ ଦେଖା ହେବ" କହି ଶେଷରେ ସମସ୍ତେ ନିଜ ନିଜ ଘରକୁ ଗଲେ।

ବାପା, ମା'ଙ୍କ ସହ ତୋତ୍ତୋ-ଗ୍ୱିନ୍ ସ୍କିଂ (ଏକ ବରଫ କ୍ରୀଡା) ପାଇଁ ଗଲା। ବାପା'ଙ୍କ ଅର୍କେଷ୍ଟ୍ରା ସାଙ୍ଗ ହିଡିଓ ସାଇତୋଙ୍କର ଶିଗା ମାଳଭୂମିରେ ଗୋଟିଏ ବଢ଼ିଆ ଘର ଥିଲା। ପ୍ରତିବର୍ଷ ଶୀତଛୁଟିରେ ସେମାନେ ସେଠାକୁ ଯାଉଥିଲେ। ତେଣୁ ଅତି ପିଲାବେଳରୁ ତୋତ୍ତୋ-ଗ୍ୱିନ୍ ସ୍କିଂ ଶିଖି ଯାଇଥିଲା।

ସ୍କିଂ ଅଞ୍ଚଳକୁ ଯିବା ପାଇଁ ଷ୍ଟେସନ୍‌ରୁ ଘୋଡାଟଣା ବରଫ ଗାଡି ନେବାକୁ ହୁଏ। ବାଟରେ ସବୁଆଡେ ତୁଳା ଭଳି ଧଳା ଶୁଭ୍ର ବରଫ ବିଛାଇ ହୋଇଥାଏ। କିଛି ଥୁଣ୍ଟା ଗଛମୂଳ ଛଡା ସେ ବରଫ ଭିତରେ ଆଉ କିଛି ନଥାଏ। ଯେଉଁ ଲୋକଙ୍କର ସାଇତୋଙ୍କ ପରି ଘରର ସୁବିଧା ନଥିଲା, ସେମାନଙ୍କ ପାଇଁ ସେଠାରେ ଗୋଟିଏ

ଜାପାନୀ ପାନ୍ଥଶାଳା ଓ ବିଲାତି ହୋଟେଲଟିଏ ଥିଲା । ତଥାପି ସେଠାକୁ ଅନେକ ବିଦେଶୀ ଯାଉଥିଲେ ।

ଏବର୍ଷଟି ତୋତ୍ତୋ-ଗ୍ୱିନ୍ ପାଇଁ ବେଶ୍ ଅଲଗା ଥିଲା । ଏବେ ସେ ଜଣେ ପ୍ରଥମ ଶ୍ରେଣୀର ଛାତ୍ର । କିଛି ଇଂରାଜୀ ବି ସେ ଶିଖିଥାଏ । ବାପା ତାକୁ ଇଂରାଜୀରେ 'ଧନ୍ୟବାଦ' କହିବାକୁ ଶିଖାଇ ଦେଇଥାନ୍ତି ।

ବିଦେଶୀ ସ୍କିଂ ଖେଳାଳୀମାନେ ସ୍କିଂ ପୋଷାକରେ ଠିଆ ହୋଇଥିବା ତୋତ୍ତୋ-ଗ୍ୱିନ୍‌କୁ ଦେଖି କିଛି କହୁଥା'ନ୍ତି, "କି ସୁନ୍ଦର ଝିଅଟିଏ" ବା ସେପରି କିଛି । କିନ୍ତୁ ତୋତ୍ତୋ-ଗ୍ୱିନ୍ ବୁଝି ପାରୁନଥିଲା ବା କିଛି ଉତ୍ତର ଦେଇ ପାରୁନଥିଲା । କିନ୍ତୁ ଏଥର ସେ ତା'ର ମୁଣ୍ଡକୁ ହଲାଇ କହୁଥାଏ, "ଥାଙ୍କ୍ ୟୁ - ଧନ୍ୟବାଦ !"

ଏହା ଶୁଣି ବିଦେଶୀମାନେ ଅଧିକା ହସି ନିଜ ନିଜ ଭିତରେ କ'ଣ କଥା ହେଉଥା'ନ୍ତି । କେହି କେହି ତାକୁ ଟିକିଏ ଗେଲ କରୁଥା'ନ୍ତି । 'ଧନ୍ୟବାଦ' କହି ଏତେ ନୂଆ ସାଙ୍ଗ ପାଉଥିବାରୁ ଭାରି ଖୁସି ଥାଏ ।

ଦିନେ ଜଣେ ଯୁବକ ତୋତ୍ତୋ-ଗ୍ୱିନ୍‌କୁ ଠାରରେ ପଚାରିଲେ, "ମୋ ସ୍କିଂରେ ବସି ବୁଲିବ ?" ଏଭଳି ବୁଲି ହେବା କଥା ବାପା ତାକୁ ଆଗରୁ କହିଥିଲେ ।

ଖୁସିରେ ଧନ୍ୟବାଦ କହି ତୋତ୍ତୋ-ଗ୍ୱିନ୍ ତାଙ୍କ ସ୍କିଂର ଆଗ ପଟକୁ ବସିଗଲା । ଯୁବକ ଜଣକ ତୋତ୍ତୋ-ଗ୍ୱିନ୍ ସହିତ ଧୀରେ ଧୀରେ ସୁନ୍ଦର ଶିଗା ମାଳଭୂମିର ଧାରରେ ଖସି ଚାଲିଲେ । ସେମାନେ ଆଗକୁ ମାଡି ଚାଲିଲାବେଳେ ପବନ ତୋତ୍ତୋ-ଗ୍ୱିନ୍‌ର କାନ ପାଖରେ ସୁ ସୁ ଶବ୍ଦ କରୁଥାଏ । ଆଗକୁ ଝୁଙ୍କି ନ ପଡିବା ପାଇଁ ତୋତ୍ତୋ-ଗ୍ୱିନ୍ ତା'ର ଆଣ୍ଠୁ ଦୁଇଟିକୁ କୁଣ୍ଢାଇ ଧରିଥାଏ । ଟିକିଏ ଡର ସିନା, ହେଲେ ମଜାଟା ବହୁତ ବେଶୀ ଥାଏ । ସେମାନେ ଯେତେବେଳେ ଅଟକିଲେ ଦେଖୁଥିବା ଲୋକମାନେ ତାଳି ବଜାଇଲେ । ସେହି ଭଦ୍ରଲୋକଙ୍କ ସ୍କିଂରୁ ଓହ୍ଲାଇ ତୋତ୍ତୋ-ଗ୍ୱିନ୍ ଦେଖଣାହାରୀଙ୍କ ଆଡେ ମୁଣ୍ଡ ନୁଆଁଇଲା ଓ କହିଲା, "ଥାଙ୍କ୍ ୟୁ ।" ସେମାନେ ଆହୁରି ଅଧିକ ଜୋରରେ ତାଳି ବଜାଇଲେ ।

ବେଶ୍ ସମୟ ପରେ ସେ ଜାଣିଲା ଯେ ତାକୁ ବୁଲାଇ ନେଇଥିବା ଲୋକ ହେଉଛନ୍ତି ବିଖ୍ୟାତ ସ୍କିଂ ଖେଳାଳୀ ସ୍ନାଇଡର । ତାଙ୍କର ସ୍କିଂ ବାଡି ଦୁଇଟି ରୂପାରେ ତିଆରି ହୋଇଥିବା କଥା ବେଶ୍ ଜଣା ଶୁଣାଥିଲା । କିନ୍ତୁ ସେଦିନ ତାକୁ ବେଶୀ ଭଲ ଲାଗିଥିଲା ତାଙ୍କ ବ୍ୟବହାର । ସେମାନେ ସ୍କିଂ ଖେଳି ସାରିବା ପରେ ପାଖରେ ବସିପଡି ସେ କହିଲେ, "ଧନ୍ୟବାଦ ।" ତୋତ୍ତୋ-ଗ୍ୱିନ୍‌କୁ ସେ ଗୋଟିଏ ବଡ ମଣିଷର ଖାତିର ଦେଖାଇଲେ । ତାଙ୍କର ଏହି ଗୁରୁତ୍ୱ ତୋତ୍ତୋ-ଗ୍ୱିନ୍‌କୁ ଖୁବ୍ ଭଲ ଲାଗିଲା ଏବଂ ତାଙ୍କ ସମ୍ମୁଖରେ ଧଳା ବରଫର ଦୃଶ୍ୟପଟଟି ସୀମାହୀନ ଭାବରେ ଚିତ୍ରିତ ଦେଖା ଯାଉଥାଏ ।

# ଲାଇବ୍ରେରୀ ଡବା

ଶୀତ ଛୁଟି ପରେ ପିଲାମାନେ ସ୍କୁଲକୁ ଫେରି ଗୋଟିଏ ବଢ଼ିଆ ନୂଆ ଜିନିଷ ଦେଖିଲେ ଆଉ ଖୁସିରେ ପାଟି କରି ଉଠିଲେ। ଗୋଟିଏ ଗୋଟିଏ ରେଳଡବା ତାଙ୍କର ପଢ଼ାଘର ଡବା ଧାଡ଼ିର ଆଗରେ ଥୁଆ ହୋଇଥିଲା।

ପ୍ରାର୍ଥନାଘର ପାଖର ଫୁଲ ବଗିଚ୍ଚ କଡରେ ସେମାନେ ନଥିଲାବେଳେ ସେଠାରେ ଏହି ଲାଇବ୍ରେରୀଟି ତିଆରି ହୋଇଥାଏ। ତାଙ୍କର ସ୍କୁଲ ସହାୟକ ରୟୋ-ସ୍ୱନ୍ ଶୀତଛୁଟି ଯାକ ଖଟି ଖଟି ଏହାକୁ କରିଥିଲେ। ରୟୋ-ସ୍ୱନ୍‌ଙ୍କୁ ସର୍ଭିଏଁ ଖୁବ୍ ସମ୍ମାନ ଦେଖାଉଥିଲେ; କାରଣ ସେ ହରେକ କିସମର କାମ କରି ପାରୁଥିଲେ। ସେ ଏହି ବଗିରେ ଅନେକଗୁଡ଼ିଏ ଥାକ ଖଞ୍ଜି ଦେଇଥିଲେ । ଧାଡ଼ି ଧାଡ଼ି ବହିରେ ଥାକଗୁଡ଼ିକ ଭରା ହୋଇଥାଏ। ଅନେକ ପ୍ରକାରର ଓ ରଙ୍ଗର ବହି। ସେଠି କିଛି ଟେବୁଲ ଓ ଚଉକି ମଧ୍ୟ ପଡ଼ିଥାଏ। ଯଦି ଜଣେ ଚାହିଁବ ପଢ଼ି ପାରିବ।

"ଏଇଟି ତୁମର ଲାଇବ୍ରେରୀ," ପ୍ରଧାନ ଶିକ୍ଷକ ସମସ୍ତଙ୍କୁ ଜଣାଇଦେଲେ, "ଜଣେ ଯେ କୌଣସି ବହି ପଢ଼ିପାରିବ। ଅଲଗା ଶ୍ରେଣୀ ପାଇଁ କିଛି ଅଲଗା ବହି ନାହିଁ। ଯେବେ ବି ଇଚ୍ଛା ହେବ ତମେ ଆସି ଏଠି ପଢ଼ି ପାରିବ। ଚାହିଁଲେ ଘରକୁ ବି ବହି ନେଇ ପାରିବ। ପଢ଼ି ସାରିଲେ ଫେରାଇ ଦେବ। ତୁମ ଘରେ ଯଦି କିଛି ଭଲ ବହି ଥାଏ ତାକୁ ବି ଏଠାକୁ ଆଣିଲେ ବଢ଼ିଆ ହେବ। ଯିଏ ଯେତେ ପାରୁଛ ଏଠାରେ ଆସି ପଢ଼।" "ଆଜିର ପଢ଼ା ଆରମ୍ଭ ଲାଇବ୍ରେରୀରୁ ହିଁ କରିବା" ସବୁ ପିଲା ଏକା ସ୍ୱରରେ କହି ଉଠିଲେ, "ତମକୁ ଏଇଆ କଲେ ଭଲ ଲାଗିବ ତ", ତାଙ୍କର ଏତେ ଉତ୍ସାହ ଦେଖି ପ୍ରଧାନ ଶିକ୍ଷକ ଖୁସିରେ କହିଲେ, "ଠିକ୍ ଅଛି, ନହେବ କାହିଁକି ?"

ଏତକ ଶୁଣି ତୋମୋଏର ପଚିଶଜଣ ଯାକ ଛୁଆ ଲାଇବ୍ରେରୀ ବଗି ଭିତରକୁ ପଶିଗଲେ। ପ୍ରବଳ ଉଦ୍ଦୀପନା ସହ ସମସ୍ତେ ନିଜ ମନଲାଖି ବହି ଖୋଜିବାରେ ଲାଗିଲେ। ସେଠାରେ କିନ୍ତୁ ମୋଟେ ଅଧାଅଧି ପିଲା ବସିବା ପାଇଁ ଚଉକି ଥିଲା। ଅନ୍ୟମାନଙ୍କୁ ଠିଆ ହେବାକୁ ପଡ଼ିଲା। ଏହା ଠିକ୍ ଭିଡ଼ ସମୟରେ ଗୋଟିଏ ରେଳଡବା ଭଳି ଦେଖା ଯାଉଥାଏ। ଯେଉଁଠି ଲୋକମାନେ ଠିଆ ହୋଇ ପଢୁଥା'ନ୍ତି। ଏହା ପ୍ରକୃତରେ ବେଶ୍ ମଉଜିଆ ଦୃଶ୍ୟ ଥିଲା।

ପିଲାମାନେ ଖୁସି ସମ୍ଭାଳି ପାରୁନଥା'ନ୍ତି। ତୋତୋ-ଚ୍ୟାନ୍ ଏବେ ସେତେ ଭଲ ପଢ଼ି ପାରୁନଥାଏ। ତେଣୁ ମଜା ଚିତ୍ର ଥିବା ବହିଟିଏ ସେ ବାଛିଲା। ସମସ୍ତେ ଯେବେ ବହି ଧରି ବସିଗଲେ ବଗିଟା ପୂରା ଚୁପ୍‌ଚାପ ହୋଇଗଲା। କିନ୍ତୁ ଏହା ବେଶୀ ସମୟ ପାଇଁ ରହିଲାନାହିଁ। ଗୁଣୁ ଗୁଣୁ ଶବ୍ଦରେ ବଗିଟି ପୂରିଗଲା। କିଏ ପାଟି କରି ପଢୁଥାଏ, କିଏ ପାଖ ପିଲାକୁ କ'ଣ ପଚାରୁଥାଏ। ଆଉ କିଏ କିଏ ବହି ଅଦଳବଦଳ କରୁଥା'ନ୍ତି। ବଗିଟି ହସ ଖୁସିରେ ଭରି ଯାଇଥାଏ। ଜଣେ ପିଲା "ଗାଈବା ଆଙ୍କିବା" ବହିଟିଏ ଓଲଟାଇବାକୁ ଆରମ୍ଭ କରିଥାଏ। ସ୍ୱର ଲମ୍ବାଇ ସେ ଢଗଟିଏ ଗାଉଥାଏ ଓ ତା'

ଅନୁସାରେ ଚିତ୍ରଟିଏ ଆଙ୍କୁଥାଏ:



ଗୋଲେଇ ଟୋପା, ଗୋଲେଇ ଟୋପା,
ଗୋଲେଇ ପେଟରେ ଟୋପା,
ଚକି ଭଳି ମୁହଁ ମଝିରେ ରହିଛି
ଚକି କଟା ନାକ ଚେପା,
ତିନି ତିନି ତିନି ନଅଟି ବାଳରେ
ମାଉସୀ ବାନ୍ଧନ୍ତି ଖୋସା,

ଗୀତ ଅନୁସାରେ ଆଗ ଆଖି, ପାଟି ଓ ନାକ କରିବାରୁ ଚକି ଭଳି ମୁହଁ ହେଉଥିଲା କହିଲା ବେଳକୁ ଗୋଲଟିଏ ବୁଲାଇ ମୁହଁଟି କରିବାକୁ ହେଉଥିଲା । ନଅଟି ଗାର ପକାଇ ସାରି ମାଉସୀ ବାନ୍ଧିଛି ଖୋସା କହିଲା ବେଳକୁ ତିନୋଟି ଅଧା ଗୋଲ ଟାଣିବାକୁ ହେଉଥିଲା । ଏସବୁ ଠିକ୍ ଭାବେ କରିଗଲେ ଗୋଟିଏ ବୟସ୍କ ମହିଳା ମୁହଁ ହୋଇ ଯାଉଥିଲା ।

କିଏ କେତେବେଳେ କ'ଣ ପଢ଼ିବ ତାହା ତୋମୋଏର ପିଲାମାନେ ନିଜେ ଠିକ୍ କରୁଥିଲେ । ତେଣୁ ଏକା ସମୟରେ ଅଲଗା ଅଲଗା ବିଷୟ ପଢ଼ା ଚାଲିବାରେ କାହାକୁ କିଛି ଅଡୁଆ ଲାଗୁନଥିଲା । ଅନ୍ୟ କାମକୁ ନଜର ନଦେଇ ପାଠରେ ମନ ଦେବାର ଅଭ୍ୟାସ ତାଙ୍କର ଥିଲା । ତେଣୁ ପିଲାଟି ବଡ ପାଟିରେ ଗୀତ ଗାଇ ଚିତ୍ର କଲା ବେଳେ ସେଥିପ୍ରତି କେହି ଧ୍ୟାନ ଦେଉନଥିଲେ । ଜଣେ ଦି'ଜଣ ତା' କାମରେ ମିଶିଗଲେ, କିନ୍ତୁ ଆଉ ସମସ୍ତେ ନିଜ ନିଜ ବହି ପଢ଼ାରେ ମାତି ଯାଇଥିଲେ ।

ତୋତ୍ତୋ-ଚାନ୍‌ର ବହିରେ ଗୋଟିଏ ଗାଉଁଲି ଗପ ଥିଲା । ଏହାଥିଲା ଗୋଟିଏ ଧନୀ ଘରର ଝିଅ ବିଷୟରେ । ସେ ସବୁ ବେଳେ ଛିଙ୍କୁଥିବାରୁ ତାକୁ ବରଟିଏ ମିଳୁନଥିଲା । ଶେଷରେ ତା' ବାପା ମା' ଖୋଜି ଖୋଜି ଝିଅ ପାଇଁ ବରଟିଏ ପାଇଲେ । ବାହାଘର ରାତିରେ ଝିଅଟି ଏତେ ଖୁସି ହୋଇଗଲା ଯେ ସେ ଖୁବ୍ ଜୋରରେ ଛିଙ୍କି ଦେଲା । ବରଟି ସେ ପବନରେ ଉଡି ଗଲା ଓ ସାତଥର ଚକ୍କର କାଟି ଚେତା ହରାଇ ପଡ଼ିଲା । ବରଟି ଘର ଭିତରେ ଉଡୁଥିବା ଖୁବ୍ କଉତୁକିଆ ହୋଇଥିଲା । ପରେ ଏ ବହିଟିର ଚାହିଦା ବହୁତ ବଢ଼ିଗଲା ।

ସ୍କୁଲର ସବୁଜୁଆ ବଗି ଭିତରେ ଖୁନ୍ଦି ହୋଇଥା'ନ୍ତି । ଝରକା ବାଟେ ଆସୁଥିବା ସକାଳର କଅଁଳ ଖରାରେ ସେମାନେ ମନଖୁସିରେ ପଢ଼ି ଯାଉଥା'ନ୍ତି । ଏହି ଦୃଶ୍ୟଟି ପ୍ରଧାନ ଶିକ୍ଷକଙ୍କୁ ନିଶ୍ଚୟ ବହୁତ ଆନନ୍ଦ ଦେଇଥିବ ।

ପିଲାଏ ପୂରା ଦିନଟି ଲାଇବ୍ରେରୀ ବଗି ଭିତରେ ହିଁ କଟାଇଲେ । ସେବେଠୁଁ ବର୍ଷା ସମୟ ବା ଅନ୍ୟ କେତେ ସମୟ କଟାଇବା ପାଇଁ ଲାଇବ୍ରେରୀଟି ତାଙ୍କର ଅତି ପ୍ରିୟସ୍ଥାନ ହୋଇଗଲା ।

"ମୁଁ ଭାବୁଛି ଲାଇବ୍ରେରୀ ପାଖରେ ପାଇଖାନାଟିଏ କରି ଦେଲେ ଭଲ ହୁଅନ୍ତା", ଦିନେ ପ୍ରଧାନ ଶିକ୍ଷକ କହିଲେ ।

କାରଣ ପିଲାଏ ବହିପଢ଼ାରେ ଏତେ ମଜି ଯାଉଥିଲେ ଯେ ସେମାନେ ଅସମ୍ଭାଳ ଅବସ୍ଥାରେ ଆସେମ୍ବ୍ଲି ଘର ଆରପଟେ ଥିବା ପରିସ୍ରାଘରକୁ ଦୌଡ଼ୁଥିଲେ ।

## ଲାଞ୍ଜ

ଦିନେ ସ୍କୁଲ ଛୁଟି ହେଲାରୁ ତୋତୋ-ଚ୍ୟାନ୍ ଘରକୁ ବାହାରୁ ଥାଏ । ଓଏ ହଠାତ୍ ଦୌଡ଼ି ଆସି ଫୁସ୍‌ଫୁସ୍ କରି କହିଲା, "ପ୍ରଧାନ ଶିକ୍ଷକ କାହା ଉପରେ ରାଗୁଛନ୍ତି ।" "କୋଉଠି ?" ତୋତୋ-ଚ୍ୟାନ୍ ପଚାରିଲା । ପ୍ରଧାନ ଶିକ୍ଷକ ରାଗିବା କଥା ସେ କେବେ ବି ଶୁଣିନଥିଲା, ତେଣୁ କାବା ହୋଇଗଲା । ଓଏ ବି ଖୁବ୍ ଆଶ୍ଚର୍ଯ୍ୟ ହୋଇ ଯାଇଥିଲା । ନହେଲେ ସେଭଳି ଅଣନିଃଶ୍ୱାସୀ ହୋଇ ସେ ଦୌଡ଼ି ଆସିନଥା'ନ୍ତା ।

"ସେମାନେ ରୋଷେଇ ଘରେ ଅଛନ୍ତି" ଓଏ କହିଲା ବେଳକୁ ତା'ର ଶାନ୍ତ ଆଖି ଦୁଇଟି ଡିମା ଡିମା ହୋଇ ଯାଇଥାଏ ଓ ନାକପୁଡ଼ା ଫୁଲି ଯାଇଥାଏ । "ଚାଲ, ଦେଖିବା," କହି ତୋତୋ-ଚ୍ୟାନ୍ ଓଏର ହାତ ଧରିଲା ଓ ଦୁହେଁ ପ୍ରଧାନ ଶିକ୍ଷକଙ୍କ ଘର ଆଡ଼କୁ ଛୁଟିଲେ । ପ୍ରାର୍ଥନାଘରକୁ ଲାଗିକରି ତାଙ୍କ ଘର । ପଛଦୁଆର ପାଖରେ ରୋଷେଇ ଘରଟି । ତୋତୋ-ଚ୍ୟାନ୍ ଯେତେବେଳେ ମଇଳା ଟାଙ୍କିରେ ଗଳି ପଡ଼ିଥିଲା ତାକୁ ଏହି ରୋଷେଇଘର ବାଟେ ଗାଧୁଆ ଘରକୁ ନିଆ ଯାଇଥିଲା । ଆଉ ପ୍ରଧାନ ଶିକ୍ଷକଙ୍କର ଏହି ରୋଷେଇ ଘରେ ହିଁ, "ସମୁଦ୍ରରୁ କିଛି ଆଉ ପାହାଡ଼ରୁ କିଛି" ଖାଇବା ଜିନିଷ ତିଆରି କରା ଯାଉଥିଲା ।

ପିଲା ଦୁହେଁ ରୋଷେଇ ଘର ପାଖରେ ପହଞ୍ଚି ବନ୍ଦ କବାଟ ପଛରୁ ପ୍ରଧାନଶିକ୍ଷକଙ୍କ ରାଗିଲା ସ୍ୱର ଶୁଣିଲେ ।

"ତୁମେ କିପରି କିଛି ନଭାବି ତାକାହାଶିକୁ କହିଲ ଯେ ତା'ର ଗୋଟିଏ ଲାଞ୍ଜ ଅଛି ?" ତୋତୋ-ଚ୍ୟାନ୍‌ର ଶ୍ରେଣୀ ଦିଦି ସେ ଗାଳି ଶୁଣୁଥିଲେ ।

"ମୁଁ କଥାଟାକୁ କିଛି ଗୁରୁତ୍ୱ ଦେଇ ନଥିଲି", ସେ ଉତ୍ତର ଦେଲେ, "ସେତେବେଳେ ସେ ହଠାତ୍ ମୋ ନଜରକୁ ଆସିଲା, ଆଉ ସେ ବଡ଼ କଉତୁକିଆ ଦିଶୁଥିଲା ।"

"କିନ୍ତୁ ତୁମ ଗୁରୁତ୍ୱ କ'ଣ ତୁମେ ବୁଝୁନାହଁ ? ଆଉ କ'ଣ କଲେ ତୁମେ ବୁଝିପାରିବ କାହିଁକି ମୁଁ ତାକାହାଶିର ଏତେ ଦେଖାଚାହାଁ କରେ ?"

ତୋତ୍ତୋ-ଗ୍ୱାନ୍‌ର ଏଥର ମନେପଡ଼ିଲା ସେଦିନ ସକାଳେ ଶ୍ରେଣୀରେ କ'ଣ ହୋଇଥିଲା । ଶ୍ରେଣୀ ଶିକ୍ଷକ ସେମାନଙ୍କୁ ବୁଝାଉଥିଲେ କିପରି ଆରମ୍ଭ ସମୟରେ ମଣିଷର ମଧ୍ୟ ଲାଙ୍ଗୁଡ଼ ଥିଲା । ବଡ଼ମାନଙ୍କ ପାଇଁ ଏହା ଥିଲା ବିବର୍ତ୍ତନବାଦର କିଛି ସୂଚନା । ପିଲାଙ୍କୁ କିନ୍ତୁ ଏହା ଗୋଟିଏ ମଜାକଥା ଭଳି ଲାଗିଲା । ଶିକ୍ଷକ ପୁଣି କହିଲେ ଯେ ଏବେ ବି ଆମ ସମସ୍ତଙ୍କ ଦେହରେ ଏହି ଲାଞ୍ଜର କିଛି ଅଂଶ ଲୁଚି ରହିଛି । ପିଲାଏ ଆଶ୍ଚର୍ଯ୍ୟ ହୋଇ ନିଜର ଲାଞ୍ଜ କଥା ଭାବିବାରେ ଲାଗିପଡ଼ିଲେ । ଶ୍ରେଣୀ ଭିତରେ ହୋହଲ୍ଲା ଆରମ୍ଭ ହୋଇଗଲା । ଶେଷରେ ଶିକ୍ଷକ ମଜା କରି କହିଥିଲେ, "ତମ ଭିତରେ ବି ବୋଧେ ଜଣଙ୍କର ଲାଞ୍ଜଟିଏ ଅଛି । କ'ଣ ତାକାହାଶି ? ତମର ଅଛି କି ?"

ମୁଣ୍ଡ ହଲାଇ ତାକାହାଶି ଠିଆ ହୋଇ ପଡ଼ିଲା ଓ ଆକୁଳ ଭାବରେ କହିଲା "ନା, ମୋର ତ ନାହିଁ !"

ତୋତ୍ତୋ-ଗ୍ୱାନ୍ ବୁଝିପାରିଲା ପ୍ରଧାନ ଶିକ୍ଷକ କ'ଣ କହୁଛନ୍ତି । ଏବେ ତାଙ୍କ କଥାରେ ରାଗଠାରୁ ବେଶୀ ଦୁଃଖ ଥିଲା । "ତୁମର ଲାଙ୍ଗୁଡ଼ ଅଛି କି , ପଚାରିଲେ ତାକାହାଶିକୁ କିପରି ଲାଗିବ ପଚାରିବା ଆଗରୁ ସେକଥା ତୁମେ ଭାବି ପାରିଲନି କିପରି ?"

ଶିକ୍ଷକ କ'ଣ ଉତ୍ତର ଦେଲେ ପିଲାଏ ଶୁଣି ପାରିଲେନାହିଁ । ତୋତ୍ତୋ-ଗ୍ୱାନ୍ ବୁଝି ପାରିଲାନାହିଁ ଯେ ଲାଙ୍ଗୁଡ଼ ବିଷୟରେ ପ୍ରଧାନ ଶିକ୍ଷକ କାହିଁକି ଏତେ ରାଗୁଛନ୍ତି । ତାକୁ ତ ଭାରି ମଜା ଲାଗିଥାଆନ୍ତା ଯଦି ପ୍ରଧାନ ଶିକ୍ଷକ ପଚାରି ଥାଆନ୍ତେ, "ଏ ଝିଅ ! ତୋର ଗୋଟିଏ ଲାଙ୍ଗୁଡ଼ ଅଛି କି ?"

ଅବଶ୍ୟ ତା'ର ଦେହ କିଛି ବେଢଙ୍ଗ ନଥିଲା । ତେଣୁ ଏ ପ୍ରଶ୍ନରେ ସେ କିଛି ଖରାପ ଭାବିନଥା'ନ୍ତା । କିନ୍ତୁ ତାକାହାଶି ଆଉ ବଢୁନଥିଲା । ଏକଥା ତାକୁ ଜଣା ବି ଥିଲା । ସେଥିପାଇଁ ପ୍ରଧାନ ଶିକ୍ଷକ କେତେ ସ୍ୱତନ୍ତ୍ର ଖେଳ ବାଛିଥିଲେ ଯେଉଁଥିରେ ତାକାହାଶି ଭଲ କରିପାରିବ । ଖାଲି ଦେହରେ ପହଁରା ପଛରେ ବି ଏହି କାରଣ ଥିଲା ଏଭଳି କିଛିଦିନ ଖେଳିଲେ ନିଜର ଦେହ ବିଷୟରେ ତାଙ୍କର ସଙ୍କୋଚ ଛାଡ଼ିଯିବ ।

ତାକାହାଶି, ୟାସୁଆକି-ଗ୍ୱାନ୍ ଆଦି ଶାରୀରିକ ଅକ୍ଷମ ପିଲାଙ୍କୁ ସାହାଯ୍ୟ କରିବା ପାଇଁ ସେ ଏଭଳି ଉପାୟମାନ ବାହାର କରିଥିଲେ । ଫଳରେ ସେମାନେ ନିଜକୁ ଅନ୍ୟଠୁ ଊଣା ମନେ କରିବେନାହିଁ ବା ମନରେ ଶଙ୍କା ରଖିବେନାହିଁ । ତେଣୁ ତାକାହାଶି ପରି ଛୋଟିଆ ଛୁଆଟିକୁ ଏପରି ପ୍ରଶ୍ନ ପଚାରିବାଟା ତାଙ୍କୁ ବହୁତ ବାଧିଥିଲା । ଯୋଗକୁ ଏହି ଘଟଣାବେଳେ ପ୍ରଧାନ ଶିକ୍ଷକ ସେହି ଶ୍ରେଣୀର ପଛରେ ଠିଆ ହୋଇ ଦେଖୁଥିଲେ ।

ଶିକ୍ଷୟିତ୍ରୀଜଣଙ୍କ କାନ୍ଦୁଥିବାର ତୋତ୍ତୋ-ଗ୍ୱାନ୍ ଶୁଣିଲା । "ମୁଁ ଏକ ବିରାଟ ଭୁଲ କରିଛି । ମୁଁ ତାକାହାଶିଠାରୁ କିପରି କ୍ଷମା ପାଇବି ?" ସେ କହୁଥା'ନ୍ତି ।

ପ୍ରଧାନ ଶିକ୍ଷକ କିଛି କହିଲେନାହିଁ । ଝରକା ଦେଇ ତୋତ୍ତୋ-ଗ୍ୱାନ୍ ତାଙ୍କୁ ଦେଖି ପାରୁନଥିଲା । କିନ୍ତୁ ସେ ତାଙ୍କ ପାଖକୁ ଯିବାକୁ ଚାହୁଁଥିଲା । ଘଟଣାଟା ସେ ପୂରା ବୁଝି ପାରୁନଥିଲା । କିନ୍ତୁ କାହିଁକି କେଜାଣି ତାକୁ ଲାଗିଲା ଯେ ପ୍ରଧାନ ଶିକ୍ଷକ ତାଙ୍କର ଖୁବ୍

ବଡ଼ ଧାଡ଼ି । ଓଏ ମଧ୍ୟ ସେଇ ଏକା କଥା ଭାବିଥିବ ।

ଗୋଟିଏ କଥା ତୋତ୍ତୋ-ଚ୍ୱାନ୍ କେବେ ବି ଭୁଲିଲାନି । ପ୍ରଧାନ ଶିକ୍ଷକ କିପରି ତାଙ୍କ ଦିଦିଙ୍କୁ ଅନ୍ୟ କାହା ଆଗରେ ଗାଳି ଦେଇନଥିଲେ । ଏହା ଦେଖାଉଥିଲା ସେ କେତେ ଭଲ ଶିକ୍ଷକ ଥିଲେ । ତୋତ୍ତୋ-ଚ୍ୱାନ୍ ସେତେବେଳେ ଏହା ପୂରା ବୁଝି ପାରିନଥିଲା । ତଥାପି ତାଙ୍କର ସ୍ୱର ଓ କଥା ତା' ମନରେ ସବୁଦିନ ପାଇଁ ଆଙ୍କି ହୋଇ ରହିଗଲା ।

ବସନ୍ତ ଋତୁ ଆସି ଯାଇଥାଏ । ଏହା ତୋମୋଏରେ ତୋତ୍ତୋ-ଚ୍ୱାନ୍‌ର ଦ୍ୱିତୀୟ ବସନ୍ତ । ସ୍କୁଲରେ ଗୋଟିଏ ନୂଆ ବର୍ଷ ଆରମ୍ଭ ହେଉଥାଏ ।

## *ତୋମୋଏରେ ଦ୍ୱିତୀୟ ବର୍ଷ*

ସ୍କୁଲ ହତାରେ ସବୁଗଛରେ ପତ୍ର କଅଁଳୁ ଥାଏ । ଫୁଲ ବଗିଚାରେ କଢ଼ ଧରି ଆସୁଥାଏ । କଢ଼ଗୁଡ଼ିକ ସତେ ଯେପରି ତାଙ୍କର ଡେମ୍ଫରୁ ପିଲାଙ୍କୁ ପଚାରୁଥାନ୍ତି, କେମିତି ଅଛ ? ଚେରୀ କଢ଼ଗୁଡ଼ିକ ହାଲୁକା ପବନରେ ଝୁଲୁଥା'ନ୍ତି । ସମସ୍ତେ ଯେପରି ଅପେକ୍ଷା କରିଛନ୍ତି ଏକାଠି ଫୁଟିଉଠିବା ପାଇଁ ।

ପୋଖରୀ ପାଖର ଛୋଟ ପାଣି କୁଣ୍ଡରେ ସବୁ ରଙ୍ଗର ମାଛ ଲାଞ୍ଜ ହଲାଇ ହଲାଇ ଖୁସିରେ ପହଁରୁଥାନ୍ତି ।

"ଏହା ବସନ୍ତ" ବୋଲି କହିବାର କିଛି ଦରକାର ନଥିଲା । ସବୁ କିଛି ତ ଏ ସମୟରେ ଝଟକେ, ସତେଜ ଦିଶେ ଓ ଜୀବନ୍ତ ମନେହୁଏ । ଏହା ଯେ ବସନ୍ତ ତାହା ଆପେ ଆପେ ଜଣା ପଡ଼ିଯାଏ । ଆଜିକୁ ଠିକ୍ ବର୍ଷକ ତଳେ ତୋତ୍ତୋ-ଚ୍ୱାନ୍ ମା'ଙ୍କ ସାଙ୍ଗେ ତୋମୋଏ ଗାକୁଏନ୍‌ରେ ପହଞ୍ଚିଥିଲା । ସେଦିନ ବଢ଼ନ୍ତା ଗଛର ଫାଟକଟିକୁ ଦେଖି ସେ ଯେତିକି ଆଶ୍ଚର୍ଯ୍ୟ ହୋଇଥିଲା, ରେଳବଗିରେ ଶ୍ରେଣୀ ଚାଲିବା ଦେଖି ସେତିକି ଉଲ୍ଲସି ଉଠିଥିଲା । ସେ ଖୁସିରେ ନାଚି ଉଠିଥିଲା । ତା'ର ବିଶ୍ୱାସ ଆସି ଯାଇଥିଲା ଯେ ପ୍ରଧାନ ଶିକ୍ଷକ ସୋସାକୁ କୋବାୟାଶି ତା'ର ଜଣେ ଭଲ ସାଙ୍ଗ । ତୋତ୍ତୋ-ଚ୍ୱାନ୍ ଓ ସାଙ୍ଗମାନେ ଦ୍ୱିତୀୟ ଶ୍ରେଣୀର ପିଲା ଭାବରେ ନିଜକୁ ଟିକିଏ ବଡ଼ ମନେ କରି ଖୁସି ହେଉଥିଲେ । ପ୍ରଥମ ଶ୍ରେଣୀକୁ ଆସିଥିବା ନୂଆ ଛୁଆମାନେ ଏବେ କନ କନ ହୋଇ ସବୁ ଜିନିଷ ଦେଖୁଥା'ନ୍ତି । ତୋତ୍ତୋ-ଚ୍ୱାନ୍ ଓ ତା'ର ସାଙ୍ଗମାନେ ବର୍ଷେ ତଳେ ଯେଭଳି କରୁଥିଲେ ।

ଗଲାବର୍ଷଟି ଭିତରେ ତୋତ୍ତୋ-ଚ୍ୱାନ୍ ପାଇଁ ଅନେକ କିଛି ଘଟିଗଲା । ସେ ପ୍ରତି ସକାଳକୁ ଅନାଇ ରହୁଥିଲା । ରାସ୍ତା କଡ଼ର ବାଜାବାଲାଙ୍କ କଥା ତାକୁ ଏବେ ବି ଭଲ

ଲାଗୁଥିଲା । କିନ୍ତୁ ଗ୍ରିପଟର ଅନେକ ଅନେକ ଜିନିଷକୁ ଭଲ ପାଇବାକୁ ଏବେ ସେ ଶିଖି ଯାଇଥିଲା । ଯେଉଁ ଟିକି ଛୁଆଟି ଦୁଷ୍ଟାମୀ ଯୋଗୁଁ ସ୍କୁଲରୁ ତଡା ଖାଇଥିଲା ସେ ଏବେ ତୋମୋଏର ଜଣେ ଯୋଗ୍ୟ ଛାତ୍ରୀ ବନି ଯାଇଥିଲା ।

କେତେଜଣ ବାପା ମା ତୋମୋଏରେ ପାଠପଢାକୁ ପୂରା ପସନ୍ଦ କରୁନଥିଲେ । ଏପରିକି ତୋତ୍ତୋ-ଗ୍ୱନ୍‌ର ମା' ଓ ବାପା ବି ଏଭଳି ସନ୍ଦେହରେ ପଡୁଥିଲେ । କେତେ ଅଭିଭାବକ କୋବାୟାଶିଙ୍କ ଶିକ୍ଷା ପଦ୍ଧତିକୁ ଗଭୀର ଭାବରେ ବୁଝୁନଥିଲେ । ପିଲାଙ୍କ ଭବିଷ୍ୟତ ବିଷୟରେ ଡରି ଯାଇ ସେମାନେ ଅନ୍ୟ ସ୍କୁଲର ବ୍ୟବସ୍ଥା କଲେ । କିନ୍ତୁ ପିଲାମାନେ ନିଜେ ତୋମୋଏ ଛାଡିବାକୁ ରାଜି ହେଉନଥିଲେ ଓ କାନ୍ଦୁଥିଲେ । ଭାଗ୍ୟକୁ ତୋତ୍ତୋ-ଗ୍ୱନ୍ ଶ୍ରେଣୀରୁ କେହି ଛାଡି ଯାଇନଥିଲେ । ତା' ଉପର ଶ୍ରେଣୀର ଜଣେ ପୁଅ ଯିବାର ଥାଏ । ଯିବାର ରାଗକୁ ସେ ପ୍ରଧାନ ଶିକ୍ଷକଙ୍କ ପିଠିରେ ଝାଡୁଥାଏ । ଆଖିରୁ ତା'ର ଲୁହ ବୋହି ଯାଉଥାଏ । ପ୍ରଧାନ ଶିକ୍ଷକଙ୍କ ଲୁହଭରା ଆଖି ବି ଲାଲ୍ ପଡି ଯାଇଥାଏ । ଶେଷରେ ବାପା ମା' ପିଲାଟିକୁ ଟାଣି କରି ବାହାରକୁ ନେଲେ । ଯିବା ବେଳକୁ ସେ ଥରକୁ ଥର ପଛକୁ ଫେରି ଚାହୁଁଥାଏ ଓ ହାତ ହଲାଉଥାଏ ।

କିନ୍ତୁ ଏପରି ଦୁଃଖ ଘଟଣା ବେଶୀ ଘଟିନଥିଲା । ଏବେ ତୋତ୍ତୋ-ଗ୍ୱନ୍ ଦ୍ୱିତୀୟ ଶ୍ରେଣୀକୁ ଉଠି ଯାଇଥାଏ । ଆଉ ପ୍ରତିଦିନର ନୂଆ ନୂଆ ଘଟଣା ସବୁକୁ ଅନାଇ ରହିଥାଏ । ପିଠିରେ ବହି ମୁଣି ଝୁଲାଇବା ଏବେ ତା'ର ଅଭ୍ୟାସରେ ପଡି ଗଲାଣି ।

## *ନୃତ୍ୟ ନାଟିକା*

ତୋତ୍ତୋଗ୍ୱନ୍ ଥରେ 'ସ୍ୱାନ୍ ଲେକ୍' ନାମକ ନୃତ୍ୟ ନାଟିକା ଦେଖିବା ପାଇଁ ଯାଇଥାଏ । ତା'ର ବାପା ସେଥିରେ ବେହେଲା ବଜାଉଥା'ନ୍ତି । ଗୋଟିଏ ଭଲ ଦଳ ନାଚୁଥା'ନ୍ତି । ପ୍ରଥମ ଥର ପାଇଁ ସେ ନାଟିକା ଦେଖିବାକୁ ଯାଇଥାଏ । ହଂସମାନଙ୍କ ରାଣୀ ଗୋଟିଏ ଛୋଟିଆ ଅଥଚ ଚକ୍ ଚକ୍ କରୁଥିବା ମୁକୁଟ ପିନ୍ଧିଥାଏ । ସେ ଗୋଟିଏ ସତ ହଂସ ଭଳି ପବନ କାଟି ଡେଇଁ ବୁଲୁଥାଏ । ତୋତ୍ତୋ-ଗ୍ୱନ୍‌କୁ ଅନ୍ତତଃ ଏହା ସତ ମନେ ହେଲା । ରାଜକୁମାର ହଂସରାଣୀର ପ୍ରେମରେ ପଡିଗଲେ ଓ ଅନ୍ୟମାନଙ୍କୁ ଏଡାଇ ଗଲେ । ଶେଷରେ ସେ ଦୁଇଜଣ ମିଶି ଖୁବ୍ ବଢିଆ ନାଚିଲେ । ବାଜାଟା ବି ତୋତ୍ତୋ-ଗ୍ୱନ୍‌ର ମନକୁ ବହୁତ ଛୁଇଁଲା । ଘରକୁ ଫେରିବା ପରେ ବି ଏହା ତା' ମନରେ ଖେଳୁଥାଏ । ପରଦିନ ସକାଳେ ନିଦରୁ ଉଠି ସେ ସିଧା ଯାଇ ରୋଷେଇ ଘରେ ମା'ଙ୍କ ପାଖେ ପହଞ୍ଚିଲା । ସେ ଜଣେଇ ଦେଲା, "ମୁଁ ଆଉ ଗୁଇନ୍‌ଦା କି ବାଜାବାଲା କି

ଟିକଟବିକାଳୀ ହେବାକୁ ଚାହେଁନି । ମୁଁ ନାଚ ଶିଖିବି ଓ ସ୍ୱାନ୍ ଲେକ୍ ନାଟିକାରେ ମିଶିବି !" "ଆଚ୍ଛା ହଉ" ଜମା ଆଶ୍ଚର୍ଯ୍ୟ ନହୋଇ ମା' କହିଲେ ।

ତୋତ୍ତୋ-ଚ୍ୱାନ୍ ଏବେ ପ୍ରଥମ ଥର ପାଇଁ ନାଟିକା ଦେଖିଲା; କିନ୍ତୁ ଆଗରୁ ପ୍ରଧାନ ଶିକ୍ଷକଙ୍କଠାରୁ ସେ ଶୁଣିଥିଲା ଯେ ଇସାଡୋରା ଡନ୍‌କାନ୍ ନାମକ ଜଣେ ଆମେରିକାନ୍ ମହିଳା ବହୁତ ଭଲ ନାଚନ୍ତି । କୋବାୟାଶିଙ୍କ ପରି ଇସାଡୋରା ଡନ୍‌କାନ୍ ବି ଡାଲକ୍ରୋଜ୍‌ଙ୍କ ଦ୍ୱାରା ବହୁତ ପ୍ରଭାବିତ ହୋଇଥିଲେ । ଇସାଡୋରା ଡନ୍‌କାନ୍‌ଙ୍କ ପାଇଁ ତା'ର ପ୍ରିୟ ପ୍ରଧାନ ଶିକ୍ଷକଙ୍କର ପ୍ରଶଂସା ତୋତ୍ତୋ-ଚ୍ୱାନ୍ ପାଇଁ ଯଥେଷ୍ଟ ଥିଲା । ସେ ତାଙ୍କ ନାଚ କେବେ ଦେଖିନଥିଲେ ମଧ୍ୟ ତାକୁ ଲାଗୁଥିଲା ସତେ ଯେମିତି ସେ ତାଙ୍କୁ ଜାଣିଛି । ତେଣୁ ନାଚ ଶିଖିବାଟା ତାକୁ କିଛି ଅସାଧାରଣ କଥା ଭଳି ମନେ ହେଲାନାହିଁ ।

ତୋମୋଏରେ ଇଉରିଦ୍‌ମିକ୍ସ୍ ଶିଖାଉଥିବା ଭଦ୍ରଲୋକଙ୍କର ଗୋଟିଏ ନାଚ ଶିକ୍ଷା କେନ୍ଦ୍ର ତୋତ୍ତୋ-ଚ୍ୱାନ୍‌ର ଘର ପାଖରେ ଥିଲା । ସ୍କୁଲ ଛୁଟି ପରେ ସେଠାରେ ନାଚ ଶିଖିବାର ବ୍ୟବସ୍ଥା ମା' ତା' ପାଇଁ କରିଦେଲେ । ମା' ତୋତ୍ତୋ-ଚ୍ୱାନ୍‌କୁ କେବେ ବି କହୁନଥିଲେ ଏଇଆ କର ବା ସେଇଆ କର । ବରଂ ସେ ନିଜେ ଯେବେ କିଛି କରିବାକୁ ଚାହୁଁଥିଲା ମା' ରାଜି ହେଉଥିଲେ । ଆଉ ଅଧିକା କିଛି ପ୍ରଶ୍ନ ନପଚାରି ତା'ର ବ୍ୟବସ୍ଥା କରି ଦେଉଥିଲେ ।

'ସ୍ୱାନ୍ ଲେକ୍' ନାଟିକାରେ ଦିନେ ନାଚିବ ଏଇ ଆଶା ନେଇ ତୋତ୍ତୋ-ଚ୍ୱାନ୍ ନାଚ ଶିଖିବା ଆରମ୍ଭ କଲା । କିନ୍ତୁ ଶିକ୍ଷକଙ୍କ ନିଜର ଏକ ବିଶେଷ ଧାରା ଥିଲା । ଇଉରିଦ୍‌ମିକ୍ସ୍ ଛଡା ସେ ପିଲାଙ୍କୁ ପିଆନୋର ତାଳରେ ଘୁରି ବୁଲିବାକୁ କହୁଥିଲେ । ପିଲାମାନେ କିଛି ଗୋଟିଏ ଘୋଷା ଧରି ଗୋଡ ହାତ ହଲାଉଥିଲେ । ମଝିରେ ମଝିରେ ହଠାତ୍ ଶିକ୍ଷକ ଡାକ ଦେବେ, "ଉପରକୁ ଚାହଁ" ବା "କଷ୍ଟ ପାଉଥିବା ମଣିଷ"....। ପିଲାମାନେ ସେହି ଭଙ୍ଗିରେ ସ୍ଥିର ହୋଇଯାଆନ୍ତି । ଶିକ୍ଷକ ନିଜେ ମଧ୍ୟ ସେ ଭଙ୍ଗୀ କରୁଥିଲେ ।

ତୋତ୍ତୋ-ଚ୍ୱାନ୍‌ର ମନରେ କିନ୍ତୁ ଚକଚକିଆ ମୁକୁଟ ଓ ଧଳା ପୋଷାକ ପିନ୍ଧା ହଂସଟି ବସା ବାନ୍ଧି ରହିଥିଲା । ଘୁରି ବୁଲିବା ବା ଭଙ୍ଗୀ କରିବାରେ ତା'ର ବିଶେଷ ଆଗ୍ରହ ନଥିଲା ।

ଦିନେ ତୋତ୍ତୋ-ଚ୍ୱାନ୍ ସାହସ କରି ଶିକ୍ଷକଙ୍କ ପାଖକୁ ଗଲା । ସେ ଜଣେ ପୁରୁଷ ଲୋକ ହେଲେ ବି ତାଙ୍କର କୁଞ୍ଚୁ କୁଞ୍ଚିଆ ବାଳ ଥିଲା ଓ ତାହା ମୁହଁ ଉପରେ ସିଧା କଟା ହୋଇଥିଲା । ତୋତ୍ତୋ-ଚ୍ୱାନ୍ ତା'ର ହାତ ଦୁଇଟିକୁ ମେଲି ଦେଇ ହଂସର ଡେଣା ଭଳି ହଲାଇ ପଚାରିଲା, "ଆମେ କ'ଣ କେବେ ଏମିତି କରିବୁନି ?"

ବଡ ବଡ ଗୋଲ ଆଖି ଓ ଲମ୍ବା ନାକଥିବା ଶିକ୍ଷକଜଣକ ଦେଖିବାକୁ ବେଶ୍ ସୁନ୍ଦର ଥିଲେ । ସେ କହିଲେ, "ଆମେ ଏଠାରେ ସେଭଳି ନାଚ କରୁନାହିଁ ।"

ଏହାପରଠୁ ତୋତ୍ତୋ-ଚ୍ୱାନ୍ ଆଉ ସେ ନାଚକୁ ଗଲାନାହିଁ । ଅବଶ୍ୟ ଖାଲି ପାଦରେ ଡେଇଁ ବୁଲିବା ଓ ନିଜ ମନରୁ ନୂଆ ଭଙ୍ଗୀ କରିବା ତାକୁ ଭଲ ଲାଗୁଥିଲା । ହେଲେ ହଂସ ରାଣୀର ଚକଚକିଆ ଛୋଟ ଛୋଟ ମୁକୁଟଖଣ୍ଡକ ପାଖରେ ତା'ର ଅସଲ ମନ ଥିଲା ।

ଶିକ୍ଷକ ତାକୁ କହିଥିଲେ, ''ସ୍ୱାନ୍ ଲେକ୍ ନାଚ ନିଶ୍ଚୟ ଭଲ । କିନ୍ତୁ ତୁମ ନିଜ ଇଚ୍ଛା ଅନୁସାରେ ତୁମେ ନାଚ ବୋଲି ମୁଁ ଚାହୁଁଥିଲି ।''

ଅନେକ ଦିନ ପରେ ତୋତ୍ତୋ-ଚାନ୍ ଜାଣିଲା ଯେ ସେ ଶିକ୍ଷକଙ୍କର ନାଁ ଥିଲା ବାକୁଇଶି । ସେ ଜାପାନରେ ଏଭଳି 'ମୁକ୍ତ ନାଚ' ଆରମ୍ଭ କରିଥିଲେ । ତୋତ୍ତୋ-ଚାନ୍‌ର ଘର ପାଖ ଅଞ୍ଚଳର ନାଁ ସେ ହିଁ ରଖିଥିଲେ ଜିଉଗାଓକା ବା ''ମୁକ୍ତି ପାହାଡ଼ ।'' ଏସବୁ ଛଡ଼ା ପଚାଶ ବର୍ଷର ଏହି ମଣିଷଟି କୁନି ତୋତ୍ତୋ-ଚାନ୍‌କୁ ମନ ଖୋଲା ନାଚର ମଜା ଚଖାଇବାର ଚେଷ୍ଟା କରୁଥିଲେ ।

## କୃଷି ଶିକ୍ଷକ

ଦିନେ ପ୍ରଧାନ ଶିକ୍ଷକ ଜଣେ ନୂଆ ଲୋକଙ୍କୁ ଆଣିଲେ । ଆଉ କହିଲେ, ''ଆଜି ପାଇଁ ଇଏ ତୁମ ଶିକ୍ଷକ । ସେ ତୁମକୁ ଅନେକ କଥା ଶିଖାଇବେ ।'' ତୋତ୍ତୋ-ଚାନ୍ ତାଙ୍କୁ ନିରେଖି କରି ଦେଖିଲା । ତାଙ୍କର ଜାମାପଟା ଅନ୍ୟ ଶିକ୍ଷକଙ୍କ ଭଳି ନଥିଲା । ସେ କ୍ଷେତ କାମ କରୁଥିବା ଲୋକଙ୍କ ଭଳି ଲୁଗା ପିନ୍ଧିଥିଲେ ଓ ବେକରେ ଗାମୁଛାଟିଏ ପକାଇଥିଲେ । ମୋଟା କନାର ପ୍ୟାଣ୍ଟ ଖଣ୍ଡକରେ ଗୁଡ଼ାଏ ତାଳି ପଡ଼ିଥିଲା । ତାଙ୍କ ପାଦରେ ରବର ଚପଲ ହଳେ ଓ ମୁଣ୍ଡରେ ଛିଣ୍ଡା ଟୋପିଟିଏ ଥିଲା ।

କୁହୋନ୍‌ବୁତ୍‌ସୁ ମନ୍ଦିରର ପୋଖରୀ ପାଖରେ ପିଲାମାନେ ଏକାଠି ଥାଆନ୍ତି । ତୋତ୍ତୋ-ଚାନ୍ ତାଙ୍କ ନୂଆ ଶିକ୍ଷକଙ୍କୁ ଆଗରୁ କେଉଁଠି ଦେଖିଛି ବୋଲି ଭାବୁଥାଏ । ତାଙ୍କର ଖରା ସିଝା ମୁହଁର ଚମରେ ଭାଙ୍ଗ ପଡ଼ି ଯାଇଥାଏ । ତାଙ୍କ ଅଣ୍ଟାରେ ବନ୍ଧାଥିବା କନା ଡୋରି ଖଣ୍ଡେ କନାର ପଟିର କାମ କରୁଥାଏ । ସେଥିରୁ ଝୁଲୁଥିବା ଚିଲମ୍‌ଟି ତୋତ୍ତୋ-ଚାନ୍‌କୁ ଚିହ୍ନା ଚିହ୍ନା ଲାଗୁଥାଏ । ହଠାତ୍ ତା'ର ମନେ ପଡ଼ିଗଲା ।

''ଆପଣ ସେ ନାଳ କୂଳରେ କ୍ଷେତ କରନ୍ତି ନା ?'', ସେ ତାଙ୍କୁ ଅତି ଖୁସିରେ ପଚାରିଲା ।

''ହଁ,'' ସବୁତକ ଦାନ୍ତ ଦେଖାଇ ସେ ନୂଆ 'ଶିକ୍ଷକ' ହସି କହିଲେ । ''କୁହୋନ୍‌ବୁତ୍‌ସୁ ଗଲାବେଳେ ତମେ ମୋର କ୍ଷେତ ଦେଇ ଯାଅ । ହେଇ.... ସେଇ କ୍ଷେତ, ଯେଉଁଠି ଏବେ ହଳଦିଆ ସୋରିଷ ଫୁଲ ଭରିଛି,'' ସେ ହାତ ବଢ଼ାଇ ଦେଖାଇଦେଲେ ।

''ବାଃ, ଆପଣ ଆଜି ଆମକୁ ପଢ଼ାଇବେ !'' ପିଲାମାନେ ଉତ୍ସାହରେ କହିଉଠିଲେ ।

''ନାଇ ମ,'' ସେ ହାତ ହଲାଇ କହିଗଲେ । ''ମୁଁ ଶିକ୍ଷକ ନୁହେଁ, ଜଣେ ଚାଷୀ । ତୁମକୁ କିଛି ଦେଖାଇବା ପାଇଁ ପ୍ରଧାନ ଶିକ୍ଷକ ମୋତେ କହିଛନ୍ତି ।''

ପାଖରେ ଥାଇ ପ୍ରଧାନ ଶିକ୍ଷକ କହିଲେ, ''ସେ ସତରେ ତୁମର ଶିକ୍ଷକ କୃଷି ଶିକ୍ଷକ। କ୍ଷେତରେ ଫସଲ ଉତାରିବା କଥା ସେ ଆଜି ତୁମକୁ ଶିଖାଇବେ। ଏହା ଠିକ୍ ଜଣେ ଗୁଡିଆଙ୍କଠୁ ମିଠେଇ ତିଆରି ଶିଖିବା ଭଳି ହେବ।'' ସେ ପୁଣି ଶିକ୍ଷକଙ୍କୁ କହିଲେ, ''ଏଥର ଆରମ୍ଭ କରନ୍ତୁ।''

ଅନ୍ୟସ୍କୁଲ ସବୁରେ କିଛି ବିଶେଷ ତାଲିକା ଥିବା ଲୋକମାନେ କେବଳ ପାଠ ପଢାନ୍ତି। କିନ୍ତୁ ଶିକ୍ଷକ କୋବାୟାଶି ସେ କଥା ମାନନ୍ତିନାହିଁ। ପିଲାମାନେ ସତ କାମରୁ ଶିଖିବାଟା ତାଙ୍କର ବେଶୀ ପସନ୍ଦ ଥିଲା।

''ଆଚ୍ଛା, ଏଥର ଆରମ୍ଭ କରିବା,'' କୃଷି ଶିକ୍ଷକ କହିଲେ।

କୁହୋନ୍‌ବୁତ୍‌ସୁ ପୋଖରୀ ପାଖରେ ସେମାନେ କାମ ପାଇଁ ତିଆରି ହେଲେ। ଗଛ ଛାଇ ଘେରା ଜାଗାଟିର ପରିବେଶ ଖୁବ୍ ଶାନ୍ତ ଥିଲା। ସେମାନେ ଆସିବା ଆଗରୁ ପ୍ରଧାନ ଶିକ୍ଷକ ଗୋଟିଏ ଛୋଟ ରେଳଡବା ସେଠାରେ ରଖାଇ ଥିଲେ। କୋଦାଳ, ଖୁରୁପି ଓ ଅନ୍ୟ ଯନ୍ତ୍ରପାତି ସବୁ ସେଥିରେ ରହୁଥିଲା। ସେମାନଙ୍କର କ୍ଷେତର ମଝିରେ କରି ରେଳ ଡବାଟି ରହିଥିଲା ଏବଂ ପରିବେଶ ସହିତ ଖାପ ଖାଇ ଯାଉଥିଲା।

କୃଷି ଶିକ୍ଷକ କହିବାରୁ ପିଲାମାନେ କୋଦାଳ ଆଦି ବାହାର କଲେ ଓ ଅନାବନା ଘାସ ସଫା କରିବାରେ ଲାଗିଲେ। ଏହି ଅଗଛାଗୁଡ଼ିକ ବିଷୟରେ ଶିକ୍ଷକ ତାଙ୍କୁ ବୁଝାଇଲେ: ଅଗଛାଗୁଡ଼ିକ ଖୁବ୍ ଦମ୍ଭିଲା; ସେସବୁ ଖୁବ୍ ଜଲଦି ବଢନ୍ତି ଓ ଫସଲକୁ ଛାଇ କରି ଦିଅନ୍ତି; ଅନାବନା ଘାସରେ ଫସଲ ଖାଇ ଯାଉଥିବା କୀଟମାନେ ଲୁଚି ରୁହନ୍ତି; ଏଗୁଡ଼ିକ ମାଟିରୁ ବେଶୀ ସାର ଟାଣି ନେଇ ଫସଲକୁ ଦବାଇ ଦିଅନ୍ତି। ଗୋଟି ଗୋଟି କରି ସେ ଏ ସବୁ କଥା ବୁଝାଇ ଦେଲେ। କଥା କହିବାବେଳେ ବି ତାଙ୍କ ହାତ ଦୁଇଟି ଘାସ ଓପାଡି ଚାଲିଥାଏ। ପିଲାମାନେ ବି ସେଭଳି କାମରେ ଲାଗି ଯାଇଥାଆନ୍ତି। ଏହା ପରେ ଶିକ୍ଷକ ତାଙ୍କୁ ମାଟି ହାଣିବା, ସିଆର କାଟି ଖତ ଦେବା ଓ ଅନ୍ୟ ସବୁ କାମ ଶିଖାଇ ଚାଲିଲେ। ଫସଲ ଉତାରିବାର ସବୁ ଦରକାରୀ କାମ ସେ ଦେଖାଉଥା'ନ୍ତି ଓ ବୁଝାଉଥା'ନ୍ତି।

ଘାସ ଭିତରୁ ହଠାତ୍ ଛୋଟିଆ ସାପଟିଏ ବାହାରି ଆସିଲା। ସେ ଜଣେ ବଡ ଶ୍ରେଣୀର ପିଲା, ତାଏଗ୍ରନ୍‌ର ହାତକୁ ଲାଗି ଆସିଲା। ଶିକ୍ଷକ ତାକୁ ବୁଝାଇଦେଲେ ଯେ କିଛି ଡରିବାର ନାହିଁ। କାରଣ ସେଠାକାର ସାପଗୁଡ଼ିକ ବିଷାକ୍ତ ନଥିଲେ। ତା' ଛଡା ତାଙ୍କର କିଛି କ୍ଷତି ନକଲେ ସେମାନେ କାହାକୁ କାମୁଡନ୍ତି ନାହିଁ।

ଚାଷ କାମ ଶିଖାଇବା ସାଙ୍ଗେ ସାଙ୍ଗେ ଶିକ୍ଷକ ଅନେକ କଥା ସେମାନଙ୍କୁ କହି ଚାଲିଥା'ନ୍ତି। କୀଟ, ଚଢେଇ, ପ୍ରଜାପତି, ପାଣିପାଗ ଭଳି କେତେ ମଜା ମଜା କଥା। ତାଙ୍କର ଗଣ୍ଠିଆ ଟାଣ ହାତ ଦୁଇଟି ଦେଖିଲେ ମନେ ହେଉଥିଲା ଯେ ଏ ସବୁ କଥା ସେ ନିଜ ଅନୁଭୂତିରୁ ଶିଖିଛନ୍ତି।

ଶିକ୍ଷକଙ୍କ ସାଙ୍ଗରେ ମିଶି, କ୍ଷେତ ହାଣି, ମଞ୍ଜି ଲଗାଇ ସାରିଲା ବେଳକୁ ପିଲାମାନେ ଝାଳରେ ବୁଡିଗଲେଣି। ଅଳ୍ପ କେତେଟା ବଙ୍କାଟଙ୍କା ସିଆରକୁ ଛାଡି ଦେଲେ କ୍ଷେତଖଣ୍ଡକ ସବୁ ଆଡୁ ବଢିଆ ହୋଇଥିଲା।

ସେହିଦିନଠାରୁ ଗ୍ରୁଷୀଜଣଙ୍କୁ ପିଲାମାନେ ଖୁବ୍ ମାନୁଥା'ନ୍ତି । ଦୂରରୁ ଦେଖିଲେ ବି ସେମାନେ ପାଟି କରୁଥିଲେ, "ହେଇ, ସେଠି ଆମ କୃଷି ଶିକ୍ଷକ," ଶିକ୍ଷକ ବି ମଝିରେ ମଝିରେ ତାଙ୍କର ବଳକା ସାର ଆଣି ପିଲାଙ୍କ କ୍ଷେତରେ ପକାଉଥିଲେ। ପିଲାଙ୍କ ଫସଲ ବି ଭଲ ବଢ଼ି ଗ୍ରୁଲିଲା। ପିଲାମାନେ ପାଳି କରି ଫସଲ ଦେଖିବାକୁ ଯାଉଥିଲେ ଓ ଫେରିଲା ପରେ କ୍ଷେତର ହାଲଗ୍ରୁଲ ସମସ୍ତଙ୍କୁ ଜଣାଉଥିଲେ। ନିଜ ହାତ ଲଗା ମଞ୍ଜି ଗଜୁରିବାର ଖୁସି ଓ ଉଦ୍ଦୀପନା ସେମାନେ ଗ୍ରୁଖିଲେ। ଆଉ ଦୁଇ ତିନି ଜଣ ଯେବେ ଏକାଠି ହୋଇ ଯାଉଥିଲେ ଫସଲ ଉପରେ ହିଁ ତାଙ୍କ ଗପ ଗ୍ରୁଲୁଥିଲା ।

ସେତିକି ବେଳକୁ ପୃଥିବୀର ଅନେକ ଅଞ୍ଚଳରେ ଅବସ୍ଥା ଖରାପ ଆଡକୁ ଯାଉଥାଏ। କିନ୍ତୁ କୁନି କ୍ଷେତଟିର ଗପରେ ମାତିଥିବା ପିଲମାନେ ଶାନ୍ତିର ସମୁଦ୍ରରେ ବୁଡି ରହିଥିଲେ।

## *ବଣଭୋଜି*

ଦିନେ ସ୍କୁଲ ଛୁଟି ପରେ ତୋତୋ-ଗ୍ରୁନ୍ କାହାକୁ କିଛି ନକହି ବା ବିଦାୟ ନଜଣାଇ ଘରକୁ ଦୌଡ଼ିଲା। ବାଟଯାକ ସେ ଗୁଣୁ ଗୁଣୁ ହୋଇ କହି ଗ୍ରୁଲିଥାଏ, "ବଜ୍ର ଗଣ୍ଡରେ ରନ୍ଧା ବଢ଼ା; ବଜ୍ର ଗଣ୍ଡରେ ରନ୍ଧା ବଢ଼ା...."

ବାକ୍ୟଟା ତା' ଭଳି ଛୋଟ ପିଲାଟି ପାଇଁ ବେଶ୍ କଷ୍ଟ ଥିଲା। ତଥାପି ତା'ର ପ୍ରିୟ ଚିତ୍ର କଥାର ମୁଖିଆର ନାଁଠାରୁ ଏହା ଥିଲା ସହଜ। ତା'ର ନାଁଟି ଏତେ ଲମ୍ବ ଥିଲା ଯେ ସେ ତାହା ପୂରା କହିସାରିବା ଆଗରୁ କୂଅରେ ବୁଡିଗଲା ! ତୋତୋ-ଗ୍ରୁନ୍ ମନଧ୍ୟାନ ଦେଇ କଥାଟିକୁ ଦୋହରାଇ ଗ୍ରୁଲିଥାଏ, " ବଜ୍ର ଗଣ୍ଡରେ....।" ତା' ଆଗରେ କେହି କିଛି ମଜା କଥା ଆରମ୍ଭ କରିଥିଲେ ବା ତାକୁ ପାଣି କାଦୁଅରେ ଡେଇଁବାକୁ ପଡିଥିଲେ ସେ ନିଶ୍ଚୟ ତା'ର ଘୋଷା ଭୁଲି ଯାଇଥା'ନ୍ତା। ଭାଗ୍ୟକୁ ରେଳରେ କେହି ତାକୁ କିଛି କହିଲେନାହିଁ। ସେ ବି କିଛି ନୂଆ ଜିନିଷ ଆଡକୁ ମନ ବଳାଇଲାନାହିଁ। ଥରଟିଏ ପାଇଁ ବି ସେ ଆଜି, "ଆରେ, ଏଇଟା କ'ଣ ?" କହି ମାଡି ଗଲାନି। ଖାଲି ତା'ର ଘର ପାଖ ଷ୍ଟେସନ୍‌ରେ ଜଣେ ଚିହ୍ନା ଲୋକ ଭେଟ ହେଲେ। "ଆଜି କ'ଣ ଏତେ ଚଞ୍ଚଳ ଫେରୁଛ ?" ବୋଲି ସେ ପଗ୍ରୁରୁ ପଗ୍ରୁରୁ ତୋତୋ-ଗ୍ରୁନ୍ ତା'ର ହାତ ହଲାଇ ଦେଇ ଛୁ !

ଘରେ ପହଞ୍ଚିବା ମାତ୍ରେ ଖୁବ୍ ବଡ ପାଟିରେ ସେ ମା'ଙ୍କୁ କହିଗଲା, "ବଜ୍ର ଗଣ୍ଡରେ ରନ୍ଧା ବଢ଼ା !" ମା' କଥାଟା ଆଗ ଠିକ୍ ଧରି ପାରିଲେନାହିଁ। ଭାବିଲେ ଏହା ବୋଧେ କିଛି ଜୁଡୋ ହୁଙ୍କାର ବା ପାଇକମାନଙ୍କର ଯୁଦ୍ଧ ଡାକରା। ଟିକିଏ ପରେ କିନ୍ତୁ ତାଙ୍କର ଖିଆଲ୍ ଆସିଲା । ଜିଉଗାଓକାଠାରୁ ତିନୋଟି ଷ୍ଟେସନ ଛାଡି ତୋଦୋରୋକି ଷ୍ଟେସନ୍। ତା' ପାଖରେ ଗୋଟିଏ ଖୁବ୍ ସୁନ୍ଦର ପ୍ରାକୃତିକ ଅଞ୍ଚଳ ରହିଛି। ତା'ର ନାଁ

'ତୋଦୋରୋକି କାଇକୋକୁ' ବା 'ବଜ୍ରଗଣ୍ଡ', ପୁରୁଣା ଟୋକିଓ ସହରରେ ଏହି ଅଞ୍ଚଳଟି ଖୁବ୍ ଜଣାଶୁଣା । ସେଠାରେ ଜଙ୍ଗଲ ଭିତରେ ଗୋଟିଏ ଜଳପ୍ରପାତ ଓ ଝରଣା ରହିଛି। ମା' ଠଉରେଇଲେ ଯେ ପିଲାମାନେ ସେଠାରେ ବଣଭୋଜି କରିବାକୁ ଯିବେ। କିନ୍ତୁ ଗୋଟିଏ କଥା ତାଙ୍କୁ କାବା ଲାଗିଲା - ପିଲାଙ୍କର ମନ ଲାଗିଗଲେ କେତେ କଷ୍ଟ କଥା ବି ସେମାନେ ମନେ ରଖି ପାରନ୍ତି !

କଷ୍ଟ ବାକ୍ୟରୁ ମୁକ୍ତି ପାଇବାରୁ ତୋତ୍ତୋ-ଗ୍ୱନ୍ ଆଶ୍ୱସ୍ତ ହେଲା। ଧୀରେ ଧୀରେ ସେ ଏ ବିଷୟରେ ସବୁ କଥା ମା'ଙ୍କୁ କହିଲା। ଆସନ୍ତା ଶୁକ୍ରବାର ସକାଳେ ପିଲାମାନେ ସ୍କୁଲଠାରେ ଏକାଠି ହୋଇ ବଜ୍ରଗଣ୍ଡ ଯିବେ। ସାଙ୍ଗରେ ସେମାନେ ଥାଳି ତାଟିଆ ଓ ମୁଠାଏ ଚାଉଳ ଆଣିଥିବେ। ତୋତ୍ତୋ-ଗ୍ୱନ୍ ପ୍ରଧାନ ଶିକ୍ଷକଙ୍କ କଥା ମନେ ପକାଇ କହିଲା ଯେ ମୁଠାଏ ଚାଉଳ ରାନ୍ଧିଲେ ଦୁଇ ମୁଠା ଭାତ ହେବ । ଝୋଳ ପାଇଁ କିଛି ମାଂସ ଓ ପରିବା ଆଉ ଉପର ଓଳି ପାଇଁ କିଛି ଜଳଖିଆ ବି ସେ ନେବାର ଥିଲା।

ଏହାର ପର କେତେଦିନ ତୋତ୍ତୋ-ଗ୍ୱନ୍ ରୋଷେଇ ଘରେ ମା'ଙ୍କ ପାଖ ଛାଡ଼ିଲାନି। ସେ ଛୁରିରେ କିପରି କାଟୁଛନ୍ତି, ହାଣ୍ଡିକୁ କିଭଳି ଧରୁଛନ୍ତି, କେଉଁଥିରେ ଭାତ ବାଢ଼ୁଛନ୍ତି ଓ ସବୁ କଥା ସେ ଲକ୍ଷ୍ୟ କରି ଚାହିଁଲା । ମା'ଙ୍କ କାମ ଦେଖିବାକୁ ତାକୁ ମଜା ଲାଗୁଥାଏ । ତାକୁ ସବୁଠୁ ବେଶୀ ମଜା ଲାଗିଲା ଯେତେବେଳେ ମା' କିଛି ଗରମ ଜିନିଷ ଛୁଇଁଲେ କିପରି, "ଓଃ, କେଡେ ଗରମ !" କୁହନ୍ତି ଆଉ ଆଙ୍ଗୁଠିକୁ ତଳ କାନରେ ଲଗାଇ ଧରନ୍ତି ।

"ତଳ କାନଟା ବେଶ୍ ଥଣ୍ଡା ଥାଏ ତ," ମା' କାନ ଛୁଇଁବାର କାରଣ ବୁଝାଇଦେଲେ।

ଏଭଳି କହିବା ଓ କାନ ଛୁଇଁବାଟା ପୁରୁଖା ରୋଷେଇ କଲା ଲୋକଙ୍କ ଲକ୍ଷଣ ଭଳି ତୋତ୍ତୋ-ଗ୍ୱନ୍‌କୁ ମନେହେଲା । "ବଜ୍ର ଗଣ୍ଡରେ ରାନ୍ଧିଲା ବେଳେ ମୁଁ ବି ଏଭଳି କରିବି," ତୋତ୍ତୋ-ଗ୍ୱନ୍ ମନକୁ ମନ କହିଲା ।

ଶେଷରେ ଶୁକ୍ରବାର ହେଲା । ରେଳଗାଡ଼ିରୁ ଓହ୍ଲାଇ ସମସ୍ତେ ବଜ୍ର ଗଣ୍ଡରେ ପହଞ୍ଚିଲେ । ଗଛ ଗହଳିରେ ଏକାଠି ହୋଇଥିବା ପିଲାଙ୍କ ଉପରେ ପ୍ରଧାନ ଶିକ୍ଷକ ଆଖି ପକାଇଲେ । ପତ୍ର ଫାଙ୍କରେ ଆସୁଥିବା ସୂର୍ଯ୍ୟ କିରଣରେ ପିଲାଙ୍କ ମୁହଁଗୁଡ଼ିକ ଚମକୁ ଥାଏ । ତାଙ୍କ ପିଠିରେ ଜିନିଷ ଖୁନ୍ଦା ମୁଣିସବୁ ଝୁଲୁଥାଏ । ପ୍ରଧାନ ଶିକ୍ଷକଙ୍କ କଥା ଶୁଣିବାକୁ ସେମାନେ ଅନାଇ ରହିଥା'ନ୍ତି। ଟିକିଏ ଦୂରରେ ଜଳପ୍ରପାତର ଘୁ' ଘୁ' ଶବ୍ଦ ଭଲ ତାଳ ଦେଉଥାଏ ।

"ଏଥର ତେବେ ଆମେ କାମରେ ଲାଗିବା," ପ୍ରଧାନ ଶିକ୍ଷକ କହିଲେ, "ଆଗ ଆମେ ଅଲଗା ଅଲଗା ଦଳ କରିବା ଆଉ ଚୂଲି ପାରିବା । ତା'ପରେ ତଳେ ଝରଣାରେ ଚାଉଳ ଧୋଇ ଭାତ ବସାଇବ ଓ ଝୋଳ ପାଇଁ ଯୋଗାଡ଼ କରିବ ।"

ଅଲ୍ ମଲ୍ ଢିଙ୍କି ଢୋଲ୍.... ଗୀତ ଗାଇ ପିଲାମାନେ ଦଳରେ ବାଣ୍ଟି ହେଲେ। ସେମାନେ ମୋଟରେ ପ୍ରାୟ ପଚାଶ ଜଣ ଥିଲେ । ଛଅଟି ଦଳ ହେବାକୁ ତାଙ୍କୁ ବେଶୀ ବେଳ ଲାଗିଲା ନାହିଁ । କେତେ ଜଣ ଗାତ ଖୋଳି, ଇଟା ପଥର ଘେରାଇ ଚୂଲି

ତିଆରି କରିବାରେ ଲାଗିଗଲେ । କିଏ କାଠ ଗୋଟେଇବାକୁ ଗଲେ, ଆଉ କିଏ ଗ୍ଲାସ ଧୋଇଲେ । ପିଲାମାନେ ନିଜେ ନିଜେ କାମ ସବୁ ବାଣ୍ଟି ନେଇଥା'ନ୍ତି । ତୋତୋ-ଗ୍ରିନ୍ ପରିବା କାଟିବା ଓ ଝୋଳ କଥା ବୁଝିବା ପାଇଁ ବାହାରି ପଡିଲା । ତା'ଠାରୁ ଦୁଇ ବର୍ଷ ବଡ ପୁଅଟିଏ ବି ପରିବା କାଟୁଥାଏ । ତା'ର କାମଟା ବଡ ଅଖାଡୁଆ ହେଉଥାଏ । ତଥାପି ସେ ଝାଳୁଆ ମୁହଁରେ ଲାଗି ପଡିଥାଏ । ତୋତୋ-ଗ୍ରିନ୍ କିନ୍ତୁ ମା'ଙ୍କଠାରୁ ଦେଖିଥିବା ଭଳି ଆଳୁ, ବାଇଗଣ, ପିଆଜ ସବୁ କାଟି ଗ୍ଲିଲା । ତା'ର ପରିବା ଖଣ୍ଡଗୁଡିକ ସମାନ ହେଉଥାଏ । କିଛି କାକୁଡି ଓ ବିଲାତି ବାଇଗଣ ପତଳା କରି କାଟି, ସେଥିରେ ଲୁଣ ଦେଇ ସେ ସାଲାଡ୍ ତିଆରି କଲା । ଅନ୍ୟ ବଡ ପିଲାଙ୍କର କାମରେ ଅସୁବିଧା ହେଲେ ସେ ବତାଇ ଦେଉଥାଏ । ତୋତୋ-ଗ୍ରିନ୍‌ର ମନେ ହେଉଥାଏ ସେ ସତରେ ଯେପରି ମା'ଙ୍କ ଭଳି ବଡ ହୋଇ ଯାଇଛି । ତା'ର ସାଲାଡ୍ ତିଆରି ଦେଖି ସମସ୍ତେ ବଡ ପ୍ରଶଂସା କଲେ । ସେ ନରମ ଭାବରେ କହିଲା, "ମୁଁ



ଦେଖୁଥିଲି ସତରେ କରିପାରୁଛି କି ନାହିଁ ।''

ଝୋଳରେ କ'ଣ ମସଲା ଦିଆଯିବ ସେ କଥା ସଭିଙ୍କୁ ପଚରାଗଲା । ସବୁ ଦଳ କେଞ୍ଚି ହୋଇ ହସିବା ଛଡା ବିଶେଷ କିଛି କହିପାରିଲେ ନାହିଁ । ପିଲାଙ୍କର ଖିଲି ଖିଲି ହସ ସାଙ୍ଗେ ତାଳ ଦେଇ ଜଙ୍ଗଲର ଚଢେଇମାନେ ବି କିଚିରି ମିଚିରି କରୁଥା'ନ୍ତି । ରନ୍ଧାର ମହକରେ ଜାଗାଟି ଭରି ଉଠୁଥାଏ । ଆଗରୁ ପ୍ରାୟ କୌଣସି ପିଲା କିଛି ରନ୍ଧା ହେବା ଭଲ କରି ଦେଖି ନଥିଲେ, ସେଥିରେ ହାତ ଦେବାତ ଦୂରର କଥା । ନିଜେ ରାନ୍ଧିବାର ମଜା ଓ ଝାମେଲା ତାଙ୍କ ପାଇଁ ଗୋଟିଏ ନୂଆ ଅନୁଭୂତି ଥିଲା । ରାନ୍ଧିଲାବେଳେ ପରିବା ଆଦି କିଭଳି ବଦଳନ୍ତି ସେମାନେ ଏବେ ନିଜେ ଦେଖିବାକୁ ପାଇଲେ ।

ଶେଷରେ ସବୁ ଦଳର ରନ୍ଧାକାମ ସରିଲା । ଘାସ ଉପରେ ସମସ୍ତେ ଗୋଲ ହୋଇ ବସି ପାରିଲା ଭଳି ଜାଗା ଖଣ୍ଡେ ଓଳାଇ ସଫା କରାଗଲା । ପ୍ରତିଦଳ ପାଇଁ ଗୋଟିଏ ଭାତ ହାଣ୍ଡି ଓ ଗୋଟିଏ ଝୋଳ ହାଣ୍ଡି ଦିଆଗଲା । ତୋତ୍ତୋ-ଗ୍ୱାନ୍ କିନ୍ତୁ ତା'ର ଝୋଳ ହାଣ୍ଡିକୁ ଛାଡୁ ନଥାଏ । କାରଣ ମା'ଙ୍କର ତତଲା ଜିନିଷ ଛୁଇଁବା କଥାଟି ସେ ଏବେ ଯାଏଁ କରି ନଥାଏ । ହାଣ୍ଡିର ଘୋଡଣୀଟି ସେ ହାତରେ କାଢି ଦେଲା ଓ କହି ଉଠିଲା, ''ଉଃ... କି ଗରମ !'' ତା'ପରେ ସେ ଦୁଇ ହାତକୁ ତା'ର କାନରେ ଲଗାଇ ଧରିଲା । ପିଲାମାନେ ତା'ର କାରବାର ଦେଖି କିଛି ବୁଝିଲେନାହିଁ କି ବିଶେଷ ଧ୍ୟାନ ଦେଲେନାହିଁ । ତୋତ୍ତୋ-ଗ୍ୱାନ୍ କିନ୍ତୁ ତା'ର କାନଛୁଆଁ କାମରେ ସନ୍ତୁଷ୍ଟ ଥିଲା ।

ସମସ୍ତଙ୍କ ଆଗରେ ଭାତ ଆଉ ଝୋଳ ବଢା ହୋଇଗଲା । ଭୋକ ବି ଲାଗିଲାଣି । କିନ୍ତୁ ଆଜିର ବଡ କଥା ଥିଲା ଯେ ତାଙ୍କ ଆଗରେ ଆଜି ନିଜ ହାତ ତିଆରି ଖାନା ।

ପିଲାମାନେ ଗାଇଲେ, ''ଗ୍ରେବାଅ, ଗ୍ରେବାଅ, ଭଲରେ ଗ୍ରେବାଅ, ଯାହାବି ଖାଉଛ ତମେ....'' ଓ ପ୍ରାର୍ଥନା ସାରି ଖାଇବା ଆରମ୍ଭ କଲେ । ଜଙ୍ଗଲ ଏବେ ନୀରବ ହୋଇଗଲା, କେବଳ ଶୁଭୁଥାଏ ଜଳପ୍ରପାତର ଘୁଁ ଘୁଁ ଶବ୍ଦ ।

## *ସତରେ ତୁମେ ସୁନାପିଲା*

ପ୍ରଧାନ ଶିକ୍ଷକ ଯେବେ ବି ତୋତ୍ତୋ-ଗ୍ୱାନ୍‌କୁ ଦେଖନ୍ତି ସେ କୁହନ୍ତି, ''ତୁମେ ସତରେ ଗୋଟିଏ ସୁନା ଝିଅ ।'' ସବୁଥର ସେ ଏକଥା କହିଲାବେଳେ ତୋତ୍ତୋ-ଗ୍ୱାନ୍ ହସି ଦେଇ ଡେଇଁ ପଡେ, ଆଉ କୁହେ, ''ହଁ, ମୁଁ ଗୋଟିଏ ସୁନା ଝିଅ ।'' କଥାଟାରେ ତା'ର ପୂରା ବିଶ୍ୱାସ ବି ଥିଲା ।

ଅନେକ ଦିଗରୁ ତୋତ୍ତୋ-ଗ୍ୱାନ୍ ସତରେ ଖୁବ୍ ଭଲ ପିଲାଟିଏ ଥିଲା । ସମସ୍ତଙ୍କ ପାଇଁ ତା' ମନରେ ଦରଦ ଭରି ରହିଥିଲା; ବିଶେଷ କରି ଦେହରେ ଅସୁବିଧା ଥିବା

ସାଥିମାନଙ୍କ ପାଇଁ । ତୋତ୍ତୋ-ଗ୍ୱନ୍ ଏମାନଙ୍କର ଯତ୍ନ ନେଉଥିଲା । ଅନ୍ୟ ସ୍କୁଲର କେହି ପିଲା ଯଦି ଏମାନଙ୍କୁ ଥଟ୍ଟା କରୁଥିଲା ତେବେ ତୋତ୍ତୋ-ଗ୍ୱନ୍ ତାଙ୍କୁ ମାରିବାକୁ ଗୋଡ଼ାଉ ଥିଲା । ଅବଶ୍ୟ ଗଣ୍ଡଗୋଳରେ ତୋତ୍ତୋ-ଗ୍ୱନ୍ ହିଁ ମାଡ ଖାଇ କାନ୍ଦିବା ସାର ହେଉଥିଲା । ଜଖମ ହୋଇଥିବା ପଶୁପକ୍ଷୀଙ୍କର ଦେଖାଶୁଣା କରିବାକୁ ସେ ସବୁବେଳେ ବାହାରି ପଡୁଥିଲା । କିଛି ନୂଆ ଜିନିଷ ବିଷୟରେ ତା'ର କୌତୂହଳର ସୀମା ନଥିଲା । ଏସବୁ ଉପରେ ଅଧିକ ଜାଣିବାକୁ ଯାଇ ସେ ଅନେକ ଅସୁବିଧାରେ ମଧ୍ୟ ପଡୁଥିଲା ।

ବେଳେ ବେଳେ ସେ ଅଦ୍ଭୁତ କାଣ୍ଡ ସବୁ କରି ବସୁଥିଲା । ଥରେ ସକାଳେ ପ୍ରାର୍ଥନା ଶ୍ରେଣୀକୁ ଗଲାବେଳେ ତା'ର ଦୁଇ ବେଣୀକୁ କାଖ ତଳେ ଜାକି ଧରି ସେ ଗ୍ୱଲୁଥିଲା । ଆଉ ଥରେ ତା'ର ଶ୍ରେଣୀ ଘର ଓଳାଇବା ପାଳିର କଥା । ପୁରୁଣା ରେଳଡବାର ଚଟାଣରେ ସେ ଗୋଟିଏ ଛୋଟ କବାଟ ଦେଖିଲା । ଟାଣି ଓଟାରି ତାକୁ ସେ ଖୋଲିଲା ଓ ଅଳିଆତକ ସେବାଟେ ଗଳାଇ ଦେଲା । କିନ୍ତୁ ତାକୁ ଆଉ ବନ୍ଦ କରି ପାରିଲାନାହିଁ । ସମସ୍ତେ ଲାଗି ପଡି, ବେଶ୍ ହଇରାଣ ହୋଇ ତାକୁ ବନ୍ଦ କଲେ । ଆଉ ଦିନେ ସେ ଶୁଣିଲା କିଭଳି ଦୋକାନୀମାନେ ମାଂସକୁ କଣ୍ଟାରେ ଝୁଲାଇ ରଖନ୍ତି । ସେଦିନ ସ୍କୁଲରେ ଛାତରେ ଥିବା ଗୋଟିଏ କଡ଼ାକୁ ଧରି ଗୋଟିଏ ହାତରେ ଝୁଲି ରହିଲା । କେତେବେଳ ପରେ ଜଣେ ଶିକ୍ଷକ ତାକୁ ଦେଖି ଏ ଅବସ୍ଥା ବିଷୟରେ ପଗ୍ୱରିଲେ । ''ମୁଁ ଆଜି ଖଣ୍ଡେ ମାଂସ'', କହୁ କହୁ ତୋତ୍ତୋ-ଗ୍ୱନ୍‌ର ହାତ ଖସିଗଲା । ଚଟାଣରେ ସେ ଏଡେ ଜୋରରେ କଚଡା ଖାଇଲା ଯେ ଦିନଯାକ ତା' ପାଟିରୁ କଥା ବାହାରିଲାନାହିଁ । ତୋତ୍ତୋ-ଗ୍ୱନ୍‌ର ମଇଳା ଖାତ ଭିତରକୁ ଗଳି ପଡିଥିବା କଥା ତ ଆମେ ଆଗରୁ ଶୁଣିଛେ ।

ଏହି ସବୁ କାମ ଯୋଗୁଁ ତୋତ୍ତୋ-ଗ୍ୱନ୍ ବେଳେ ବେଳେ ଖଣ୍ଡିଆ ଖାବରା ବି ହେଉଥିଲା । କିନ୍ତୁ ପ୍ରଧାନ ଶିକ୍ଷକ କେବେ ତା' ବାପା ମା'ଙ୍କ ଆଗରେ ଫେରାଦ ହେଉନଥିଲେ । ଆଉ କେଉଁ ପିଲା ନାଁରେ ବି କିଛି ଅଭିଯୋଗ ଘରକୁ ଯାଉନଥିଲା । ସ୍କୁଲରେ ହିଁ ଏସବୁ ତୁଟି ଯାଉଥିଲା । ପିଲାଙ୍କର ସବୁକଥାକୁ ସେ ମନ ଦେଇ ଶୁଣୁଥିଲେ- ଠିକ୍ ଯେମିତି ସେ ପ୍ରଥମ ଦିନ ତୋତ୍ତୋ-ଗ୍ୱନ୍‌ର ଗ୍ୱରି ଘଣ୍ଟିଆ ଗପ ଶୁଣିଥିଲେ । କେଉଁ ପିଲା ଯଦି କିଛି ବଡ ଭୁଲ କାମଟିଏ କରିଥାଏ କଥାବାର୍ତ୍ତାର ଭିତରେ ସେ ତାହା ବୁଝି ଯାଉଥିଲା । ଶେଷକୁ ଅତି ବେଶୀରେ ପ୍ରଧାନ ଶିକ୍ଷକ କହୁଥିଲେ, ''ଏବେ କ୍ଷମା ମାଗିନିଅ ।''

ଅନ୍ୟ ପିଲାଙ୍କର ମା' ବାପା ଓ କିଛି ଶିକ୍ଷକ ତୋତ୍ତୋ-ଗ୍ୱନ୍‌ର କାରବାର ସବୁରେ ଟିକିଏ ଘାବରାଇ ଯାଉଥିଲେ । ପ୍ରଧାନ ଶିକ୍ଷକଙ୍କ କାନରେ ଏସବୁ ଅଭିଯୋଗରୁ କିଛି ପଡୁଥିଲା । ସେଥିପାଇଁ ସେ ସୁବିଧା ପାଇଲା ମାତ୍ରେ ତୋତ୍ତୋ-ଗ୍ୱନ୍‌କୁ କହି ଗ୍ୱଲୁଥିଲେ, ''ସତରେ, ତୁମେ କେତେ ସୁନା ଝିଅ ।'' ଜଣେ ବଡ ମଣିଷ ଶୁଣିଲେ ବୁଝିପାରୁଥିବ ଯେ ସେ ''ସତରେ'' ଶବ୍ଦଟି ଉପରେ ଖୁବ୍ ଜୋର ଦେଉଛନ୍ତି ।

ପ୍ରଧାନ ଶିକ୍ଷକଙ୍କର କଥାର ଅସଲ ମାନେ ଥିଲା ବୋଧେ ଏହିଭଳି: ''କିଏ

କିଏ ଭାବନ୍ତି ଯେ କେତେ କଥାରେ ତୁମେ ଭଲପିଲା ନୁହଁ। ହେଲେ ତୁମର ଅସଲ ଗୁଣଟି ଭଲ । ଆଉ ସେ ଭଲ ଦିଗଟି ମତେ ଖୁବ୍ ଜଣା।'' ଏ କଥାଟି ତୋତ୍ତୋ-ଚ୍ୱନ୍ ଯାଇ ବୁଝିଲା ଅନେକ ଅନେକ ବର୍ଷ ପରେ। ତଥାପି ଛୁଆଟି ଭାବରେ ପ୍ରଧାନ ଶିକ୍ଷକଙ୍କର କଥା ଶୁଣି ଶୁଣି ତା' ନିଜ ଉପରେ ଟାଣ ଭରସା ଆସି ଯାଇଥିଲା ଯେ ସେ ଗୋଟିଏ ସୁନା ଝିଅ। ଯେ କେଉଁ ଅଭିଯାନରେ ଲାଗିଥିଲାବେଳେ ତାଙ୍କ କଥା ସବୁ ତା'ର ମନରେ ଖେଳି ଯାଉଥିଲା । ସିଏ କରିଥିବା କିଛି କାମ ବିଷୟରେ ଭାବିଲା ବେଳେ ସେ କେବେ କେବେ କହି ଉଠୁଥିଲା, ''ଓଃ କି ଭୁଲ ହୋଇଗଲା।''

ତୋତ୍ତୋ-ଚ୍ୱନ୍ ତୋମୋଏରେ ଥିବା ଯାଏଁ କୋବାୟାଶି ତାକୁ ସେହି କଥା ଶୁଣାଇ ଚ୍ୱାଲିଥିଲେ । ଏହି ଓଜନିଆ କଥା ପଦକ, ''ତୁ ସତରେ ଜଣେ ସୁନା ଝିଅ'' ବୋଧେ ସାରା ଜୀବନ ପାଇଁ ତାକୁ ବାଟ କଢ଼ାଇ ନେଲା।

## *ବର - କନିଆ*

ଆଜି ତୋତ୍ତୋ-ଚ୍ୱନ୍ ମନ ବଡ ଦୁଃଖ । ଏବେ ସେ ତୃତୀୟ ଶ୍ରେଣୀରେ। ସାଥି ତାଇ-ଚ୍ୱନ୍‌ଙ୍କୁ ସେ ଖୁବ୍ ଭଲ ପାଉଥାଏ । ତାଇ-ଚ୍ୱନ୍ ଖୁବ୍ ଚ୍ୱାଲାକ ଥିଲା; ପଦାର୍ଥ ବିଜ୍ଞାନରେ ସେ ବିଶେଷ ଭଲ କରୁଥିଲା । ସେ ଇଂରାଜୀ ମଧ୍ୟ ପଢୁଥିଲା - 'ଫକ୍ସ' ଶବ୍ଦଟି ସେ ତୋତ୍ତୋ-ଚ୍ୱନ୍‌କୁ ଶିଖାଇ ଥିଲା।

ଦିନେ ସେ କହିଥିଲା, ''ତୋତ୍ତୋ-ଚ୍ୱନ୍, ତୁ ଜାଣୁକି ଗଧିଆକୁ ଇଂରାଜୀରେ ଫକ୍ସ କୁହାଯାଏ ?'' ''ଫକ୍ସ !'', ନୂଆ ଶବ୍ଦଟି ସେ ଦିନ ତମାମ୍ କହି ଚ୍ୱାଲିଲା। ଧ୍ୱନିଟି ତାକୁ ଖୁବ୍ ସୁନ୍ଦର ଶୁଭୁଥିଲା ।

ତା'ପରଠୁ ସକାଳୁ ଶ୍ରେଣୀରେ ପଶିବା ପରେ ତୋତ୍ତୋ-ଚ୍ୱନ୍‌ର ପ୍ରଥମ କାମ ହେଲା ତାଇ-ଚ୍ୱନ୍‌ର ପେନସିଲ୍‌ଗୁଡ଼ିକୁ ଚାଗେଇ କରି ମୁନ କରିବା । ତା' ନିଜର ପେନ୍‌ସିଲ୍‌କୁ ପଛେ ସେ ଆବଡା ଖାବଡା କରି ଦାନ୍ତରେ ଛିଣ୍ଡାଇ ପକାଏ। ତଥାପି ସେଦିନ ତାଇ-ଚ୍ୱନ୍ ତାକୁ କଡା କଥା କହିଲା । ଦିପହର ଖାଇବା ବେଳର କଥା । ପ୍ରାର୍ଥନାଘର ପାଖ ମଇଳା ଖାତ କଡରେ ତୋତ୍ତୋ-ଚ୍ୱନ୍ ନସରପସର ହୋଇ ଧାଇଁଥାଏ।

''ତୋତ୍ତୋ-ଚ୍ୱନ୍ !'' ତାଇ-ଚ୍ୱନ୍ କଡା ସ୍ୱରରେ ଡାକିଲା; ତୋତ୍ତୋ-ଚ୍ୱନ୍ ଚମକି ପଡି ଛିଡା ହୋଇଗଲା । ଟିକିଏ ଅଟକି ଯାଇ ତାଇ-ଚ୍ୱନ୍ କହିଲା, ''ମୁଁ ବଡ ହେଲେ ତୋତେ ବାହା ହେବିନାହିଁ । ତୁ ଯେତେ ନେହୁରା ହେଲେ ବି ମୁଁ ଶୁଣିବିନାହିଁ ।'' ଏତକ କହି ଦେଇ ମୁହଁକୁ ପୋତି ସେ ଚ୍ୱାଲିଗଲା ।

ତୋତ୍ତୋ-ଗ୍ୱନ୍ ଥକା ମାରି ରହିଗଲା । ତାଇ-ଗ୍ୱନ୍‌ର ବଡ ମୁଣ୍ଡଟି ଲୁଚିଗଲା ଯାଏଁ ସେ ଗ୍ୱହିଁରହିଲା । ମଗଜ ଭରା ସେ ବଡ ମୁଣ୍ଡଟିକୁ ତୋତ୍ତୋ-ଗ୍ୱନ୍ ଖୁବ୍ ତାରିଫ୍ କରେ । ଦେହ ତୁଳନାରେ ତା'ର ମୁଣ୍ଡଟି ଏତେ ବଡ ଥିଲା ଯେ ଅନ୍ୟ ପିଲାମାନେ ତାକୁ ନାଁ ଦେଇଥିଲେ "ଅପ୍ରକୃତ ଭଗ୍ନାଂଶ ।"

ତୋତ୍ତୋ-ଗ୍ୱନ୍ ପକେଟରେ ହାତ ପୂରାଇ ଭାବିବାରେ ଲାଗିଲା । ତାଇ-ଗ୍ୱନ୍‌କୁ ଚିଡାଇବା ଭଳି ସେ କିଛି କରିଥିବାର ମନେ ପଡୁନଥାଏ । ହତାଶ ହୋଇ ସେ ସାଥି ମିୟୋ-ଗ୍ୱନ୍‌କୁ ପଗ୍ୱରିଲା । ସବୁ ଶୁଣିଲା ପରେ ମିୟୋ-ଗ୍ୱନ୍ ଜଣେ ବଡ ମଣିଷ ଭଳି କହିଲା, "ସକାଳ କଥା ତୋର ମନେନାହିଁ ? ତୁ ପରା କୁସ୍ତି ଖେଳରେ ତାଇ-ଗ୍ୱନ୍‌କୁ ଆଜି ପକାଇ ଦେଲୁ । ଅବଶ୍ୟ ତା' ମୁଣ୍ଡଟା ଏତେ ବଡ ଯେ ସେ ନିଶ୍ଚୟ ପଡିଥା'ନ୍ତା । ତଥାପି, ସେ ତୋ' ଉପରେ ରାଗିବାଟା ସ୍ୱାଭାବିକ ।"

ତୋତ୍ତୋ-ଗ୍ୱନ୍ ଖୁବ୍ ପସ୍ତେଇହେଲା । ହଁ, ସତ କଥା ତ ! ତାଇ-ଗ୍ୱନ୍‌କୁ ସେ ଏତେ ଭଲପାଏ ଯେ ସବୁଦିନ ତା'ର ପେନ୍‌ସିଲ୍ କାଟିଦିଏ । ତଥାପି ଆଜି କାହିଁକି ସେ କୁସ୍ତିରେ ତାକୁ ହରାଇ ଦେଲା ? ଏବେ ତ ନେଡି ଗୁଡ କହୁଣୀକି ବୋହି ଗଲାଣି, ଆଉ ତାଙ୍କ ବାହାଘର ହୋଇ ପାରିବନାହିଁ ।

"ନହେଉ, ତେବେ ବି ମୁଁ ତା' ପେନ୍‌ସିଲ୍ ମୁନ କରିବା ବନ୍ଦ କରିବିନାହିଁ", ତୋତ୍ତୋ-ଗ୍ୱନ୍ ଠିକ୍ କଲା, "ଯେତେହେଲେ ବି ମୁଁ ତାକୁ ଭଲପାଏ ।"



# ମଇଳା କୋତରା ସ୍କୁଲ

ଛୋଟ ସ୍କୁଲ ପିଲାଙ୍କ ଭିତରେ ଗୋଟିଏ ଢଗ ବେଶ୍ ଚଳୁଥାଏ । ପୁରୁଣା ସ୍କୁଲରେ ତୋତ୍ତୋ-ଗ୍ୱନ୍ ଓ ସାଥିମାନେ ଏହାକୁ ବେଶୀ ଗାଉଥିଲେ । ସ୍କୁଲ ଫାଟକରୁ ବାହାରିଲାବେଳେ ସେମାନେ ପଛକୁ ଗ୍ରହିଁ ଗାଇବେ:

"ଆକାମାତ୍ସୁ ସ୍କୁଲଟି ଦଦରା ମଇଳା ସ୍କୁଲ,
ଭିତରୁ ଦେଖିଲେ ଏହା ଚମତ୍କାର ସ୍କୁଲ ।"

ଅନ୍ୟ ସ୍କୁଲର ପିଲାମାନେ ଏହାକୁ ଓଲଟାଇ ଗାଇବେ:

"ଆକାମାତ୍ସୁ ସ୍କୁଲଟି ଚମତ୍କାର ସ୍କୁଲ,
ଭିତରୁ ଦେଖିଲେ ଏହା ଦଦରା ମଇଳା ସ୍କୁଲ ।"

ଏହାର ପ୍ରଥମ ଧାଡ଼ିଟି ସ୍କୁଲ ଘରର ଅବସ୍ଥାକୁ ବୁଝାଉଥିଲା । ତେଣୁ ତା' ଉପରେ କେହି ବେଶୀ ଜୋର ଦେଉ ନଥିଲେ । କିନ୍ତୁ ନିଜ ସ୍କୁଲର ଭିତର ଯେ ଖରାପ ସେକଥା କେହି ସହିବାକୁ ତିଆର ନଥିଲେ । ଅନ୍ତତଃ ପାଞ୍ଚ-ଛଅ ଜଣ ପିଲା ଏକାଠି ହୋଇ ଏ ଢଗଟିକୁ ଗାଉଥିଲେ ।

ତୋମୋଏରେ ଶେଷ ପିରିଅଡ୍‌ଟି ଖେଳ ପାଇଁ ଥାଏ । ସେ ସମୟରେ ପିଲାମାନେ ଇଚ୍ଛା ଅନୁସାରେ ଯାହା ବି କରିପାରନ୍ତି । ପ୍ରଧାନ ଶିକ୍ଷକ ପିଲାଙ୍କର ଏଭଳି ଖୋଲା ସମୟକୁ ବେଶ୍ ଗୁରୁତ୍ୱ ଦେଉଥିଲେ । ତେଣୁ ପାଠପଢ଼ା ବାହାରେ ଏହି ପିରିଅଡ୍‌ଟିକୁ ସେ ଅଧିକ ଲମ୍ବା ରଖିଥିଲେ । ଦିନେ ପିଲାମାନେ ତାଙ୍କ ଖେଳରେ ଲାଗିଥା'ନ୍ତି । କିଏ ବଲ୍ ଖେଳୁଛି, କିଏ ବାଲି ଗଦାରେ ଖେଳୁଛି, କିଏ ଗଛ ଚଢୁଛି, କିଏ ଫୁଲ ଗଛରେ ପାଣି ଦେଉଛି, କିଏ ବା ବସି କରି ଗପସପ ହେଉଛି । ତାଇ-ଗ୍ୱନ୍ ଭଳି କେତେ ଜଣ ବିଜ୍ଞାନ ଶ୍ରେଣୀରେ କିଛି ପରଖରେ ଲାଗିଥା'ନ୍ତି । କିଏ କିଏ ଲାଇବ୍ରେରୀରେ ପଢୁଥା'ନ୍ତି । ଜୀବଜନ୍ତୁ-ପ୍ରିୟ ଆମାଦେରା ଗୋଟିଏ ବୁଲା ବିଲେଇ ସାଙ୍ଗରେ ଲାଗିଥାଏ । ସମସ୍ତେ ନିଜ ଇଚ୍ଛାର କାମରେ ମଜ୍ଜି ରହିଥା'ନ୍ତି ।

ହଠାତ୍ ସ୍କୁଲ୍ ବାହାରେ କିଏ ବଡ ପାଟିରେ ଗାଇବାକୁ ଲାଗିଲେ:

"ତୋମୋଏ ସ୍କୁଲ ଗୋଟେ ଦଦରା ମଇଳା ସ୍କୁଲ୍,
ଭିତରୁ ଦେଖିଲେ ବି ତାହା ଦଦରା ମଇଳା ସ୍କୁଲ ।"

ତୋତ୍ତୋ-ଗ୍ୱନ୍ ଫାଟକ ପାଖରେ ଥିଲା । ଅବଶ୍ୟ ଏହା ସତ ଫାଟକ ନଥିଲା। ପତ୍ର କଅଁଳୁଥିବା ଦୁଇଟି ଜିଅନ୍ତା ଗଛ ତା'ର ଖମ୍ବର କାମ କରୁଥିଲେ । ତୋତ୍ତୋ-ଗ୍ୱନ୍ ଢଗଟି ପରିଷ୍କାର ଭାବେ ଶୁଣିପାରିଲା । "କେଡେ ଖରାପ କଥା" ସେ ଭାବିଲା, "ଭିତରେ ଓ ବାହାରେ ସବୁଆଡୁ ଆମ ସ୍କୁଲ ଖରାପ।" ଅନ୍ୟମାନେ ବି ଫାଟକ ପାଖକୁ ଦଉଡି ଆସିଲେ । ବାହାରୁ ପିଲା ଦଳକ ଆଉ ଥରେ "କୋତରା ଦଦରା ସ୍କୁଲ" କହି ଦେଇ ଖତେଇ ହୋଇ ଦୌଡିଲେ ।

ତୋତ୍ତୋ-ଗ୍ୱନ୍ ଖୁବ୍ ରାଗି ଯାଇଥିଲା । ତେଣୁ ଏକା ଏକା ସେ ପୁଅ ଦଳକ

ପଛରେ ଗୋଡ଼ାଇଲା । କିନ୍ତୁ ସେମାନେ ଖୁବ୍ ଜୋରରେ ଦୌଡ଼ୁଥିଲେ ଓ ଆଖି ପିଛୁଳାକେ କୁଆଡେ ଲୁଚିଗଲେ । ତୋତୋ-ଚ୍ୱାନ୍ ମନ ମାରି ଫେରିଲା । ବାଟରେ ସେ ଗୁଣୁ ଗୁଣୁ ହୋଇ ଗାଉଥାଏ:

"ତୋମୋଏ ସ୍କୁଲ ଏକ ଚମତ୍କାର ସ୍କୁଲ୍" । ଟିକିଏ ପରେ ସେ ଆଉ ଧାଡ଼ିଏ ଯୋଡ଼ି ଦେଲା: "ବାହାରୁ ଭିତରୁ ସିଏ ଚମତ୍କାର ସ୍କୁଲ ।"

ଢଗଟି ତା' ମନକୁ ହାଲୁକା କରି ଦେଲା । ଫେରିଆସି ସେ ବାଡ଼ ଫାଙ୍କରେ ପାଟି କରି ଗାଇଲା:

"ତୋମୋଏ ସ୍କୁଲ ଏକ ଚମତ୍କାର ସ୍କୁଲ,
ବାହାରୁ ଭିତରୁ ସିଏ ଚମତ୍କାର ସ୍କୁଲ !"

ପଢ଼ିଆରେ ଥିବା ପିଲାମାନେ ଆଗ ଠଉରାଇ ପାରିଲେନାହିଁ କିଏ ଗାଉଛି । ଯେତେବେଳେ ଜାଣିଲେ ଯେ ଏହା ତୋତୋ-ଚ୍ୱାନ୍‌ର କାମ ସମସ୍ତେ ବାହାରକୁ ଆସି ତା' ସାଙ୍ଗରେ ଗାଇବାକୁ ଲାଗିଲେ । ଶେଷରେ ସବୁ ପିଲା ହାତ ଧରାଧରି ହୋଇ ସ୍କୁଲ ଚ୍ୱରିପଟ ରାସ୍ତାରେ ଗାଇ ବୁଲିଲେ । ତାଙ୍କର ସ୍ୱର ମିଳିବା ଅପେକ୍ଷା ବେଶୀ ମିଳୁଥିଲା ତାଙ୍କର ମନ, ଯଦିଓ ଏକଥା ସେମାନେ ସେତେବେଳେ ବୋଧେ ବୁଝି ପାରୁନଥିଲେ । ଯେତେ ବେଶୀ ସେମାନେ ଗାଇ ଚ୍ୱଲିଲେ, ତାଙ୍କର ମନ ପ୍ରାଣ ସେତେ ଅଧିକ ମଜ୍ଜିଗଲା । ବାହାରେ ଥାଇ ପିଲାମାନେ ଜାଣି ପାରୁନଥିଲେ ତାଙ୍କର ଏହି ଧ୍ୱନି ପ୍ରଧାନ ଶିକ୍ଷକଙ୍କର ଅଫିସ୍‌ରେ କେତେ ଆନନ୍ଦ ଖେଳାଉ ଥିଲା ।

ଯେ କୌଣସି ସ୍କୁଲ୍ ଚଳାଇବା ବେଶ୍ କଷ୍ଟକର କାମ । ଯିଏ ପିଲାଙ୍କ ବିଷୟରେ ଗଭୀର ଭାବରେ ଚିନ୍ତା କରେ ତା'ପାଇଁ ସ୍କୁଲ କାମ ଆହୁରି କଷ୍ଟକର କଥା । ତୋମୋଏ ଭଳି ସ୍କୁଲରେ, ଯେଉଁଠି ସବୁ କିଛି ଅସାଧାରଣ ଥିଲା, ଏହି ଦାୟିତ୍ୱର ସୀମା ନାହିଁ କହିଲେ ଚଳେ । ତା'ଉପରେ ପୁଣି ବାହାରର ସମାଲୋଚନା । ସାଧାରଣ ସ୍କୁଲ ଓ ପାଠପଢ଼ାରେ ଅଭ୍ୟସ୍ତ ଲୋକମାନେ ତୋମୋଏକୁ ଠିକ ଭାବରେ ଗ୍ରହଣ କରୁନଥିଲେ ।

ଏହି ପରିସ୍ଥିତିରେ ପିଲାଙ୍କର ସେହି ଗୀତଟି ପ୍ରଧାନ ଶିକ୍ଷକଙ୍କ ପାଇଁ ଗୋଟିଏ ଅତି ସୁନ୍ଦର ଉପହାର ଥିଲା ।

ତୋମୋଏ ସ୍କୁଲ ଏକ ଚମତ୍କାର ସ୍କୁଲ
ବାହାରୁ ଭିତରୁ ସିଏ ଚମତ୍କାର ସ୍କୁଲ !

ସେ ଦିନର ଛୁଟି ଘଣ୍ଟା ଅନେକ ଡେରିରେ ବାଜିଥିଲା ।

## ରିବନ ଫିତା

ଦିନେ ଖାଇବା ଛୁଟିରେ ତୋତ୍ତୋ-ଗ୍ୱିନ୍ ଦଉଡ଼ି ଡେଉଁଥିବାବେଳେ ପ୍ରଧାନ ଶିକ୍ଷକଙ୍କୁ ଭେଟିଲା । ପୂରା ଖାଇବା ସମୟଟା ତ ପ୍ରଧାନ ଶିକ୍ଷକ ତାଙ୍କ ସହିତ ଥିଲେ, ତେଣୁ 'ଭେଟିଲା' କହିଲେ ହୁଏତ ଠିକ ଶୁଣାଯାଇ ନପାରେ । ଏବେ ପ୍ରଧାନ ଶିକ୍ଷକ ଆରପଟୁ ଆସୁଥିଲେ, ଦୁହେଁ ସାମନାସାମନି ହୋଇଗଲେ ।

''ଆରେ ତୁମେ ଏଇଠି,'' ପ୍ରଧାନ ଶିକ୍ଷକ କହିଲେ, ''ମୁଁ ତୁମକୁ କିଛି ପଗ୍ୱରିବାକୁ ଖୋଜୁଥିଲି ।''

ପ୍ରଧାନ ଶିକ୍ଷକଙ୍କୁ ସେ ଯେ କିଛି ଖବର ଦେଇପାରିବ ସେ କଥାରେ ତୋତ୍ତୋ-ଗ୍ୱିନ୍ ଖୁସି ହୋଇଗଲା । ପଗ୍ୱରିଲା, ''କ'ଣ ପଗ୍ୱରିବେ ?''

ତା' ମୁଣ୍ଡରେ ବନ୍ଧା ହୋଇଥିବା ରିବନକୁ ଦେଖି ପ୍ରଧାନ ଶିକ୍ଷକ ପଗ୍ୱରିଲେ, ''ସେଇଟା କେଉଁଠୁ ଆଣିଲ ?''

ତୋତ୍ତୋ-ଗ୍ୱିନ୍‌ର ମୁହଁ ଦେଖି ଲାଗିଲା ଯେ ବୋଧେ ଆଉ କୌଣସି ପ୍ରଶ୍ନ ତାକୁ ଅଧିକ ଖୁସି କରି ନଥା'ନ୍ତା । ଗଲା ଦୁଇଦିନ ଧରି ସେ ଏଇ ଫୁଲଟିକୁ ପିନ୍ଧୁଥିଲା । ସେ ନିଜେ ଏହାକୁ ଖୋଜି ପାଇଥିଲା । ପ୍ରଧାନ ଶିକ୍ଷକଙ୍କୁ ଭଲ କରି ରିବନଟିକୁ ଦେଖାଇବା ପାଇଁ ସେ ପାଖକୁ ଲାଗି ଆସିଲା ଓ ଟିକିଏ ଫୁଲିଯାଇ କହିଲା, ''ଏ ରିବନଟା ମୋ ମାଉସୀଙ୍କର ସ୍କୁଲ ପୋଷାକରେ ଲାଗିଥିଲା । ଜାମାପଟା ସେ ଥାକରେ ରଖୁଥିଲାବେଳେ ମୁଁ ଏହାକୁ ଦେଖିଲି । ମତେ ସେ ଦେଇଦେଲେ ଓ କହିଲେ ଯେ ''ମୁଁ ସବୁ କଥା ଭଲ ଲକ୍ଷ୍ୟ କରେ ।'' ପ୍ରଧାନ ଶିକ୍ଷକ କ'ଣ ଭାବୁଥିଲା ଭଳି କହିଲେ, ''ଆଚ୍ଛା ।''

ରିବନଟି ତୋତ୍ତୋ-ଗ୍ୱିନ୍ ମନକୁ ଖୁବ୍ ପାଉଥିଲା । ପ୍ରଧାନ ଶିକ୍ଷକଙ୍କୁ ସେ କହି ଗ୍ୱଲିଲା କିଭଳି ସେ ମାଉସୀଙ୍କ ଘରକୁ ବୁଲି ଯାଇଥିଲା । ଭାଗ୍ୟକୁ ସେଦିନ ମାଉସୀ ତାଙ୍କ ଲୁଗା ସବୁ ଖରା ଦେଉଥା'ନ୍ତି । ସେଥିରେ ତାଙ୍କର ପିଲାଦିନର ଗୋଟିଏ ଜାମା ଥିଲା । ବାଇଗଣୀ ରଙ୍ଗର ସେ ପୁରୁଣା କାଳିଆ ଲମ୍ବା କୁଞ୍ଚପକା ଜାମାରେ ଗୋଟିଏ ସୁନ୍ଦର ଜିନିଷ ତୋତ୍ତୋ-ଗ୍ୱିନ୍‌ର ଆଖିରେ ପଡ଼ିଲା ।

''ସେଇଟା କଅଣ ?'' ତୋତ୍ତୋ-ଗ୍ୱିନ୍ ପ୍ରଶ୍ନରେ ମାଉସୀ ଅଟକି ଗଲେ । ତୋତ୍ତୋ-ଗ୍ୱିନ୍‌ର ଆଖିରେ ପଡ଼ିଥିବା ସୁନ୍ଦର ଜିନିଷଟି ରିବନର ଗୋଟିଏ ଫୁଲ ଥିଲା । ମାଉସୀଙ୍କର ପୁରୁଣା ଜାମାର ପଛ କମରପଟିରେ ଏହା ଲାଗିଥିଲା ।

''ଆମର ପିଠିପଟ ବି ସୁନ୍ଦର ଦିଶିବ ବୋଲି ଏଭଳି କିଛି ଲଗା ଯାଉଥିଲା'', ମାଉସୀ କହିଲେ, ''ଆମ ପିଲାଦିନେ ସମସ୍ତଙ୍କ ଜାମା ପଛରେ ଖଣ୍ଡେ ଝାଲର ବା ରିବନ ଫୁଲ ଲାଗୁଥିଲା ।''

ମାଉସୀ ଦେଖିଲେ ଯେ ତୋତ୍ତୋ-ଗ୍ୱିନ୍ ତାଙ୍କ କଥା ଶୁଣିଲାବେଳେ ବଡ଼ ଲୋଭିଲା ଆଖିରେ ଫୁଲଟିକୁ ଦେଖୁଛି ଓ ହାତରେ ଆଉଁସୁଛି । ସେ କହିଲେ, ''ଏଇଟି ମୁଁ ତତେ ଦେଇଦେବି । ଏହାକୁ ଆଉ କେବେ ତ ମୁଁ ପିନ୍ଧିବିନାହିଁ ।''

ସୁତା କାଟି ମାଉସୀ ଫୁଲଟିକୁ ଜାମାରୁ କାଢ଼ିଦେଲେ ଓ ତୋତୋ-ଗ୍ୱନକୁ ଦେଇଦେଲେ । ଏହି ଭାବରେ ତୋତୋ-ଗ୍ୱନ୍ ଫୁଲଟିକୁ ପାଇଲା । ତାହା ସତରେ ଅତି ସୁନ୍ଦର ରିବନ ଖଣ୍ଡେ ଥିଲା । ସେ ଚଉଡ଼ା ରିବନଟି ଅତି ଭଲ ରେଶମ ସୁତାରେ ତିଆରି ହୋଇଥିଲା । ସେଥିରେ ଗୋଲାପ ଫୁଲ ଓ ଆଉ କେତେ କ'ଣ ବୁଣା ହୋଇଥିଲା । ମାଉସୀ କହୁଥିଲେ ଯେ ଏହା କୁଆଡେ ବିଦେଶରୁ ଆସିଥିଲା । ରିବନର ସେ ଫୁଲଟି ପ୍ରାୟ ତୋତୋ-ଗ୍ୱନ୍‌ର ମୁଣ୍ଡ ଆକାରର ହୋଇଥିଲା ।

କଥା କହିଲାବେଳେ ମଝିରେ ମଝିରେ ତୋତୋ-ଗ୍ୱନ୍ ତା' ମୁଣ୍ଡକୁ ହଲାଇ ଦେଉଥାଏ, ପ୍ରଧାନ ଶିକ୍ଷକ ଯେପରି ସେ ରିବନର ଖସ ଖସ ଶବ୍ଦ ଶୁଣି ପାରିବେ । ତା'ର କଥା ଶୁଣି ପ୍ରଧାନ ଶିକ୍ଷକ ଟିକିଏ ଉଦାସ ହୋଇଗଲେ ।

"ଓହୋ, କଥା ତାହେଲେ ସେଇଆ - ଏଇଟା ବିଦେଶରୁ ଆସିଛି," ପ୍ରଧାନ ଶିକ୍ଷକ କହିଲେ । "ମିୟୋ-ଗ୍ୱନ୍ କାଲିଠାରୁ ଏଭଳି ରିବନଟିଏ ମାଗୁଛି । ମୁଁ ଜିଉଗାଓ୍ୱକାର ସବୁ ରିବନ ଦୋକାନ ବୁଲି ଆସିଲିଣି । କିନ୍ତୁ ଏଭଳି କିଛି ପାଉନି ।"

ପ୍ରଧାନ ଶିକ୍ଷକ ଅପେକ୍ଷା ଝିଅ ପାଇଁ ହଇରାଣରେ ପଡିଥିବା ଜଣେ ବାପାଙ୍କ ଭଳି ସେ ଦେଖା ଯାଉଥିଲେ । ସେ କହିଲେ,

"ତୋତୋ-ଗ୍ୱନ୍ ତୁମେ ସ୍କୁଲରେ ସେ ରିବନଟି ନପିନ୍ଧିଲେ ମୁଁ ବହୁତ କୃତଜ୍ଞ ହେବି । ସେ ଭଳି ରିବନ ଖଣ୍ଡେ ପାଇଁ ମିୟୋ-ଗ୍ୱନ ବହୁତ ଅଝଟ ହେଉଛି । ତୁମର ଅତି ମନଦୁଃଖ ହେବନାହିଁ ତ ?"

ତୋତୋ-ଗ୍ୱନ୍ ତା'ର ହାତ ଦୁଇଟି ଛନ୍ଦି ଛିଡା ହେଲା । ମନେ ମନେ ଭାବି ନେଇ କହିଲା, "ଠିକ ଅଛି । ମୁଁ ଏହାକୁ ଏଠି ଆଉ ପିନ୍ଧିବିନି ।"

"ତୁମକୁ ବହୁତ ବହୁତ ଧନ୍ୟବାଦ", ପ୍ରଧାନ ଶିକ୍ଷକ କହିଲେ ।

ତୋତୋ-ଗ୍ୱନ୍‌ର ବେଶ ମନ ଦୁଃଖ ହୋଇଥିଲା । କିନ୍ତୁ ପ୍ରଧାନ ଶିକ୍ଷକ ଅସୁବିଧାରେ ପଡୁଥିବାରୁ ସେ ରାଜି ହୋଇଥିଲା । ତା'ଛଡା ଜଣେ ବୟସ୍କ ଲୋକ ଯେ ସବୁ ରିବନ ଦୋକାନ ଖୋଜିବୁଲିବ ତାହା ବଡ ଦୁଃଖର କଥା । ସେ ପୁଣି ତା'ର ପ୍ରଧାନ ଶିକ୍ଷକ । ସତରେ ଏହା ହିଁ ତୋମୋଏର ଧାରା ଥିଲା । କିଛି ଚିନ୍ତା ନ କରି ସମସ୍ତେ ସମସ୍ତଙ୍କର ଦୁଃଖ ବୁଝୁଥିଲେ ଓ ସାନ ବଡ ନଧରି ସାହାଯ୍ୟ କରୁଥିଲେ । ଏହା ସେଠାରେ ସ୍ୱାଭାବିକ ଭାବରେ ଘଟି ଯାଉଥିଲା ।

ତା'ପର ଦିନ ତୋତୋ-ଗ୍ୱନ୍ ସ୍କୁଲ ଗଲା ପରେ ମା' ତା'ର ଜିନିଷ ସଜାଡ଼ି ରଖିବାକୁ ଆସିଲେ । ସେ ଦେଖିଲେ ଯେ ରିବନର ଫୁଲଟି ତୋତୋ-ଗ୍ୱନ୍‌ର ପ୍ରିୟ କଣ୍ଢେଇ ଭାଲୁର ବେକରେ ଝୁଲୁଛି । ମା' ବୁଝି ପାରିଲେନାହିଁ କାହିଁକି ତୋତୋ-ଗ୍ୱନ୍ ତାକୁ ନପିନ୍ଧି ଛାଡି ଯାଇଛି । କାରଣ ରିବନଟି ପାଇଁ ସେ ବାଇ ହେଉଥିଲା । ତାଙ୍କୁ ଲାଗୁଥିଲା ଯେ ଧୂସର କଣ୍ଢେଇଟି ଏ ଅପୂର୍ବ ବେଶରେ ଟିକିଏ ଲାଜେଇ ଯାଇଛି ।

## ହାସପାତାଳ ବୁଲା

ଦିନେ ତୋତ୍ତୋ-ଚ୍ୱାନ୍ ଆଉ ତିରିଶ ଜଣ ଛୋଟ ପିଲାଙ୍କ ସହ ହାସପାତାଳ ବୁଲିଗଲା । ସେ ପ୍ରଥମ ଥର ପାଇଁ ହାସପାତାଳ ଯାଉଥିଲା । ବାକି ପିଲାମାନେ ଅନ୍ୟସ୍କୁଲରୁ ଆସିଥିଲେ । ତୋତ୍ତୋ-ଚ୍ୱାନ୍ ସେମାନଙ୍କୁ ଚିହ୍ନି ନଥିଲା । ଏହି କାର୍ଯ୍ୟକ୍ରମରେ ପ୍ରତି ପ୍ରାଥମିକ ସ୍କୁଲରୁ ଦୁଇ ତିନି ଜଣ ପିଲା ମିଶି ଆହତ ସିପାହୀମାନଙ୍କୁ ଦେଖିବାକୁ ଯାଉଥିଲେ । ଛୋଟିଆ ସ୍କୁଲଟିଏ ହୋଇଥିବାରୁ ତୋମୋଏରୁ କେବଳ ତୋତ୍ତୋ-ଚ୍ୱାନ୍ ଯାଇଥିଲା ।

ଅନ୍ୟ କେଉଁ ସ୍କୁଲର ଜଣେ ଶିକ୍ଷୟିତ୍ରୀ ସେମାନଙ୍କ ସାଙ୍ଗରେ ଯାଇଥିଲେ । ସେ ବେଶ ପତଳା ଥିଲେ ଓ ଚଷମା ପିନ୍ଧିଥିଲେ । ପିଲାମାନେ ଭିତରକୁ ଯାଇ ଆହତ ଲୋକମାନଙ୍କୁ ଦେଖିଲେ । କିଛି ଆହତ ଲୋକ ଖଟିଆରେ ଶୋଇଥିଲେ ଓ ଆଉ କିଛି ଚଲାବୁଲା କରୁଥିଲେ । ସେ ସଭିଏଁ ଧଳା ପାଇଜାମା କୁର୍ତ୍ତା ପିନ୍ଧିଥିଲେ । ଆହତମାନଙ୍କ ଅବସ୍ଥା ବିଷୟରେ ତୋତ୍ତୋ-ଚ୍ୱାନ ମନରେ ବଡ ଶଙ୍କାଥିଲା । କିନ୍ତୁ ସେମାନେ ମୋଟାମୋଟି ଖୁସିଥିବାର ଦେଖି ସେ ଆଶ୍ୱସ୍ତ ହେଲା । ଅବଶ୍ୟ କେତେ ଜଣଙ୍କ ମୁଣ୍ଡରେ ପଟି ବନ୍ଧା ହୋଇଥିଲା ।

ଶିକ୍ଷୟିତ୍ରୀ ଘର ମଝିରେ ପିଲାମାନଙ୍କୁ ଏକାଠି କଲେ ଓ ସୈନିକମାନଙ୍କୁ କହିଲେ, "ଆଜି ଦିନର ସ୍ମୃତିରେ ଆମେ କିଛି ବିଶେଷ ଗୀତ ଗାଇବୁ ।"

ଶିକ୍ଷୟିତ୍ରୀ ହାତ ହଲାଇ ତାଳ ଦେବାକୁ ଆରମ୍ଭ କଲେ ଓ ପିଲାମାନେ ସୁର ମିଳାଇ ଗାଇଲେ । ଅଲଗା ଅଲଗା ସ୍କୁଲରୁ ଆସିଥିଲେ ବି ସବୁ ପିଲା ଖୁବ ଉତ୍ସାହରେ ମିଶିଗଲେ ଓ ସୁନ୍ଦର ଭାବରେ ଗାଇଲେ । ଗୀତ ସରିଲାରୁ ସୈନିକମାନେ ଖୁସିରେ ତାଳି ବଜାଇଲେ । ସେଭଳି ଗୀତ କିନ୍ତୁ ତୋମୋଏରେ ଶିଖାଯାଉ ନଥିଲା । ତେଣୁ ତୋତ୍ତୋ-ଚ୍ୱାନ୍ କିଛି ବି ଗାଇପାରିଲା ନାହିଁ ।  ଜଣେ ସୈନିକର ଖଟିଆ ଧାରରେ ବସି ସେ କେବଳ ଶୁଣୁଥାଏ । ଶେଷରେ ସୈନିକ ଜଣକ ତା'ର ମୁଣ୍ଡ ଥାପୁଡାଇ କହିଲେ, "ତୁମେ ତ ଗାଇଲ ନାହିଁ ।"

ତୋତ୍ତୋ-ଚ୍ୱାନ୍ ନିଜକୁ ଟିକିଏ ଦୋଷୀ ମନେକଲା । ସେ ସୈନିକମାନଙ୍କୁ ଦେଖିବାକୁ ଆସିଥିଲା, କିନ୍ତୁ କିଛି ବି ଗାଇପାରିଲା ନାହିଁ । ସେ ଛିଡା ହୋଇ ଦମ୍ଭର ସହ କହିଲା, "ଆଚ୍ଛା, ଏଥର ମୁଁ ଜାଣିଥିବା ଗୀତଟିଏ ଗାଇବି ।"

ଶିକ୍ଷୟିତ୍ରୀ ଟିକିଏ ହତବତେଇ ଗଲେ । କାରଣ କିଛି ଅଲଗା ଗୀତ ଗାଇବା ଯୋଜନା ଭିତରେ ନଥିଲା । ସେ ପଗ୍ଚରିଲେ, "ତମେ କ'ଣ ଗାଇବ ?" କିନ୍ତୁ ତୋତ୍ତୋ-ଚ୍ୱାନ୍ ଦମ୍ ନେଇ ଗାଇବାକୁ ଆରମ୍ଭ କରିଥାଏ । ତେଣୁ ସେ ଚୁପ ରହିଲେ ।

ତୋତ୍ତୋ-ଚ୍ୱାନ୍ ତୋମୋଏର ପ୍ରତିନିଧି ଥିଲା । ତେଣୁ ସେ ତୋମୋଏରେ ସବୁଠାରୁ ଜଣାଶୁଣା ଗୀତଟି ଗାଇବାକୁ ଆରମ୍ଭ କଲା ।

"ଚ୍ୱେବା ଚ୍ୱେବା ଚ୍ୱେବା ଭଲରେ ଚ୍ୱେବା
ଯାହା ବି ଖାଉଛ ତୁମେ...."

ତାକୁ ଶୁଣି କିଛିପିଲା ହସିଉଠିଲେ । ଆଉ କିଏ ପଚରାପଚରି ହେଲେ, "ଏଇଟା କେଉଁ ଗୀତ ?" ଶିକ୍ଷୟିତ୍ରୀ ତାଳ ଦେବାକୁ ଆରମ୍ଭକଲେ, କିନ୍ତୁ ମେଳ ନଖାଇବାରୁ ସେ ଅଟକିଗଲେ । ତୋତ୍ତୋ-ଚ୍ୱାନ୍‌କୁ ବି ଅଖାଡୁଆ ଲାଗୁଥାଏ । ତଥାପି ସେ ଗୀତଟି ପୂରାକଲା ।

ତୋତ୍ତୋ-ଚ୍ୱାନ୍ ତା'ର ଗୀତ ସାରି ମୁଣ୍ଡ ନୁଆଁଇଲା । ମୁଣ୍ଡ ଉଠାଇଲା ବେଳକୁ ଦେଖିଲା ଯେ ପାଖ ସୈନିକ ଜଣକ କାନ୍ଦୁଛନ୍ତି । ତାଙ୍କ ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ତୋତ୍ତୋ-ଚ୍ୱାନ୍ ଭାବିଲା ଯେ କିଛି ଭୁଲ କରି ପକାଇଛି । ତା'ର ବାପାଙ୍କଠାରୁ କିଛି ବୟସ୍କ ଜଣାପଡୁଥିବା ସୈନିକ ଜଣକ ପୁଣି ତା'ର ମୁଣ୍ଡ ଥାପୁଡାଇଲେ, ଆଉ କହିଲେ, "ତୁମକୁ ବହୁତ ଧନ୍ୟବାଦ ।"

ସେ ତୋତ୍ତୋ-ଚ୍ୱାନ୍ ମୁଣ୍ଡକୁ ଥାପୁଡାଉଥା'ନ୍ତି ଆଉ କାନ୍ଦୁଥା'ନ୍ତି । ଶିକ୍ଷୟିତ୍ରୀ ତାଙ୍କୁ ଖୁସି କଲା ଭଳି କହିଲେ, "ପିଲାମାନେ ଆପଣଙ୍କ ପାଇଁ କିଛି ଲେଖିକରି ଆଣିଛନ୍ତି । ଏବେ ପଢ଼ି ଶୁଣାଇବେ ।"

ଜଣକ ପରେ ଜଣେ ପଢ଼ି ଚାଲିଲେ । ତୋତ୍ତୋ-ଚ୍ୱାନ୍ ତା' ସୈନିକଙ୍କୁ ଚାହିଁଲା । ତାଙ୍କ ଆଖି ଓ ମୁହଁ ନାଲି ଦିଶୁଥାଏ । ତଥାପି ସେ ହସିଲେ । ତୋତ୍ତୋ-ଚ୍ୱାନ୍ ବି ହସିଦେଲା । ଆଉ ଭାବିଲା, "ମୁଁ ଖୁସି ଯେ ସେ ହସିଲେ ।"

ସୈନିକ ଜଣକ କାହିଁକି ଯେ କାନ୍ଦୁଥିଲେ କେବଳ ସେ ହିଁ ଜାଣିଥିବେ । ହୁଏତ ତାଙ୍କର ବି ତୋତ୍ତୋ-ଚ୍ୱାନ୍ ଭଳି କୁନି ଝିଅଟିଏ ଥିବ ବା ତୋତ୍ତୋ-ଚ୍ୱାନ୍‌ର ସରଳ ଗାଇବା ଧାରା ତାଙ୍କ ମନକୁ ଛୁଇଁଥିବ । ଯୁଦ୍ଧକ୍ଷେତ୍ରର ଅଭିଜ୍ଞତାରୁ ସେ ଜାଣୁଥିଲେ ଯେ ଅତି ଶୀଘ୍ର ଖାଦ୍ୟର ଅଭାବ ପଡିବ; ହେଲେ କୁନି ଝିଅଟି ସେ ସବୁ ବିଷୟରେ କିଛି ନଜାଣି ଖୁସିରେ ଗାଇବା କଥା ଗାଇ ଚାଲିଛି । ଚୋବାଇବା ପାଇଁ ପିଲା ପାଟିରେ କିଛି ନଥିବ ସେ ଚିନ୍ତା ହୁଏତ ତାଙ୍କ ମନରେ ବିଷାଦ ଭରି ଦେଲା; କିମ୍ବା ହୁଏତ ସୈନିକ ଜଣକ ଜାଣି ପାରୁଥିଲେ ଯେ ଅତି ଶୀଘ୍ର ଏହି ପିଲାମାନଙ୍କ ଉପରକୁ ଭୟଙ୍କର ବିପଦ ସବୁ ମାଡି ଆସିବ ।

ନିଜ ନିଜର ଲେଖାଗୁଡିକୁ ପଢ଼ି ଚାଲିଥିବା ପିଲାମାନେ ହୁଏତ ସେବେ ବୁଝୁନଥିଲେ, କିନ୍ତୁ ପ୍ରଶାନ୍ତ ମହାସାଗରରେ ଯୁଦ୍ଧ ଆରମ୍ଭ ହୋଇ ସାରିଥାଏ ।

## ସ୍ୱାସ୍ଥ୍ୟ ଛେଲି

ତୋତ୍ତୋ-ଗ୍ୱନ୍ ତା' ବେକରେ ଝୁଲୁଥିବା ଟିକେଟ ଦେଖାଇ ବାହରକୁ ଆସିଲା । ଏବେ ସେ ଜିଉଗାଓକା ଷ୍ଟେସନ୍‌ର ଲୋକମାନଙ୍କୁ ଭଲ ଭାବରେ ଚିହ୍ନି ସାରିଥାଏ ।

ବାହାରେ କିଛି ଗୋଟିଏ ମଜା କଥା ଚାଲିଥାଏ । ଜଣେ ଯୁବକ ଚକା ପକାଇ ପଟି ଖଣ୍ଡେ ଉପରେ ବସିଥାଏ । ତା'ର ଆଗରେ ଗଛ ଛେଲି ଭଳି କ'ଣ ଗଦାଏ ଥୁଆ ହୋଇଥାଏ । ପାଞ୍ଚ ଛଅଜଣ ଲୋକ ଘେରି କରି ଦେଖୁଥା'ନ୍ତି । ତୋତ୍ତୋ-ଗ୍ୱନ୍ ବି ସେଠି ଛିଡ଼ା ହୋଇଗଲା । ଯୁବକଟି କହୁଥାଏ, "ଦେଖନ୍ତୁ, ଦେଖନ୍ତୁ । ଆପଣଙ୍କ ସ୍ୱାସ୍ଥ୍ୟ ସବୁଠାରୁ ମୂଲ୍ୟବାନ ଜିନିଷ । ଆପଣ ସୁସ୍ଥ ଅଛନ୍ତି କି ନାହିଁ ତାହା ଏହି ଛେଲି ଖଣ୍ଡକ କହିଦେବ । ସକାଳୁ ଏଥିରୁ ଖଣ୍ଡେ ଚୋବାଇବେ । ଯଦି ପିତା ଲାଗେ ଜାଣିବେ ଯେ ଆପଣଙ୍କ ସ୍ୱାସ୍ଥ୍ୟ ଭଲନାହିଁ । ଯଦି ପିତା ନଲାଗେ ତେବେ ଆପଣ ସୁସ୍ଥ ଅଛନ୍ତି ବୋଲି ନିଶ୍ଚିତ ରହିବେ । ମାତ୍ର କୋଡ଼ିଏ ସେନ୍ (ପଇସା) ଖର୍ଚ୍ଚ କରି ଆପଣ ନିଜ ଦେହ କଥା ବୁଝି ପାରିବେ । କେହି ପରଖି ଦେଖିବେ କି ?"

ଏହା କହି ସେ ଜଣେ ପତଳା ଲୋକକୁ ଛେଲି ଖଣ୍ଡେ ଧରାଇ ଦେଲା । ସେ ତାଙ୍କ ଦାନ୍ତ ଆଗରେ ଅଳ୍ପ ଟିକିଏ ଚୋବାଇ ଦେଖିଲେ । କହିଲେ, "ହଁ, ମନେ ହେଉଛି.... ଅଳ୍ପ ଟିକିଏ ପିତା ।"

ଯୁବକ ଜଣକ ଡେଇଁ ପଡ଼ି କହିଲା , "ଆଜ୍ଞା ଆପଣଙ୍କ ଦେହରେ ନିଶ୍ଚୟ କିଛି ରୋଗ ଅଛି । ଆପଣ ସାବଧାନ ରହିବେ । ଆପଣଙ୍କୁ ଟିକିଏ ପିତା ଲାଗିଛି, ତେଣୁ ରୋଗ ଏତେ ବଢ଼ିନାହିଁ । ଆଉ କିଏ ପରଖିବେ କି ? ମା' ଆପଣ ?" ସଉଦା ମୁଣି ଧରିଥିବା ମହିଳା ଜଣକ ବଡ଼ ଛେଲି ଖଣ୍ଡେ ନେଲେ । ଭଲ କରି ଚୋବାଇ ସାରି କହିଲେ, "କାହିଁ, ମୋତେ ତ ପିତା ଲାଗିଲା ନାହିଁ ।"

"ଆପଣଙ୍କୁ ମୋର ବଧେଇ", ଯୁବକଟି କହିଲା । "ଆପଣଙ୍କ ସ୍ୱାସ୍ଥ୍ୟ ଖୁବ ଭଲ ଅଛି । ପୁଣି ସେ ଡାକିବାରେ ଲାଗିଗଲା, "ମାତ୍ର କୋଡ଼ିଏ ପଇସା, କୋଡ଼ିଏ ପଇସା ! ଏତିକି ଖର୍ଚ୍ଚ କରି ସବୁ ଦିନ ଆପଣଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରି ନିଅନ୍ତୁ । ଆଉ ଶସ୍ତାରେ ମିଳିବ ନାହିଁ ।"

ସେ ପାଉଁଶିଆ ଛେଲିରୁ ଖଣ୍ଡେ ଚୋବାଇ ଦେଖିବା ପାଇଁ ତୋତ୍ତୋ-ଗ୍ୱନ୍‌ର ଭାରି ଇଚ୍ଛା ଥିଲା । କିନ୍ତୁ ମାଗିବାକୁ ଲାଜ ଲାଗୁଥାଏ । ସିଧା ନମାଗିକରି ସେ ପଚାରିଲା, "ସ୍କୁଲ ଛୁଟି ଯାଏଁ ତୁମେ ଏଠି ରହିବ କି ?"

ଛୋଟିଆ ସ୍କୁଲ ପିଲାଟିକୁ ଟିକିଏ ଚାହିଁଦେଇ ଯୁବକଟି କହିଲା, "ହଁ, ଥିବି ।"

ତା'ର ବସ୍ତାନୀ ଝୁଲାଇ ଝୁଲାଇ ତୋତ୍ତୋ-ଗ୍ୱନ୍ ସ୍କୁଲକୁ ଦଉଡ଼ିଲା । ସ୍କୁଲ ଆରମ୍ଭ ଆଗରୁ ସେ ଆଉ ଗୋଟିଏ କାମ ସାରିବାକୁ ଚାହୁଁଥିଲା । ତେଣୁ ଡେରି ହେଲେ ଚଳିବ ନାହିଁ ।

କ୍ଲାସରେ ପଶୁ ପଶୁ ତୋତ୍ତୋ-ଗ୍ୱନ୍ ପିଲାମାନଙ୍କୁ ପଚାରିଗଲା, "କିଏ ମତେ କୋଡ଼ିଏ ପଇସା ଧାର ଦେଇପାରିବ ?"

ଚକୋଲେଟ ପୁଡିଆକ ସେବେ ଦଶ ପଇସାରେ ମିଳୁଥାଏ । ତେଣୁ କୋଡିଏ ପଇସାଟା ଅତି ବଡ କଥା ନଥିଲା । ହେଲେ କାହାରି ପାଖରେ ପଇସା ନଥିଲା ।

"ବାପାଙ୍କୁ ମାଗିବି କି?", ମିୟୋ-ଗ୍ୱିନ୍ ପଗ୍ୱରିଲା । ମିୟୋ-ଗ୍ୱିନ୍ ପ୍ରଧାନ ଶିକ୍ଷକଙ୍କର ଝିଅ ହୋଇଥିବାରୁ ଏମିତି କେତେ ସମୟରେ ବଡ ସୁବିଧା ହେଉଥିଲା । ଆସେମ୍ବ୍ଲି ଘରକୁ ଲାଗିକରି ତାଙ୍କ ଘର । ତେଣୁ ସେମାନେ ସ୍କୁଲରେ ରହୁଥିଲେ କହିଲେ ଚଳେ ।

ଖାଇବା ଛୁଟିରେ ସେ ତୋଓ୍ୱୋ-ଗ୍ୱିନ୍‌କୁ କହିଲା -"ବାପା ପଇସା ଦେବାକୁ ରାଜି । କିନ୍ତୁ ପଇସା ନେଇ କ'ଣ କରିବୁ ତା' ସେ ଜାଣିବାକୁ ଗ୍ୱହୁଁଛନ୍ତି ।"

ତୋଓ୍ୱୋ-ଗ୍ୱିନ୍ ଅଫିସରେ ପ୍ରଧାନ ଶିକ୍ଷକଙ୍କୁ ଭେଟିଲା । ସେ କହିଲେ, "ତୁମର କୋଡିଏ ପଇସା ଦରକାର ତ ? କ'ଣ ପାଇଁ ଦରକାର ମତେ କହିବ କି ?"

"ମୁଁ ଖଣ୍ଡେ ଛେଲି କିଣିବି । ମୋ ଦେହ ଭଲ ଅଛି କି ନାହିଁ ସେଥିରୁ ମୁଁ ଜାଣିପାରିବି", ତୋଓ୍ୱୋ-ଗ୍ୱିନ୍ କହିଲା ।

"ସେ ଛେଲି କେଉଁଠି ମିଳୁଛି ?" ପ୍ରଧାନ ଶିକ୍ଷକ କୁତୂହଳୀ ହୋଇ ପଗ୍ୱରିଲେ ।

ପ୍ରଧାନ ଶିକ୍ଷକ ତାଙ୍କ ପକେଟରୁ କୋଡିଏ ପଇସା କାଢି ତୋଓ୍ୱୋ-ଗ୍ୱିନ୍ ହାତରେ ଦେଲେ । ଆଉ କହିଲେ, ଠିକ୍ ଅଛି । ତୁମେ ଗ୍ୱହୁଁଛ ଯେବେ କିଣ । କିନ୍ତୁ ମୋତେ ଟିକିଏ ଗ୍ୱଖିବାକୁ ଦେବ ତ?"

"ଓଃ! ଆପଣଙ୍କୁ ବହୁତ ଧନ୍ୟବାଦ", ତୋଓ୍ୱୋ-ଗ୍ୱିନ୍ କହିଲା, "ମୁଁ ମା'ଙ୍କଠୁ ପଇସା ଆଣି ଆପଣଙ୍କୁ ଫେରାଇ ଦେବି । ବହି ପାଇଁ ମା' ଆପେ ଆପେ ପଇସା ଦିଅନ୍ତି । ଆଉ କିଛି ପାଇଁ ମୋତେ ଆଗ ପଗ୍ୱରିବାକୁ ପଡିବ । କିନ୍ତୁ ସ୍ୱାସ୍ଥ୍ୟ ଛେଲି ଭଳି ଦରକାରୀ ଜିନିଷ ପାଇଁ ସେ ନିଶ୍ଚୟ ରାଜି ହେବେ ।"

"ସ୍କୁଲ ଛୁଟି ହେଉ ହେଉ ତୋଓ୍ୱୋ-ଗ୍ୱିନ୍ କୋଡିଏ ପଇସିଟିକୁ ମୁଠାଇ ଧରି ତର ତର ହୋଇ ଷ୍ଟେସନ ଆଡେ ଗ୍ୱଲିଲା । ଯୁବକ ଜଣକ ସେଠାରେ ବସି ଛେଲିର ଗୁଣ ଗାଇ ଗ୍ୱଲିଥାଏ । ତୋଓ୍ୱୋ-ଗ୍ୱିନ୍ ହାତରେ ପଇସା ଦେଖି ତା' ମୁହଁରେ ହସ ଖେଳିଗଲା ।

"ସୁନା ଝିଅ ! ତମ ବାପା ମା' ନିଶ୍ଚୟ ଖୁସି ହେବେ ।"

"ରକି ବି ଖୁସି ହେବ", ତୋଓ୍ୱୋ-ଗ୍ୱିନ୍ କହିଲା ।

ଛେଲି କାଢୁ କାଢୁ ସେ ପଗ୍ୱରିଲା, "ରକି କିଏ ?"

"ସେ ଆମର କୁକୁର । ପୂରା ବିଲାତି ।"

ଯୁବକ ଟିକିଏ ଭାବି କହିଲା, "ହଁ, ମୁଁ ଭାବୁଛି ଯେ କୁକୁର ପାଇଁ ବି ଏ କାମ ଦେବ । ଯଦି ପିତା ଲାଗେ ତାହେଲେ ସେ ନଖାଇ ପକାଇ ଦେବ । ସେଥିରୁ ଜାଣିହେବ ଯେ ତା' ଦେହ ଭଲ ନାହିଁ ।"

ଗ୍ୱଖଣ୍ଡେ ଲମ୍ବର ଛେଲି ଖଣ୍ଡେ ସେ ତୋଓ୍ୱୋ-ଗ୍ୱିନ୍‌କୁ ଦେଲା ଓ କହିଲା, "ନିଅ ତୁମ ଛେଲି । ସବୁଦିନ ସକାଳୁ ଟିକିଏ ଗ୍ୱୋବାଇ ଦେଖ । ପିତା ଲାଗିଲେ ଦେହ ଖରାପ, ନହେଲେ ପୂରା ଠିକ ।"

ଛେଲିକୁ ଖଣ୍ଡେ କାଗଜରେ ଗୁଡ଼ାଇ ଧରି ତୋତୋ-ଚ୍ଚାନ୍ ଘରକୁ ଚାଲିଲା । ଘରେ ପହଞ୍ଚି ଆଗ ସେଥିରୁ ଖଣ୍ଡେ ଚୋବାଇଲା । ଛେଲିଟା ଶୁଖିଲା ଆଉ ଖିଦଡ଼ିଆ ଥିଲା, କିନ୍ତୁ ପିତା ନୁହେଁ । ସତରେ ସେଥିରେ କିଛି ବି ସ୍ୱାଦ ନଥିଲା ।

"ଆରେ ବାଃ, ମୁଁ ସୁସ୍ଥ !"

ମା' ହସିକରି କହିଲେ, "ତା' ତ ନିଶ୍ଚୟ । କାହିଁ କ'ଣ ହେଲା କି ?"

ତୋତୋ-ଚ୍ଚାନ୍ ସବୁ କଥା ବୁଝାଇଦେଲା । ମା' ବି ଖଣ୍ଡେ ଛେଲି ଚାଖିଲେ, "ନାଁ, ପିତା ଲାଗୁନାହିଁ ତ !"

"ତାହେଲେ ତୁମେ ବି ସୁସ୍ଥ, ମା' !"

ତା'ପରେ ତୋତୋ-ଚ୍ଚାନ୍ ରକିର ପାଟି ପାଖରେ ଛେଲି ଖଣ୍ଡେ ଦେଖାଇଲା । ରକି ଆଗ ଟିକିଏ ଶୁଙ୍ଘିଲା, ଆଉ ଚାଟିଲା ।

"ନାଁ, ନାଁ ଏକୁ ଚୋବାଇବାକୁ ହେବ । ତାହେଲେ ଯାଇ ତୁ ତୋ ସ୍ୱାସ୍ଥ୍ୟ କଥା ଜାଣିବୁ", ତୋତୋ-ଚ୍ଚାନ୍ ତାକୁ ବୁଝାଇ ଦେଲା ।

ରକି ବିଲକୁଲ୍ ପାଟି ଖୋଲିଲାନାହିଁ । ଖାଲି ବସିକରି କାନ କୁଣ୍ଡାଇଲା ।



ତୋଓ୍ତୋ-ଗ୍ୱିନ୍ ଛେଲିକୁ ତା' ପାଟିକୁ ଲଗାଇ ଧରିଲା ।

"ଆ'ମ, ଗ୍ୱେବେଇ ଦେ । ତୋ ଦେହ ଭଲ ନଥିଲେ କେତେ ଖରାପ କଥା ହେବ କହିଲୁ ?"

କୁଚ୍ଛେଇ କରି ରକି ଛେଲିର କଣରୁ ଟିକିଏ ଛିଣ୍ଡାଇ ନେଲା । ତାକୁ ଖରାପ ଲାଗୁଥିଲା ଭଳି ମନେ ହେଲାନାହିଁ । ସେ ଖାଲି ଗୋଟାଏ ବଡ ହାଇ ମାରିଲା ।

"ବାଃ ! ରକି ବି ସୁସ୍ଥ !"

ତା'ପରଦିନ ତୋଓ୍ତୋ-ଗ୍ୱିନ୍ ମା'ଙ୍କଠାରୁ କୋଡିଏ ପଇସା ନେଲା । ସ୍କୁଲରେ ଆଗ ପ୍ରଧାନ ଶିକ୍ଷକଙ୍କୁ ଭେଟି ଛେଲି ଖଣ୍ଡେ ବଢାଇ ଦେଲା ।

ପ୍ରଧାନ ଶିକ୍ଷକ ପ୍ରଥମେ କିଛି ବୁଝି ପାରିଲେ ନାହିଁ । କିନ୍ତୁ ତୋଓ୍ତୋ-ଗ୍ୱିନ୍ ହାତରେ କୋଡିଏ ପଇସା ଦେଖି ତାଙ୍କର ମନେ ପଡିଗଲା ।

"ଗ୍ୱେବାନ୍ତୁ", ତୋଓ୍ତୋ-ଗ୍ୱିନ୍ କହିଲା, "ପିତା ଲାଗିଲେ ଜାଣିବେ ଯେ ଅସୁସ୍ଥ ।"

ପ୍ରଧାନ ଶିକ୍ଷକ ଟିକିଏ ଗ୍ୱେବାଇଲେ । ଛେଲିଖଣ୍ଡକ ଭଲ ଭାବରେ ଓଲଟପାଲଟ କରି ଦେଖିଲେ ।

"ପିତା ଲାଗିଲା କି ?" ଡରି ଡରି ତୋଓ୍ତୋ-ଗ୍ୱିନ୍ ପଗ୍ୱରିଲା । ସେ ପ୍ରଧାନ ଶିକ୍ଷକଙ୍କ ମୁହଁକୁ ଗ୍ୱହିଁ ରହିଥାଏ ।

"କାଇଁ କିଛି ବି ସ୍ୱାଦ ନାହିଁ", ଛେଲିଟି ତୋଓ୍ତୋ-ଗ୍ୱିନ୍‌କୁ ଫେରାଉ ଫେରାଉ ସେ କହିଲେ, "ତେବେ ମୁଁ ଠିକ ଅଛି । ତୁମକୁ ଧନ୍ୟବାଦ ।"

"ଆରେ ବାଃ, ପ୍ରଧାନ ଶିକ୍ଷକ ମଧ୍ୟ ସୁସ୍ଥ । ମୁଁ ସେଥିପାଇଁ ବହୁତ ଖୁସି ।"

ଦିନଯାକ ସ୍କୁଲରେ ସମସ୍ତଙ୍କୁ ସେ ତାହା ଚଖାଇଲା । କେହି ଜଣେ ବି ପିତା କହିଲେ ନାହିଁ । ସମସ୍ତେ ସୁସ୍ଥ ଥିବା କଥା ଜାଣି ତୋଓ୍ତୋ-ଗ୍ୱିନ୍ ବହୁତ ଖୁସି ହେଲା ।

ସବୁପିଲା ପ୍ରଧାନ ଶିକ୍ଷକଙ୍କୁ କହୁଥା'ନ୍ତି, "ଆମେ ସୁସ୍ଥ ।" ପ୍ରଧାନ ଶିକ୍ଷକ ଜଣ ଜଣ କରି ସମସ୍ତଙ୍କୁ କହୁଥା'ନ୍ତି, "ଖୁବ ଭଲ କଥା ।"

ଅବଶ୍ୟ ପ୍ରଧାନ ଶିକ୍ଷକ ଏକଥା ମୂଳରୁ ଜାଣିଥିଲେ ଯେ, ଯିଏ ଗ୍ୱେବାଇଲେ ବି ସେ ଛେଲି ପିତା ଲାଗିବ ନାହିଁ । କାରଣ ଦେଶର ଜଙ୍ଗଲ ଅଞ୍ଚଳରେ ପାହାଡ ଓ ନଈ ପାଖରେ ସେ ବଢିଥିଲେ ।

ତଥାପି ସମସ୍ତେ ସୁସ୍ଥ ଦେଖି ତୋଓ୍ତୋ-ଗ୍ୱିନ୍ ଖୁସି ହେବାଟା ତାଙ୍କୁ ବହୁତ ଭଲ ଲାଗୁଥାଏ । ସେ ଆହୁରି ବି ଖୁସି ଥିଲେ ଯେ ତୋଓ୍ତୋ-ଗ୍ୱିନ୍ ଏଭଳି ମଣିଷ ହୋଇ ବଢୁଛି ଯିଏ ଅନ୍ୟର ଅସୁସ୍ଥତା କଥାରେ ଚିନ୍ତା କରିବ ଓ ବ୍ୟସ୍ତ ହେବ ।

ସ୍କୁଲ ପାଖରେ ଥିବା ଗୋଟିଏ ବୁଲା କୁକୁରକୁ ମଧ୍ୟ ତୋଓ୍ତୋ-ଗ୍ୱିନ୍ ଛେଲି ଚଖାଇବାକୁ ଚେଷ୍ଟାକଲା । କୁକୁରଟି ତାକୁ କାମୁଡିବାକୁ ହେବା ସତ୍ତ୍ୱେ ବି ସେ ଛାଡିଲା ନାହିଁ । ତାକୁ ପାଟି କରି କହିଲା , "ଗ୍ୱେବା କହୁଛି ! ନହେଲେ ଜାଣିବୁ କିପରି ତୁ ସୁସ୍ଥ କି ନୁହଁ ? ତୁ ସୁସ୍ଥ ଥିଲେ ସବୁ ଠିକ ।"

ଶେଷରେ ସେ ଅଚିହ୍ନା କୁକୁର ମଧ୍ୟ ଖଣ୍ଡେ ଛେଲି ଗ୍ୱେବାଇଲା । ସେଇ କୁକୁର ଗ୍ୱରିପଟେ ଡେଇଁ ଡେଇଁ ତୋଓ୍ତୋ-ଗ୍ୱିନ୍ ଖୁସିରେ ଚିତ୍କାର କଲା, "ଆରେ ବାଃ, ତୁ ବି ସୁସ୍ଥ !"

ତାକୁ ଧନ୍ୟବାଦ ଦେଲା ଆଉ ଦଉଡ଼ି ପଳାଇଲା । ପ୍ରଧାନ ଶିକ୍ଷକ ଠିକ ଠଉରାଇଥିଲେ ଯେ ସେ ଛେଲିବିକାଳୀ ଆଉ କେବେ ସେଠାକୁ ଆସିବନାହିଁ ।

ପ୍ରତିଦିନ ସକାଳେ ତୋତୋ-ଗ୍ୱନ୍ ତା'ର ଅମୂଲ୍ୟ ଛେଲି ଖଣ୍ଡକରୁ ଟିକିଏ ଗ୍ରେବାଏ । ଦାନ୍ତ ଚିହ୍ନତକ ଦେଖିଲେ କେହି ଭାବିବ ଯେ ଛେଲି ଖଣ୍ଡକ କେଉଁ ମୂଷାର ବସାରୁ ଆସିଛି । ଛେଲି ଗ୍ରେବାଇ ଘରୁ ବାହାରୁ ବାହାରୁ ସେ ପାଟି କରି କୁହେ, "ମୁଁ ସୁସ୍ଥ, ମୁଁ ସୁସ୍ଥ ।"

ଭାଗ୍ୟକୁ ତୋତୋ-ଗ୍ୱନ୍ ସତକୁ ସତ ସୁସ୍ଥ ଥିଲା ।

## ଇଂରାଜୀ କହୁଥିବା ପିଲାଟି

ଦିନେ ତୋମୋଏକୁ ଜଣେ ନୂଆ ପିଲା ଆସିଲା । ପ୍ରାଥମିକ ସ୍କୁଲ ପାଇଁ ସେ ବେଶ ଡେଙ୍ଗା ଓ ମୋଟା ଜଣା ପଡୁଥିଲା । ତୋତୋ-ଗ୍ୱନ୍ ଭାବିଲା ଯେ ସେ ସପ୍ତମ ଶ୍ରେଣୀ ପିଲା ଭଳି ଜଣାପଡୁଛି । ତା'ର ଜାମା ପଟା ବି ଅଲଗା ଥିଲା । ବୟସ୍କମାନଙ୍କ ପୋଷାକ ଭଳି ଦେଖା ଯାଉଥିଲା ।

ସ୍କୁଲ ପଡିଆରେ ପ୍ରଧାନ ଶିକ୍ଷକ ନୂଆ ପିଲାଟିକୁ ଚିହ୍ନାଇ ଦେଲେ, "ଆମ ନୂଆ ସାଥିଙ୍କ ନାଁ ମିୟାଜାକି । ସେ ଆମେରିକାରେ ଜନ୍ମ ହୋଇଥିଲେ ଓ ସେଠାରେ ଆଜି ଯାଏଁ ବଢିଥିଲେ । ତାଙ୍କୁ ଜାପାନୀ ଭାଷା ଭଲ ଭାବରେ ଜଣାନାହିଁ । ସେଥିପାଇଁ ସେ ତୋମୋଏକୁ ଆସିଛନ୍ତି । ଏଠି ସେ ସହଜରେ ସାଙ୍ଗ ହୋଇଯିବେ ଓ ଧୀରେ ଧୀରେ ପାଠ ସବୁ ଧରିନେବେ । ଏବେ ସେ ତୁମ ଭିତରୁ ଜଣେ । ତାଙ୍କୁ କେଉଁ ଶ୍ରେଣୀରେ ରଖିବା ? ତା-ଗ୍ୱନ୍ ଆଦିଙ୍କ ସାଙ୍ଗରେ ପଞ୍ଚମରେ ରଖିଲେ କେମିତି ହେବ ?"

ତା-ଗ୍ୱନ୍ ଭଲ ଚିତ୍ର କରେ । ସେ ତା'ର ବଡଭାଇ ପଣିଆ ଦେଖାଇ କହିଲା, "ହଁ, ଚଳିବ ।"

ପ୍ରଧାନ ଶିକ୍ଷକ ଟିକିଏ ହସି ଦେଇ ପୁଣି କହିଲେ, "ସେ ଜାପାନୀ ଭାଷା ଜାଣି ନାହାନ୍ତି । କିନ୍ତୁ ଭଲ ଭାବରେ ଇଂରାଜୀ ଜାଣନ୍ତି । ତାଙ୍କଠୁ କିଛି ଶିଖିନେବ । ଜାପାନ ଦେଶର ଚଳଣୀରେ ସେ ଅଭ୍ୟସ୍ତ ନୁହନ୍ତି, ତେଣୁ ତମେମାନେ ତାଙ୍କୁ ସାହାଯ୍ୟ କରିବ ତ ? ଆମେରିକା ବିଷୟରେ ବହୁତ ମଜା କଥା ସେ କହିପାରିବେ । ପଗ୍ୱରି ବୁଝିବ । ମୁଁ ଏବେ ତାଙ୍କୁ ତୁମମାନଙ୍କ ସାଥିରେ ଛାଡି ଦେଉଛି ।"

ମିୟାଜାକି ତା' ଶ୍ରେଣୀର ପିଲାମାନଙ୍କୁ ମୁଣ୍ଡ ନୁଆଁଇଲା । ସେମାନେ ତା'ଠାରୁ ଅନେକ ସାନ, କିନ୍ତୁ ସାରା ସ୍କୁଲର ପିଲା ତା' ପାଇଁ ମୁଣ୍ଡ ନୁଆଁଇଲେ ।

ଖାଇବା ଛୁଟିରେ ମିୟାଜାକି ପ୍ରଧାନ ଶିକ୍ଷକଙ୍କ ଘରକୁ ଗଲା । ବାକି ସମସ୍ତେ ବି ତା' ପଛରେ ଗ୍ଲିଲେ । ଦେଖୁ ଦେଖୁ ସେ ଜୋତା ପିନ୍ଧି ଘର ଭିତରେ ହାଜର । ସବୁତକ ପିଲା ଏକାଥରକେ ପାଟି କରି ଉଠିଲେ, "ଜୋତା ଖୋଲିକରି ଯାଅ !"

ମିୟାଜାକି ଚମକି ପଡିଲା, "ଓଃ, ଭୁଲ ହୋଇଗଲା," କହି ସେ ଜୋତା ଖୋଲିଲା ।

ଏକା ସାଙ୍ଗରେ ସମସ୍ତେ ତାକୁ ବତାଇବାରେ ଲାଗିପଡିଲେ । "ମସିଣା ପଡିଥିବା ଘର ଆଉ ଆସେମ୍ଲି ଘରକୁ ଗଲା ବେଳେ ଜୋତା କାଢିବାକୁ ହେବ । କିନ୍ତୁ ଶ୍ରେଣୀରେ ବା ଲାଇବ୍ରେରୀରେ ଜୋତା ପିନ୍ଧି ହେବ ।"

"କୁହୋନ୍‌ବୁଦ୍‌ସୁ ମନ୍ଦିରର ବେଢାରେ ଜୋତା ପିନ୍ଧି ଗ୍ଲି ପାରିବ, ହେଲେ ମନ୍ଦିର ଭିତରେ ନୁହେଁ ।"

ଜାପାନର ଓ ବିଦେଶର ଚଳଣୀ ଭିତରେ ତଫାତକୁ ଜାଣିବାକୁ ମିୟାଜାକିକୁ ମଜା ଲାଗୁଥାଏ ।

ତା'ପର ଦିନ ମିୟାଜାକି ଗୋଟିଏ ବଡ ଇଂରାଜୀ ଚିତ୍ର ବହି ସ୍କୁଲକୁ ଆଣିଲା । ଖାଇବା ଛୁଟିରେ ସମସ୍ତେ ତାକୁ ଘେରିଯାଇ ବହି ଦେଖିବାରେ ଲାଗିଲେ । ଏତେ ସୁନ୍ଦର ଚିତ୍ର ବହି ସେମାନେ ଆଗରୁ କେବେ ଦେଖିନଥିଲେ । ତେଣୁ ତାଙ୍କୁ କାବା ଲାଗୁଥାଏ । ତାଙ୍କର ପୁରୁଣା ବହିଗୁଡିକରେ କେବଳ ଗାଢ ଲାଲ, ସବୁଜ ଓ ହଳଦିଆ ରଙ୍ଗର ଚିତ୍ର ଥିଲା । କିନ୍ତୁ ଏଥିରେ ସବୁ ରଙ୍ଗ ଫିକାରୁ ଗାଢ ହୋଇ ମିଶି ରହିଥିଲା । ହାଲୁକା ଗୋଲାପୀ, ନୀଳ ଆଉ ଧଳା, ପାଉଁଶିଆର ଛିଟା ସବୁ ସେଥିରେ ଥିଲା । ତାଙ୍କ ରଙ୍ଗଡବାରେ ବି ଏତେ ରଙ୍ଗ ନଥିଲା । ତା-ଗ୍ୱନ୍‌ର ୪୮ଟିକିଆ ବଡ ରଙ୍ଗ ଡବାଠାରୁ ବି ଏ ବହିରେ ବେଶୀ ରଙ୍ଗ ଜଣା ପଡୁଥିଲା । ପ୍ରଥମ ଚିତ୍ରଟିରେ ଗୋଟିଏ କୁକୁର ଛୋଟ ପିଲାଟିଏର ଚଡି ଧରି ଭିଡୁଥିଲା । ପିଲାଟି ରଙ୍ଗଦିଆ ଚିତ୍ର ଭଳି ଦିଶୁ ନଥିଲା । ତା'ର ଦେହର ରଙ୍ଗ ସତ ଚମର ରଙ୍ଗଭଳି ଥିଲା । ଏତେ ବଢିଆ ମୋଟା ଓ ପାଲିସ କାଗଜରେ ଛପା ଆଉ ଏତେ ବଡ ଚିତ୍ର ବହି ସେମାନେ ଆଗରୁ କେବେ ଦେଖି ନଥିଲେ । ତା'ର ସ୍ୱାଭାବିକ ଗେହ୍ଲେଇ ଢଙ୍ଗରେ ତୋତୋ-ଗ୍ୱନ୍ ମିୟାଜାକି ଓ ଚିତ୍ର ବହି ପାଖରେ ଖୁନ୍ଦି ହୋଇ ବସିଥାଏ ।

ବହିର ଇଂରାଜୀ ଲେଖା ମିୟାଜାକି ତାଙ୍କୁ ପଢି ଶୁଣାଉଥାଏ । ଇଂରାଜୀ ଭାଷା ତାଙ୍କୁ ଏତେ ମଧୁର ଲାଗୁଥିଲା ଯେ ସେମାନେ ମୁଗ୍ଧ ହୋଇ ବସିଥା'ନ୍ତି । ମିୟାଜାକି ନିଶ୍ଚିତ ଭାବରେ ତୋମୋଏକୁ କିଛି ନୂଆ କଥା ଆଣିଦେଲା ।

ଏଥର ମିୟାଜାକି ଇଂରାଜୀ ଶବ୍ଦର ଜାପାନୀ ଅର୍ଥ ମିଶାଇ କହିଲା । ସେ ଆରମ୍ଭ କଲା, "ଆକାଗ୍ୱନର ଇଂରାଜୀ ବେବି (କୁନି ପିଲା) ।" ସମସ୍ତେ ତା' ପଛରେ ପାଳି ଧରିଲେ ।

"ଉତ୍‌କୁଶୀ - ବିଉଟିଫୁଲ (ସୁନ୍ଦର)", ମିୟାଜାକି କହିଲାବେଳେ 'କୁ' ଉପରେ ଜୋର ଦେଲା ।

ମିୟାଜାକି ବୁଝିଲା ଯେ ତା'ର ଜାପାନୀ ଉଚ୍ଚାରଣ ଠିକ ହେଉନାହିଁ ଓ ସେ

ପୁଣି ଥରେ ଠିକ କରି କହିଲା ।

ଖୁବ ଶୀଘ୍ର ସେମାନେ ମିୟାଜାକିର ସାଙ୍ଗ ହୋଇଗଲେ । ସେ ସବୁଦିନ କିଛି ବହି ଆଣୁଥାଏ ଓ ତୋମୋଏର ପିଲାମାନଙ୍କୁ ପଢି ବୁଝାଉଥାଏ ।

ମିୟାଜାକି ତାଙ୍କର ଇଂରାଜୀ ଶିକ୍ଷକ ଭଳି ମନେ ହେଉଥାଏ । ଜାପାନୀ ଭାଷାରେ ସେ ନିଜେ ବି ବେଶ୍ ଆଗେଇ ଚାଲିଥାଏ । ଜାପାନୀ ଚାଲିଚଳନ ମଧ୍ୟ ସେ ବେଶ୍ ଭଲଭାବରେ ଧରି ନେଉଥାଏ । ଏବେ ସେ ଆଗଭଳି ବଡ ଭୁଲ (ଥରେ ସେ ଠାକୁର ଜାଗାରେ ବସି ପଡିଥିଲା) ଆଉ କରୁ ନଥାଏ ।

ତୋତ୍ତୋ-ଚାନ୍ ଓ ତା'ର ସାଙ୍ଗମାନେ ଆମେରିକା ବିଷୟରେ ଅନେକ କଥା ଜାଣୁଥା'ନ୍ତି । କହିବାକୁ ଗଲେ ତୋମୋଏ ଭିତରେ ଆମେରିକା ଓ ଜାପାନ ବନ୍ଧୁ ହେଉଥା'ନ୍ତି । କିନ୍ତୁ ବାହାରେ ଆମେରିକା ଥିଲା ଜାପାନର ଶତ୍ରୁ । ଆଉ ଶତ୍ରୁର ଭାଷା ହୋଇଥିବାରୁ ଅନ୍ୟ ସବୁ ସ୍କୁଲରେ ଇଂରାଜୀପଢା ବନ୍ଦ ହୋଇ ଯାଇଥାଏ ।

ସରକାର ଘୋଷଣା କରୁଥାଏ, "ଆମେରିକା ସଇତାନ !" କିନ୍ତୁ ତୋମୋଏର ପିଲାମାନେ ଗାଇ ଚାଲିଥିଲେ, "ଉତ୍କୁଶୀ ମାନେ ବିଉଟିଫୁଲ !" ତୋମୋଏର ସୁଲୁସୁଲିଆ ପବନ ମନ ମତାଉଥିଲା ଆଉ ତା'ର ପିଲାମାନେ ନିଜେ ହିଁ ସୁନ୍ଦର ଥିଲେ ।

## *ନାଟକ*

"ଆମେ ଗୋଟିଏ ନାଟକ କରିବୁ !"

ତୋମୋଏର ଇତିହାସରେ ଏହା ଥିଲା ପ୍ରଥମ ନାଟକ । ଖାଇବା ସମୟରେ କିଛି କହିବା ପ୍ରଥା ସେଠାରେ ଚାଲିଥିଲା । କିନ୍ତୁ ମଞ୍ଚ ଉପରେ ସତ ନାଟକ ? ସେଥିରେ ପୁଣି ପ୍ରଧାନ ଶିକ୍ଷକ ପିଆନୋ ବଜାଇବେ ଆଉ ଦର୍ଶକ ବି ଥିବେ । କୌଣସି ପିଲା ଆଗରୁ କେବେ ନାଟକ ଦେଖି ନଥିଲେ । ତୋତ୍ତୋ-ଚାନ୍ ବି ନୁହେଁ । 'ସ୍ୱାନ୍ ଲେକ୍' ଗୀତିନାଟ୍ୟ ଛଡା ଆଉ କିଛି ସେ ଦେଖିନଥିଲା । ତଥାପି ତାଙ୍କର ବର୍ଷ ଶେଷର କାର୍ଯ୍ୟକ୍ରମ ଉପରେ ସମସ୍ତେ ଆଲୋଚନାରେ ଲାଗିଲେ ।

ତୋତ୍ତୋ-ଚାନ୍‌ର ଶ୍ରେଣୀ ଠିକ କଲା ଯେ ସେମାନେ "କାଞ୍ଜିଞ୍ଚୋ" (ପାଣ୍ଠି ସଂଗ୍ରହ) ନାଟକଟି କରିବେ । ଏହା ଏକ ଜଣାଶୁଣା କାବୁକି ନାଟକ (ଜାପାନୀ ଲୋକନାଟ୍ୟ) ଥିଲା । ତୋମୋଏରେ ଏଭଳି ନାଟକ ଯେ କରାଯିବ ତାହା କେହି ଭାବିବେ ନାହିଁ । କିନ୍ତୁ ନାଟକଟି ପିଲାମାନଙ୍କ ପାଠ ବହିରେ ଥିଲା । ତେଣୁ ସେମାନେ ବାଛିଲେ ଶିକ୍ଷକ ମାରୁୟାମା ତାଙ୍କୁ ଏହା ଶିଖାଇ ପାରିବେ ।

ସେମାନେ ଠିକ କଲେ ଯେ ମୋଟା ସୋଟା ଆଇକୋ ସାଇଶୋ ଭଲ ବେଙ୍କେଇ ବା ମାରଧର କଲାବାଲା ହେବ । ଆମାଦେରାର ଚେହେରା ଖୁବ କଡା, ଆଉ ସେ ବଡ ପାଟି କରିପାରେ; ତେଣୁ ସେ ହେବ ତୋଗାଶି ବା ପୋଲିସବାଲା । ସମସ୍ତେ କଥା ହୋଇ ଠିକ କଲେ ଯେ ତୋତ୍ତୋ-ଗ୍ୱନ ଜଣେ ସମ୍ଭ୍ରାନ୍ତ ୟୋଶିତ୍‌ସୁନେ ହେବ । ନାଟକରେ ସେ ସାମନ୍ତ ଜଣେ କୁଲିର ଛଦ୍ମବେଶ ଧରିଥିଲେ । ବାକି ସମସ୍ତେ ସାଧୁ ବେଶରେ ରହିବେ ।

ନାଟକଟି ଅଭ୍ୟାସ କରିବା ଆଗରୁ ସମସ୍ତଙ୍କୁ ନିଜ ନିଜର କଥା ମନେ ରଖିବାକୁ ହେବ । ତୋତ୍ତୋ-ଗ୍ୱନ୍ ଓ ସାଧୁମାନଙ୍କର ବଡ ସୁବିଧା ଥିଲା । ତାଙ୍କୁ କିଛି କହିବାକୁ ପଡିବନାହିଁ । ସାଧୁମାନେ ମୂଳରୁ ଶେଷଯାଏଁ କେବଳ ଛିଡା ହେବେ । ତୋତ୍ତୋ-ଗ୍ୱନ୍ ଗୋଟିଏ ଝାମ୍ପିରେ ତା'ର ମୁହଁ ଲୁଚ୍ଛାଇ ଆଣ୍ଠୁମାଡି ବସିରହିବ । ବେଙ୍କେଇ ପ୍ରକୃତରେ ସାମନ୍ତଙ୍କ ପାଖରେ କାମ କରୁଥିଲା । କିନ୍ତୁ ସେ ତାକୁ ଗାଳି ମାଡ ଦେବାର ଅଭିନୟ କରିବ । ମନ୍ଦିର ମରାମତି ପାଇଁ ପାଣ୍ଠି ସଂଗ୍ରହ କରୁଥିବା ସାଧୁ ବେଶରେ ସେ ଲୋକଦଳକ ପୋଲିସ ହାତରୁ ଖସି ଯିବାକୁ ଚେଷ୍ଟା କରୁଥିବେ । ଆଇକୋ ସାଇଶୋର ବେଙ୍କେଇ ଭୂମିକା ଖୁବ୍ ଜୋରଦାରିଆ ଥିଲା । ତୋଗାଶି (ପୋଲିସ) ସାଙ୍ଗରେ ସେ ଯୁକ୍ତିତର୍କ କରିବ । ପୋଲିସ ତାକୁ ପାଣ୍ଠିସଂଗ୍ରହ ପାଇଁ ଲେଖା ହୋଇଥିବା ନିବେଦନ ପତ୍ର ପଢିବାକୁ କହିବ । ଟିକିଏ ବି ନହଡବଡେଇ ବେଙ୍କେଇ ଖଣ୍ଡିଏ ସାଦା କାଗଜ ଧରି ପଢ଼ି ଚ୍ୱଲିବ । ଧର୍ମଯାଜକମାନଙ୍କୁ ନକଲ କରି ଅତି ଚମତ୍କାର ଭାବରେ ସେ କଡା ଶବ୍ଦ ଲଗାଇ କହିବାକୁ ଲାଗିବ, ''ପ୍ରଥମତଃ ତୋଦାଇଜି ମନ୍ଦିରର ସଂସ୍କାର କାର୍ଯ୍ୟରେ....''

ଆଇକୋ ସାଇଶୋ ତା'ର ଏହି ''ପ୍ରଥମତଃ....'' ନିବେଦନକୁ ସବୁଦିନ ଅଭ୍ୟାସ କରିବାରେ ଲାଗିପଡିଲା ।

ତୋଗାଶି ଭୂମିକାରେ ମଧ୍ୟ ଅନେକ କଥା କହିବାକୁ ଥିଲା, ବେଙ୍କେଇର ଯୁକ୍ତିକୁ କାଟିବାକୁ ପଡୁଥିଲା । ସେ ସବୁ ମନେ ରଖିବା ପାଇଁ ଆମାଦେରା ଲାଗି ପଡିଥାଏ ।

ଶେଷରେ ରିହର୍‌ସାଲ୍ ସମୟ ଆସିଲା । ତୋଗାଶି ଓ ବେଙ୍କେଇ ମୁହାଁମୁହିଁ ଛିଡାହେଲେ । ସାଧୁମାନେ ଧାଡି କରି ପଛରେ ରହିଲେ ଆଉ ସବା ଆଗରେ ୟୋଶିତ୍‌ସୁନେ ବେଶରେ ତୋତ୍ତୋ-ଗ୍ୱନ୍ ଆଣ୍ଠୁ ମାଡି ବସିଲା । ତୋତ୍ତୋ-ଗ୍ୱନ୍ କିନ୍ତୁ କିଛି ବି ବୁଝି ପାରିନଥାଏ । ତେଣୁ ବେଙ୍କେଇ ତାକୁ ବାଡେଇବା ଭଳି ହେବା ମାତ୍ରେ ସେ ଚିହିଙ୍କି ଉଠିଲା । ଆଇକୋ ସାଇଶୋକୁ ଗୋଇଠା ମାରିଲା ଓ ରାମ୍ପୁଡି ପକାଇଲା । ଆଇକୋ କାନ୍ଦିଲା ବେଳକୁ ସାଧୁମାନେ କିରି କିରି ହୋଇ ହସିବାକୁ ଲାଗିଲେ ।

ବେଙ୍କେଇ ଯେତେ ପିଟିଲେ ବି ୟୋଶିତ୍‌ସୁନେ ଡରି ମରି ଚୁପ ବସିବା କଥା । କାରଣ ଏସବୁ ମିଛ ବୋଲି ତୋଗାଶି ସନ୍ଦେହ କରୁଥିଲା । ତଥାପି ତା'ର ମୁନିବଙ୍କୁ ମାଡ ଦେଲାବେଳେ ବେଙ୍କେଇ ମନରେ କେତେ କଷ୍ଟ ହେଉଥିବ ସେ କଥା ଭାବି ସେମାନଙ୍କୁ ଛାଡିଦେବ ।

ୟୋଶିତ୍‌ସୁନେ ଚୁପ ନରହିଲେ ସବୁ ମାଟି ହୋଇଯିବ । ତୋତ୍ତୋ-ଗ୍ୱନ୍‌କୁ ଏ

କଥା ବୁଝାଇବା ପାଇଁ ମାରୁୟାମା ବହୁତ ଚେଷ୍ଟା କଲେ । ତୋତୋ-ଗ୍ୱିନ୍ କିନ୍ତୁ ମାନିବାକୁ ନାରାଜ । ସେ ରୋକଠୋକ କହିଦେଲା ଯେ ଆଇକୋ ଯଦି ତାକୁ ମାରେ ତେବେ ସେ ବି ଓଲଟା ମାରିବ । ତେଣୁ ସେମାନେ ଆଗେଇ ପାରିଲେନାହିଁ ।

ଯେତେଥର ଏ ଦୃଶ୍ୟ ଚେଷ୍ଟା କରାଗଲା ସବୁଥର ତୋତୋ-ଗ୍ୱିନ୍ ଲଢେଇରେ ଲାଗିଲା ।

ମାରୁୟାମା ସାର୍ ତୋତୋ-ଗ୍ୱିନକୁ କହିଲେ, "ମୁଁ ଦୁଃଖିତ, କିନ୍ତୁ ଭାବୁଛି ତାଇ-ଗ୍ୱିନ୍‌କୁ ୟୋଶିଦ୍‌ସୁନେ କରିବାକୁ ହେବ ।"

ତୋତୋ-ଗ୍ୱିନ୍ ବି ଆଶ୍ୱସ୍ତ ହେଲା । ଏକୁଟିଆ ସେ ମାଡ ଖାଇବାଟା ତା'ର ପସନ୍ଦ ନଥିଲା ।

"ତୁ ଜଣେ ସାଧୁ ହେବୁ ତ, ତୋତୋ-ଗ୍ୱିନ୍ ?", ମାରୁୟାମା ସାର ପଚାରିଲେ । ତୋତୋ-ଗ୍ୱିନ୍ ଶେଷରେ ସାଧୁଙ୍କ ସହିତ ଛିଡାହେଲା, କିନ୍ତୁ ସବା ପଛରେ ।

ସାର୍ ଓ ପିଲାମାନେ ସମସ୍ତେ ଭାବୁଥିଲେ ଯେ ଏଥର ସବୁ ଠିକ ଚାଲିବ । କିନ୍ତୁ ତା' ହେଲାନି । ତୋତୋ-ଗ୍ୱିନ୍ ହାତରେ ସାଧୁଙ୍କର ଲମ୍ବା ବାଡିଖଣ୍ଡେ ଦେବାର ନଥିଲା । ଚୁପଚାପ ଛିଡା ହେବାଟା ତୋତୋ-ଗ୍ୱିନ୍‌କୁ ବିରକ୍ତ ଲାଗିଲା । ତେଣୁ ସେ ପାଖ ସାଧୁଙ୍କ ଗୋଡକୁ ବାଡିରେ କେଞ୍ଚିଲା, ଆଉ ଆଗ ସାଧୁଙ୍କୁ କୁତୁକୁତୁ କଲା । ଏମିତିକି ଗୀତରେ ତାଳ ଦେଲା ଭଳି ସେ ବାଡିକୁ ହଲାଇଲା । ପାଖ ପିଲାଙ୍କ ଦେହରେ ଏହା ବାଜିଲା । ଏସବୁ ଯୋଗୁଁ ବେଙ୍କେଇ ଓ ତୋଗାଶିଙ୍କ ଦୃଶ୍ୟ ପାଣି ଫାଟିଗଲା ।

ଶେଷରେ ତୋତୋ-ଗ୍ୱିନ୍‌କୁ ସାଧୁ ଭୂମିକାରୁ ମଧ୍ୟ ବାଦ ଦିଆଗଲା ।

ୟୋଶିଦ୍‌ସୁନେ ଭାବରେ ତାଇ-ଗ୍ୱିନ୍ ଦାନ୍ତ କାମୁଡି ମାଡ ସହିଗଲା । ଦର୍ଶକମାନେ ନିଶ୍ଚୟ ତା'ପାଇଁ ଦୁଃଖ କରିଥିବେ । ତୋତୋ-ଗ୍ୱିନ୍ ବିନା ନାଟକ ଅଭ୍ୟାସ ଠିକ ଚାଲିଲା ।

ଏକୁଟିଆ ହୋଇଯିବାରୁ ତୋତୋ-ଗ୍ୱିନ୍ ସ୍କୁଲ ପଡିଆକୁ ଚାଲିଗଲା । ଜୋତା ଖୋଲିଦେଇ ସେ ତା' ମନରୁ ନାଚଟିଏ ଆରମ୍ଭ କଲା, "ତୋତୋ-ଗ୍ୱିନ୍ ନୃତ୍ୟ ନାଟିକା" । ନିଜ ଇଚ୍ଛା ଅନୁସାରେ ନାଚିବାକୁ ତାକୁ ଖୁବ ଭଲ ଲାଗୁଥିଲା । କେତେବେଳେ ସେ ହଂସ ହେଉଥାଏ ତ ଆଉ କେବେ ପବନ, କେବେ ଜଣେ ବିକୃତ ମଣିଷ ତ ଆଉ କେବେ ଗଛ । ଫାଙ୍କା ଖେଳ ପଡିଆରେ ଏକା ଏକା ସେ ନାଚି ଚାଲିଥାଏ । ତେବେ ମନର କେଉଁ ଗଭୀରରେ ତା'ର ୟୋଶିଦ୍‌ସୁନେ ହେବାକୁ ଟିକିଏ ଇଚ୍ଛା ରହିଥିଲା । କିନ୍ତୁ ସେ ନିଶ୍ଚୟ ଆଇକୋ ସାଇଶୋକୁ ପିଟିଥା'ନ୍ତା, ଆମ୍ପୁଡି ଥା'ନ୍ତା ।

ଏହି ଭାବରେ ତୋତୋ-ଗ୍ୱିନ୍ ତୋମୋଏର ପ୍ରଥମ ଓ ଶେଷ ନାଟକରେ ଭାଗ ନେଇ ପାରିଲା ନାହିଁ ।

# ଚକ୍ ଖଡି

ତୋମୋଏର ପିଲାମାନେ ଅନ୍ୟ ଲୋକଙ୍କ କାନ୍ଥରେ ବା ରାସ୍ତା ଉପରେ କେବେ ଗାରଉ ନଥିଲେ । କାରଣ ଏହା କରିବା ପାଇଁ ତାଙ୍କ ପାଇଁ ସ୍କୁଲରେ ଯଥେଷ୍ଟ ସୁଯୋଗ ଥିଲା ।

ପ୍ରାର୍ଥନଘରେ ସଙ୍ଗୀତ ପଢାବେଳେ, ପ୍ରଧାନ ଶିକ୍ଷକ ପ୍ରତି ପିଲାକୁ ଖଣ୍ଡିଏ ଲେଖାଏଁ ଧଳା ଚକ୍‌ଖଡି ଦେଉଥିଲେ । ସେମାନେ ଚଟାଣରେ ଯେଉଁଠି ଇଚ୍ଛା ସେଠି ବସି ବା ଗଡି ହାତରେ ଚକ୍ ଧରି ଅପେକ୍ଷା କରୁଥିଲେ । ସମସ୍ତେ ତିଆର ହୋଇଗଲା ପରେ ପ୍ରଧାନ ଶିକ୍ଷକ ପିଆନୋ ବଜାନ୍ତି । ପିଲାମାନେ ତାଙ୍କ ସଙ୍ଗୀତର ସ୍ୱର ଚିହ୍ନ ଚଟାଣ ଉପରେ ସଙ୍କେତରେ ଲେଖନ୍ତି । ସୁନ୍ଦର ମାଟିଆ କାଠର ଚିକଣ ଚଟାଣ ଉପରେ ଚକ୍‌ରେ ଲେଖିବା ବହୁତ ମଜାଦାର ଥିଲା । ତୋତୋ-ଚ୍ୱାନ୍‌ର ଶ୍ରେଣୀରେ ମାତ୍ର ଦଶଜଣ ପିଲା ଥିଲେ । ତେଣୁ ସେମାନଙ୍କ ପାଇଁ ବିରାଟ ପ୍ରାର୍ଥନା ଘରଟିରେ ବହୁତ ଜାଗା ଥିଲା । ଇଚ୍ଛା ଅନୁସାରେ ବଡ ବଡ ସଙ୍କେତ ମଧ୍ୟ ସେମାନେ ଲେଖି ପାରୁଥିଲେ । ସ୍ୱରଗୁଡ଼ିକୁ ଅଲଗା ଅଲଗା ଲେଖୁଥିବାରୁ ଉପରେ ଗାର ପକାଇବା ଦରକାର ନଥିଲା । ସ୍ୱରଲିପିର ସଙ୍କେତଗୁଡ଼ିକ ପାଇଁ ତୋମୋଏରେ ଅଲଗା ପ୍ରକାରର ବର୍ଣ୍ଣନା ଥିଲା । ପ୍ରଧାନ ଶିକ୍ଷକଙ୍କ ସହ କଥା ହୋଇ ପିଲାମାନେ ଏସବୁ ଠିକ୍ କରିଥିଲେ । ସେଗୁଡ଼ିକ ଥିଲା:

♫ 'ଡିଆଁ' ଡେଇଁବା ପାଇଁ ଏହା ଏକ ଭଲ ତାଳ ଥିଲା

♪ 'ପତାକା'- କାରଣ ଏହା ଏକ ପତାକା ଭଳି ଦିଶୁଥିଲା ।

♫ 'ପତାକା-ପତାକା'-

𝅘𝅥𝅯 'ଦୁଇ ପତାକା

♩ କଳା

𝅗𝅥 ଧଳା

𝅗𝅥. 'ଧଳାରେ କଳାଯାଇ' ବା 'ଧଳା ଓ ବିନ୍ଦୁ'

𝅝 'ଗୋଲ୍'

ଏପରି କଲାରୁ ସେମାନେ ସଙ୍କେତଗୁଡ଼ିକୁ ସହଜରେ ମନେ ରଖି ପାରୁଥିଲେ । ତାଙ୍କୁ ଏ ଶ୍ରେଣୀଟି ବହୁତ ମଜା ଲାଗୁଥିଲା । ତଳେ ଚକ୍‌ରେ ଲେଖିବା ଯୋଜନାଟି ପ୍ରଧାନ ଶିକ୍ଷକ କରିଥିଲେ । ଏତେ ବଡ କାଗଜ ମିଳୁନଥିଲା, କଳାପଟା ବି ଯଥେଷ୍ଟ ନଥିଲା । ସେ ଭାବିଲେ ପ୍ରାର୍ଥନା ଘର ଚଟାଣଟି ଗୋଟିଏ ବଢିଆ କଳାପଟାର କାମ ଦେବ । ସେଠାରେ ବାଜା ଯେତେ ବେଗରେ ବାଜିଲେ ବି ପିଲାଏ ଆରାମରେ

ଲେଖିପାରିବେ । ସବୁଠୁ ବଡ କଥା ହେଉଛି ଯେ ସେମାନେ ବାହାର ମଜା ପାଇପାରିବେ । ଆଉ ଯଦି ସମୟ ବଳେ ସେମାନେ ଉଡାଜାହାଜ, କଣ୍ଢେଇ ବା ଯାହା ଚାହିଁବେ ତାହା ଆଙ୍କି ପାରିବେ । ବେଳେ ବେଳେ ପିଲାଏ ମଜାରେ ସମସ୍ତଙ୍କ ଚିତ୍ର ଯୋଡି ଦିଅନ୍ତି । ସାରା ଚଟାଣଟାରେ ଗୋଟିଏ ବିରାଟ ଚିତ୍ର ହୋଇଯାଏ । ମଝିରେ ମଝିରେ ବାଜା ବନ୍ଦ କରି ପ୍ରଧାନ ଶିକ୍ଷକ ପାଖକୁ ଆସି ପ୍ରତି ପିଲାର ସ୍ୱରଲିପି ଦେଖନ୍ତି । ସେ କହିବେ, "ବଢ଼ିଆ ହେଇଛି", "ସେଠି ପତାକା-ପତାକା ନଥିଲା, ଡିଆଁ ଥିଲା ।"

ପିଲାଙ୍କର ସଙ୍କେତଗୁଡ଼ିକୁ ପରଖି ନେବା ପରେ ସେ ତାଙ୍କ ବାଜା ଦୋହରାଇବେ । ଏଥର ପିଲାମାନେ ନିଜର ଲେଖାଗୁଡ଼ିକୁ ପୁଣି ଯାଞ୍ଚ କରିପାରିବେ ଓ ବାଜାର ତାଳକୁ ଭଲ ଭାବରେ ଚିହ୍ନି ପାରିବେ । ଯେତେ ବ୍ୟସ୍ତ ଥିଲେ ବି ପ୍ରଧାନ ଶିକ୍ଷକ ଆଉ କାହାକୁ ଏ ଶ୍ରେଣୀଟି ନେବାକୁ ଛାଡୁନଥିଲେ । ଆଉ ପିଲାଙ୍କ ପାଇଁ ମଧ୍ୟ ଶ୍ରୀ କୋବାୟାଶିଙ୍କ ବିନା ଏ ଶ୍ରେଣୀର ମଜା ରହୁନଥା'ନ୍ତା ।

ଚଟାଣରେ ଲେଖା ସରିଲା ପରେ ଏହାକୁ ସଫା କରିବା ବେଶ ବଡ କାମ ଥିଲା । ପ୍ରଥମେ ଡଷ୍ଟରରେ ଘଷି ଲେଖା ସବୁ ଲିଭା ଯାଉଥିଲା । ତା'ପରେ ଓଦା କନାରେ ପୋଛି ଚଟାଣକୁ ଚକ୍‌ଚକ୍ କରାଯାଉଥିଲା । ଏହା ସତରେ ବହୁତ ବଡ କାମଟିଏ ।

ଏହି କାମରୁ ତୋମୋଏର ପିଲାମାନେ ଜାଣୁଥିଲେ ଯେ କାନ୍ଥରୁ ଘଷି ଦାଗ ଛଡାଇବା କେତେ କଠିନ କାମ । ତେଣୁ ସେମାନେ ପ୍ରାର୍ଥନା ଘର ଚଟାଣକୁ ଛାଡି ଆଉ କେଉଁଠାରେ ବି ଗାରଉ ନଥିଲେ । ପୁଣି ଏହି ଶ୍ରେଣୀଟି ସପ୍ତାହରେ ଦୁଇଥର ହେଉଥିଲା । ତେଣୁ ପିଲାଏ ଗାରେଇବାକୁ ଯଥେଷ୍ଟ ସୁଯୋଗ ପାଉଥିଲେ ।

ତୋମୋଏ ପିଲାମାନେ ଚକ୍ ଖଡି ବ୍ୟବହାର କରିବାରେ ଧୂରନ୍ଧର ବନି ଯାଇଥିଲେ- କେଉଁ ଚକ୍‌ଟି ସବୁଠୁ ଭଲ, ଖଡିକୁ କେମିତି ଧରିବେ ଭଲ ଫଳ ପାଇଁ କେମିତି ଖଡି ଚଳାଇବେ, ନ ଭାଙ୍ଗି କରି କିପରି ଲେଖିବେ... । ସେମାନେ ସମସ୍ତେ ଜଣେ ଜଣେ ଦକ୍ଷ ଚକ୍ କଳାକାର ହୋଇ ଯାଇଥିଲେ ।

## *ୟାସୁଆକି-ଚାନ୍ ମରିଗଲା*

ବସନ୍ତ ଛୁଟି ପରେ ସ୍କୁଲରେ ସେଦିନ ପ୍ରଥମ ସକାଳ । ସବୁଦିନ ଭଳି ସ୍କୁଲ ପଡିଆରେ ସବୁ ପିଲା ଏକାଠି ହୋଇଥା'ନ୍ତି । ପିଲାଙ୍କ ଆଗରେ ଶ୍ରୀ କୋବାୟାଶି ପକେଟରେ ହାତ ପୂରାଇ ଠିଆ ହୋଇଥାଆନ୍ତି । କିନ୍ତୁ କିଛି ସମୟ ଯାଏଁ ସେ କଥା କହିଲେନାହିଁ । ତା'ପରେ ସେ ପକେଟରୁ ହାତ ବାହାର କଲେ ଓ ପିଲାଙ୍କୁ ଚାହିଁଲେ, ସେ କାନ୍ଦୁଥିଲା

ଭଳି ଜଣାପଡୁଥା'ନ୍ତି । ସେ ଧୀରେ ଧୀରେ କହିଲେ, "ୟାସୁଆକି-ଗ୍ୱନ୍ ଆଉ ନାହିଁ । ଆମେ ଆଜି ତା'ର ଶେଷକୃତ୍ୟ ପାଇଁ ଯିବା । ମୁଁ ଜାଣେ, ତୁମେମାନେ ୟାସୁଆକି-ଗ୍ୱନ୍‌କୁ ଭଲ ପାଉଥିଲ । ଏହା ଭାରି ଦୁଃଖର କଥା । ମୁଁ ବହୁତ ଦୁଃଖିତ ।" ସେ ଏତିକି କହୁ କହୁ ତାଙ୍କ ମୁହଁ ଗାଢ ଲାଲ ପଡିଗଲା ଓ ଆଖିରୁ ଲୁହ ବୋହିଲା । ପିଲାମାନେ ଚମକି ପଡିଲେ । କାହା ପାଟିରୁ ପଦେ ବି କଥା ବାହାରୁ ନଥାଏ । ସେମାନେ ସମସ୍ତେ ୟାସୁଆକି-ଗ୍ୱନ୍ ବିଷୟରେ ଭାବୁଥା'ନ୍ତି । ତୋମୋଏର ପଢିଆରେ ଆଗରୁ କେବେ ଏମିତି ଦୁଃଖଭରା ନୀରବତା ଖେଳିନଥିଲା ।

ତୋତ୍ତୋ-ଗ୍ୱନ୍ ଭାବୁଥାଏ, "ଏତେ ଶୀଘ୍ର ସେ ମରିଗଲା, ଭାବି ହେଉନାହିଁ । ସେ ଛୁଟି ଆଗରୁ 'ଟମକକାଙ୍କ କୁଟୀର' ବହିଟି ମୁଁ ପଢିବା ଉଚିତ କହି ମୋତେ ଦେଇଥିଲା । ମୁଁ ସେଇଟା ଏଯାଏଁ ସାରି ପାରିନାହିଁ ।"

ତା'ର ମନେପଡିଲା ଶୀତଛୁଟି ଆଗରୁ ସେ ଓ ୟାସୁଆକି-ଗ୍ୱନ୍‌ର ବିଦାୟ ନେବା ବେଳର କଥା । ସେ ଯେତେବେଳେ ବହିଟି ଦେଲା ତା'ର ଆଙ୍ଗୁଠିଗୁଡ଼ିକ କେତେ ବଙ୍କା ଦିଶୁଥିଲା । ତା'ର ମନେ ପଡିଲା ପ୍ରଥମେ ଯେବେ ସେମାନେ ଭେଟିଥିଲେ, ତୋତ୍ତୋ-ଗ୍ୱନ୍ ତାକୁ ପଚ୍ୱରିଲା, "ତୁ ଏମିତି କାହିଁକି ଚ୍ୱାଲୁଛୁ ?" ସେ ଧୀରେ କହିଥିଲା, "ମୋତେ ପୋଲିଓ ହୋଇଥିଲା ।" ତା'ର ସ୍ୱର ଓ ମୁରୁକା ହସ ବି ମନେ ପଡିଲା । ଆଉ ଖରାଦିନେ ସେ ଦୁଇ ଜଣଙ୍କ ଗଛଚଢ଼ା ବି ମନେ ପଡିଲା । ତାକୁ ଟେକିଲାବେଳେ ତା'ର ଦେହଟା କେତେ ଓଜନିଆ ଲାଗୁଥିଲା । ତୋତ୍ତୋ-ଗ୍ୱନ୍‌ଠାରୁ ବୟସରେ ବଡ ଓ ଡେଙ୍ଗା ଥିଲେ ବି ସେ ତାକୁ କେତେ ବିଶ୍ୱାସ କରୁଥିଲା । ୟାସୁଆକି-ଗ୍ୱନ୍ ହିଁ ତାକୁ କହିଥିଲା ଯେ ଆମେରିକାରେ ଟେଲିଭିଜନ ବୋଲି ଜିନିଷଟିଏ ଅଛି । ତୋତ୍ତୋ-ଗ୍ୱନ୍ ୟାସୁଆକି-ଗ୍ୱନ୍‌କୁ ଭଲ ପାଉଥିଲା । ସେମାନେ ସ୍କୁଲରେ ଏକାଠି ବସି ଖାଉଥିଲେ, ଛୁଟିରେ ଏକାଠି ହେଉଥିଲେ ଓ ସ୍କୁଲ ପରେ ଷ୍ଟେସନକୁ ଏକାଠି ଯାଉଥିଲେ । ତାକୁ ହରାଇବାଟା ବହୁତ ବାଧିବ । ତୋତ୍ତୋ-ଗ୍ୱନ୍ ଏତିକି ବୁଝିଲା ଯେ ମରିଗଲା ମାନେ ସେ ସ୍କୁଲକୁ ଆଉ ଆସିବନାହିଁ । ଠିକ ତା'ର ଟିକି କୁକୁଡା ଛୁଆଗୁଡାକ ପରି । ସେଗୁଡିକ ମରିଗଲା ପରେ ସେ ଯେତେ ଡାକିଲେ ବି ସେମାନେ ଆଉ ହଲୁନଥିଲେ ।

ଡେନେଚ୍ୱେଫୁଠାରେ ୟାସୁଆକି-ଗ୍ୱନ୍‌ର ଘର ପାଖରେ ଗୋଟିଏ ଗୀର୍ଜାରେ ତା'ର ଶେଷକ୍ରିୟା ହେଲା ।

ଜିଉଗାଓକାଠାରୁ ପିଲାମାନେ ଗୋଟିଏ ଧାଡିରେ ଚୁପଚ୍ୱପ ଚ୍ୱାଲି ଚ୍ୱାଲି ସେଠାକୁ ଗଲେ । ଅନ୍ୟ ସମୟ ପରି ତୋତ୍ତୋ-ଗ୍ୱନ୍ ଏଣେତେଣେ ଚ୍ୱାହୁଁ ନଥାଏ, ସେ ତଳକୁ ମୁହଁ କରି ଚ୍ୱାଲିଥାଏ । ପ୍ରଧାନ ଶିକ୍ଷକ ଏହି ଦୁଃଖ କଥାଟି କହିଲାବେଳେ ଯେପରି ଲାଗୁଥିଲା ଏବେ ତା'ଠାରୁ ଟିକିଏ ଅଲଗା ଲାଗୁଥାଏ । ପ୍ରଥମେ ସେ ଏହା ବିଶ୍ୱାସ କରିପାରି ନଥିଲା । ତା'ପରେ ତାକୁ ବହୁତ ଦୁଃଖ ଲାଗିଲା । କିନ୍ତୁ ଏବେ ସେ ୟାସୁଆକି-ଗ୍ୱନ୍‌କୁ ଜୀବନ୍ତ ଅବସ୍ଥାରେ ଥରକ ପାଇଁ କେବଳ ଦେଖିବାକୁ ଚ୍ୱାହୁଁଥିଲା । ତା' ସହ କଥା ହେବାକୁ ତୋତ୍ତୋ-ଗ୍ୱନ୍ ବ୍ୟାକୁଳ ହେଉଥିଲା ଏବଂ ନିଜକୁ ଆଉ ସମ୍ଭାଳି ପାରିଲାନାହିଁ ।

ଗୀର୍ଜାଟି ଧଳା ଲିଲି ଫୁଲରେ ଭରି ଯାଇଥାଏ । ଯାସୁଆକି-ଗ୍ୱିନ୍‌ର ସୁନ୍ଦରୀ ମା', ଭଉଣୀ ଓ ସାଙ୍ଗମାନେ ସମସ୍ତେ କଳାପୋଷାକ ପିନ୍ଧି, ଗୀର୍ଜା ବାହାରେ ଠିଆ ହୋଇଥା'ନ୍ତି । ସେମାନେ ତୋତ୍ତୋ-ଗ୍ୱିନ୍‌କୁ ଦେଖି ବେଶୀ କାନ୍ଦିବାରେ ଲାଗିଲେ । ହାତରେ ତାଙ୍କର ଧଳା ରୁମାଲଟିଏମାନ ଥାଏ । ପ୍ରଥମ ଥର ପାଇଁ ତୋତ୍ତୋ-ଗ୍ୱିନ୍ କାହାର ଶେଷକ୍ରିୟା ପାଇଁ ଯାଇଥାଏ । ସେ ବୁଝିଲା ଯେ ଏହା କେତେ ଦୁଃଖାବହ । ସମସ୍ତେ ଚୁପ ରହିଥା'ନ୍ତି । ଅର୍ଗାନର ମୂର୍ଚ୍ଛନା ଖେଳୁଥାଏ । ବାହାରେ ଉଜ୍ଜ୍ୱଳ ଖରା ପଡିଥାଏ, ଗୀର୍ଜା ଭିତର ଆଲୁଅରେ ଭରିଥାଏ । କିନ୍ତୁ ସେଠି ଟିକିଏ ବି ସୁଖ ନଥାଏ । ହାତରେ କଳାପଟି ବାନ୍ଧିଥିବା ଲୋକଟିଏ ତୋମୋଏ ପିଲାଙ୍କ ହାତରେ ଗୋଟିଏ କରି ଫୁଲ ଧରାଇଦେଲା । ବୁଝାଇଦେଲା ଯେ ସେମାନେ ଜଣକ ପରେ ଜଣେ ଯାଇ ଯାସୁଆକି-ଗ୍ୱିନ୍‌ର କବର ଉପରେ ଫୁଲ ଦେଇ ଆସିବେ ।

ଯାସୁଆକି-ଗ୍ୱିନ୍‌ର ଆଖି ବନ୍ଦ ଥାଏ । ଶବାଧାର ଭିତରେ ତା'ର ଦେହଟି ଫୁଲରେ ଘୋଡେଇ ହୋଇ ଯାଇଥାଏ । ଜୀବନ ଚାଲି ଯାଇଥିଲେ ବି ସେ ସବୁବେଳ ପରି ଚାଲାକ ଓ ଉଦାର ଜଣା ପଡୁଥାଏ । ତୋତ୍ତୋ-ଗ୍ୱିନ୍ ତା' ପାଖରେ ଆଣ୍ଠୁମାଡି ବସିଲା ଓ ଫୁଲଟି ତା' ହାତ କଡରେ ଥୋଇଦେଲା । ଧୀରେ କରି ତା'ର ହାତଟିକୁ ସେ ଛୁଇଁଲା - ସେହି ପ୍ରିୟ ହାତଟିକୁ ସେ ଆଗରୁ କେତେଥର ଧରିଥିଲା । ସେ ହାତଟି ନିଜ ଟିକି ହାତ ତୁଳନାରେ କେତେ ଧଳା ଦିଶୁଥିଲା ଓ ଆଙ୍ଗୁଠିଗୁଡିକ ବଡଙ୍କ ଆଙ୍ଗୁଠି ପରି ଲମ୍ବା ଲାଗୁଥିଲା ।

"ଏଥର ବିଦାୟ," ସେ ଯାସୁଆକି-ଗ୍ୱିନ୍‌କୁ ଧୀର ଭାବରେ କହିଲା, "ହୁଏତ ପୁଣି କେବେ ଆଉ ଥରେ ଦେଖାହେବ । ସେତେବେଳକୁ ଆମେ ବେଶ୍ ବଡ ହୋଇ ଯାଇଥିବା, ଆଉ ହୁଏତ ତୋର ପୋଲିଓ ବି ଭଲ ହୋଇ ଯାଇଥିବ ।"

ତୋତ୍ତୋ-ଗ୍ୱିନ୍ ଉଠି ଠିଆ ହେଲା । ଯାସୁଆକି-ଗ୍ୱିନ୍‌କୁ ଆଉ ଥରେ ଚାହିଁଲା ଓ କହିଲା, "ଆରେ ହଁ, ମୁଁ ଭୁଲି ଯାଇଥିଲି । ଟମ କକାଙ୍କ କୁଟୀର ବହିଟି ମୁଁ ତତେ ଏବେ ଆଉ ଫେରାଇ ପାରିବିନି । ପାରିବି କି ? ପୁଣି ଥରେ ଭେଟିବା ଯାଏଁ ମୁଁ ତାକୁ ସାଇତି ରଖିଥିବି ।"

ଫେରିବା ବେଳେ ତାକୁ ଲାଗୁଥିଲା ଯେପରି ଯାସୁଆକି-ଗ୍ୱିନ୍ ତାକୁ କହୁଛି, "ତୋତ୍ତୋ-ଗ୍ୱିନ୍, ଆମେ ବହୁତ ମଜା କରିଛେ, ନୁହେଁ ? ମୁଁ ତତେ କେବେ ବି ଭୁଲି ପାରିବି ନାହିଁ । କଦାପି ନୁହେଁ ।"

ତୋତ୍ତୋ-ଗ୍ୱିନ୍ ଦୁଆର ମୁହଁରେ ପହଞ୍ଚିଲା ବେଳକୁ ବୁଲି ପଡି କହିଲା, "ମୁଁ ବି ତତେ କେବେ ବି ଭୁଲିବିନାହିଁ ।"

ବାହାରେ ବସନ୍ତ ଋତୁର କଅଁଳିଆ ଖରା ପଡିଥାଏ, ଠିକ ତାଙ୍କର ପ୍ରଥମ ଦିନର ଭେଟ ଭଳି । କିନ୍ତୁ ଆଜି ତା'ର ଦୁଇ ଗାଲ ଲୁହରେ ଭିଜି ଯାଇଥାଏ ।

## ଗୁପ୍ତଚର

ତୋମୋଏର ପିଲାମାନେ ବହୁତ ଦିନ ଯାଏଁ ୟାସୁଆକି-ଚ୍ୱନ୍ ପାଇଁ ମନଦୁଃଖ କରିଥିଲେ, ବିଶେଷ କରି ସକାଳେ ସ୍କୁଲ ଆରମ୍ଭ ହେଲାବେଳେ । ୟାସୁଆକି-ଚ୍ୱନ୍‌ର ଆଜି ଡେରି ହୋଇଛି ନୁହେଁ, ବରଂ ସେ ଆଉ କେବେ ବି ସେ ସ୍କୁଲକୁ ଆସିବନି । ଏକଥା ଅଭ୍ୟାସରେ ପଡିବା ପାଇଁ କିଛି ସମୟ ଲାଗିଲା । ସାଧାରଣ ଭାବରେ ଶ୍ରେଣୀରେ କମ୍ ପିଲା ରହିଲେ ଭଲ । କିନ୍ତୁ ଏଭଳି ସମୟରେ କଷ୍ଟଟା ଅଧିକ ଜଣା ପଡୁଥିଲା । ୟାସୁଆକି-ଚ୍ୱନ୍ ନଥିବା କଥାଟା ଆପେ ଆପେ ଜଣାପଡି ଯାଉଥିଲା । ରକ୍ଷା ହୋଇଥିଲା ଯେ ଶ୍ରେଣୀରେ କାହାର କୌଣସି ନିର୍ଦ୍ଦିଷ୍ଟ ବସିବା ଜାଗା ନଥିଲା । ନହେଲେ ୟାସୁଆକି-ଚ୍ୱନ୍‌ର ଚଉକିଟା ଖାଲି ରହିବା ଦେଖିଲେ ବେଶୀ କଷ୍ଟ ଲାଗୁଥା'ନ୍ତା ।

କିଛିଦିନ ହେଲା ତୋତ୍ତୋ-ଚ୍ୱନ୍ ପୁଣି ଭାବିବାକୁ ଆରମ୍ଭ କଲାଣି ଯେ ବଡ ହେଲେ ସେ କ'ଣ କରିବ । ପିଲାବେଳେ ସେ ଭାବୁଥିଲା ଯେ ସେ ଜଣେ ବୁଲନ୍ତା ବାଜାବାଲା ବା ନୃତ୍ୟନାଟିକା କଳାକାର ହେବ । ଯେଉଁଦିନ ସେ ତୋମୋଏ ସ୍କୁଲରେ ପହଞ୍ଚିଲା ସେଦିନ ଭାବିଲା ସେ ଜଣେ ରେଳଟିକଟ ବିକାଳୀ ହେବ । କିନ୍ତୁ ଏବେ ସେ ଭାବୁଛି ଯେ ସେ କିଛି ଅସାଧାରଣ କାମ କରିବ ଯାହା ମହିଳାମାନଙ୍କୁ ଅଧିକ ସାଜିବ । ସେ ଭାବିଲା ଜଣେ ନର୍ସ ହେଲେ ଭଲ ହେବ । କିନ୍ତୁ ସାଙ୍ଗେ ସାଙ୍ଗେ ତା'ର ମନେ ପଡିଗଲା ଯେ ଆହତ ସୈନ୍ୟଙ୍କୁ ଡାକ୍ତରଖାନାରେ ନର୍ସମାନେ ଇଂଜେକ୍‌ସନ୍ ଦେଉଥିଲେ । ଏହା ଏକ କଷ୍ଟ କାମ । ସେ କଣ କରିବ ? ହଠାତ୍ ସେ ଖୁସିରେ ମାତି ଉଠିଲା ।

"କାହିଁକି ? ମୁଁ ତ ଆଗରୁ ଠିକ୍ କରି ସାରିଛି ମୁଁ କ'ଣ କରିବି ?"

ସେ ତାଇ-ଚ୍ୱନ୍ ପାଖକୁ ଗଲା । ସେ ସେତେବେଳକୁ ତା' ସ୍ପିରିଟ୍ ବତୀ ଜାଳୁଥାଏ । ସେ ଗର୍ବର ସହ କହିଲା, "ମୁଁ ଜଣେ ଗୁପ୍ତଚର ହେବାକୁ ଚାହୁଁଛି ।"

ତାଇ-ଚ୍ୱନ୍ ବତୀରୁ ମୁହଁ ଫେରାଇ ତୋତ୍ତୋ-ଚ୍ୱନ୍ ମୁହଁକୁ ବେଶ୍ କିଛି ସମୟ ଚାହିଁଲା । ତା'ପରେ ସେ ଝରକା ଦେଇ ବାହାରକୁ କିଛି ସମୟ ଚାହିଁଲା ଯେପରି ସେ ସେହି ବିଷୟରେ ଭାବୁଛି । ତା'ପରେ ସେ ତୋତ୍ତୋ-ଚ୍ୱନ୍ ଆଡକୁ ଚାହିଁ ତା'ର ଚାଲାକ ଓ ଗଭୀର ସ୍ୱରରେ ତୋତ୍ତୋ-ଚ୍ୱନ୍ ବୁଝିଲା ଭଳି ସରଳ ଓ ଧୀର ଭାବେ କହିଲା "ଗୁପ୍ତଚର ହେବା ପାଇଁ ତୋତେ ଚାଲାକ ହେବାକୁ ପଡିବ । ତା'ଛଡା ତୋତେ ଅନେକ ଭାଷା ବି ଜାଣିବାକୁ ହେବ ।"

ତାଇ-ଚ୍ୱନ୍ ଟିକିଏ ଅଟକି ଦମ୍ ନେଲା, ତା'ପରେ ସେ ସିଧା ତୋତ୍ତୋ-ଚ୍ୱନ୍‌କୁ ଚାହିଁ ରୋକ୍‌ଠୋକ ଭାବରେ କହିଲା, "ଜଣେ ଝିଅ ଗୁପ୍ତଚରକୁ ସୁନ୍ଦରୀ ବି ହେବାକୁ ପଡିବ ।"

ତୋତ୍ତୋ-ଚ୍ୱନ୍ ତାଇ-ଚ୍ୱନ୍‌ର ଚାହାଣୀରୁ ଆଖି ଖସାଇ ନେଲା ଓ ମୁହଁ ତଳକୁ କଲା । ଟିକିଏ ରହି ତାଇ-ଚ୍ୱନ୍ ଶୁଭେଚ୍ଛୁ ଭଳି ଧୀର ସ୍ୱରରେ, ତୋତ୍ତୋ-ଚ୍ୱନ୍‌ର ମୁହଁକୁ ନଚାହିଁ କହିଲା, "ଆଉ ତା'ଛଡା ମୁଁ ଭାବିପାରୁନି ଯେ ଜଣେ ଗପୁଡି କେବେ ଗୁପ୍ତଚର ହୋଇପାରିବ ।"

ତୋତୋ-ଗ୍ୱିନ୍ ପୂରା ଚୁପ୍ ହୋଇ ଯାଇଥିଲା । ତା'ର ଗୁପ୍ତଚର ହେବାକୁ ତାଇ-ଗ୍ୱିନ୍ ବିରୋଧ କଲା ବୋଲି ନୁହେଁ, କିନ୍ତୁ ତାଇ-ଗ୍ୱିନ୍ ଯାହା କହିଲା ତା' ସବୁ ସତ ଥିଲା । ଏସବୁ ସେ ଆଗରୁ ସନ୍ଦେହ କରୁଥିଲା । ସେ ଅନୁଭବ କଲା ଯେ ଗୁପ୍ତଚର ହେବା ପାଇଁ ଦରକାରୀ ଗୁଣ ସବୁ ତା' ପାଖରେ ନାହିଁ । ସେ ଜାଣିଥିଲା ଯେ ତାଇ-ଗ୍ୱିନ୍ ଭଲରେ ଏସବୁ କଥା କହିଛି । ସେ ତେଣୁ ଏହା ଯୋଜନାଟିକୁ ଛାଡିବାକୁ ବାଧ୍ୟ ହେଲା । ଭଲ ହେଲା ଯେ ସେ ଆଗ ତାଇ-ଗ୍ୱିନ୍ ସହିତ କଥାହେଲା ।

ସେ ମନେ ମନେ ଭାବିଲା, ''ତାଇ-ଗ୍ୱିନ୍ ତ ମୋ ବୟସର । କିନ୍ତୁ ସେ କେତେ ବେଶୀ କଥା ନ ଜାଣିଛି !''

ଯଦି ତାଇ-ଗ୍ୱିନ୍ ତାକୁ କହିଥା'ନ୍ତା ଯେ ସେ ଜଣେ ପଦାର୍ଥ ବିଜ୍ଞାନୀ ହେବାକୁ ଗ୍ୱାହୁଁଛି ତେବେ ସେ ତା'ର ଉତ୍ତରରେ କ'ଣ କହିପାରିଥା'ନ୍ତା ?

ସେ ହୁଏତ କହିଥାନ୍ତା, ''ତୁ ଦିଆସିଲି ମାରି ସ୍ପିରିଟ୍ ବତୀ ଜାଳିବାରେ ଖୁବ୍ ଦକ୍ଷ, କିନ୍ତୁ ଏହା ଖୁବ୍ ପିଲାଳିଆ ଲାଗିଥାନ୍ତା ।'' କିମ୍ବା କୁହନ୍ତା ''ହଁ, ତୁ ଜାଣିଛୁ ଯେ



ଇଂରାଜୀରେ 'କିଶୁନେ'କୁ 'ଫକ୍କ' (କୋକିଶିଆଳୀ) ଓ 'କୁଶୁ'କୁ 'ଶୁ' (ଜୋତା) କୁହନ୍ତି । ତେଣୁ ମୁଁ ଭାବୁଛି ଯେ ତୁ ଜଣେ ପଦାର୍ଥ ବିଜ୍ଞାନୀ ହୋଇ ପାରିବୁ । ନା, ଏ ଉତ୍ତର ବି କିଛି କାମର ନୁହେଁ ।''

ଯାହା ହେଉ ସେ ନିଶ୍ଚିତ ଥିଲା ଯେ ତାଇ-ଗ୍ୱନ୍ ଜଣେ ବୁଦ୍ଧିମାନ ଲୋକ ହୋଇପାରିବ । ତେଣୁ ଫ୍ଲାସ୍କରେ ଫୁଟୁଥିବା ପାଣିରେ ଫୋଟକାକୁ ଲକ୍ଷ୍ୟ କରୁଥିବା ତାଇ-ଗ୍ୱନ୍‌କୁ ମଧୁର ଭାବରେ ସେ କହିଲା, ''ଧନ୍ୟବାଦ । ତା'ହେଲେ ମୁଁ ଜଣେ ଗୁପ୍ତଚର ହେବି ନାହିଁ । କିନ୍ତୁ ମୁଁ ଜାଣିଛି ଯେ ତୁ ନିଶ୍ଚୟ ଜଣେ ବଡ ମଣିଷ ହେବୁ ।''

ତାଇ-ଗ୍ୱନ୍ ଗୁଣୁ ଗୁଣୁ ହୋଇ କ'ଣ କହିଲା, ମୁଣ୍ଡକୁ ଟିକିଏ କୁଣ୍ଢେଇଲା ଓ ତା' ସାମନାରେ ପଡିଥିବା ଖୋଲା ବହିରେ ମନ ଦେଲା ।

ତାଇ-ଗ୍ୱନ୍ ପାଖରେ ଠିଆ ହୋଇ ତୋତୋ-ଗ୍ୱନ୍ ଭାବି ଚାଲିଲା, ''ଯଦି ଗୁପ୍ତଚର ହୋଇପାରିବିନି ତା'ହେଲେ ସେ ଆଉ କ'ଣ ହେବ ?'' ବତୀର ଶିଖାଟିକୁ ସେ ଚାହିଁ ରହି ଭାବି ଚାଲିଲା ।

## ବାପାଙ୍କ ବେହେଲା

ସେମାନେ ଜାଣିବା ଆଗରୁ, ଯୁଦ୍ଧର ପ୍ରଭାବ ତୋତୋ-ଗ୍ୱନ୍ ଓ ତା'ର ପରିବାର ଉପରେ ପଡିବାରେ ଲାଗିଥାଏ । ପ୍ରତିଦିନ ସାହି ପଡିଶାରୁ ଅନେକ ଯୁବକଙ୍କୁ ପତାକା ହଲାଇ ଓ 'ଜିନ୍ଦାବାଦ' (ବାନ୍‌ଜାଇ) ସ୍ଲୋଗାନ ଦେଇ ବିଦାୟ ଦିଆଯାଉଥାଏ । କ୍ରମେ ଦୋକାନଗୁଡିକରୁ ଖାଇବା ଜିନିଷ ଉଭେଇବାରେ ଲାଗିଲା । ତୋମୋଏର ''ସମୁଦ୍ରରୁ କିଛି ଓ ପାହାଡରୁ କିଛି'' ମିଶାଇ ଖାଇବା ନିୟମ ମାନିବା ଆଉ ସମ୍ଭବ ହେଲାନାହିଁ । ମା' ସମୁଦ୍ର ଶୈବାଳ ଓ ପ୍ଲମ ଆଚାର ମିଶାଇ ଏପରି କରୁଥିଲେ । କ୍ରମେ ଏହା ଆଉ ମିଳିଲାନି । ପ୍ରାୟ ସବୁ ଜିନିଷର ବିକ୍ରିକୁ ନିୟନ୍ତ୍ରଣ କରାଗଲା । ଯେତେ ଖୋଜିଲେ ବି ମିଠେଇ ମିଳିଲା ନାହିଁ । ତୋତୋ-ଗ୍ୱନ୍ ଜାଣିଥିଲା ଯେ ତା'ର ଷ୍ଟେସନ୍‌ର ଆଗରୁ ପଡୁଥିବା ଉକାୟାମା ଷ୍ଟେସନ୍ ପାହାଚ ତଳେ ଗୋଟିଏ ମିଠେଇବିକା ଯନ୍ତ୍ର ଥିଲା । ସେଥିରେ ପଇସା ଗଳେଇଦେଲେ ମିଠେଇ ପୁଡିଆ ବାହାରି ଆସୁଥିଲା । ଯନ୍ତ୍ରର ଉପରେ ଥିବା ଚିତ୍ର ଦେଖିଲେ ପାଟିରେ ଲାଳ ଆସିଯାଏ । ପାଞ୍ଚ ସେନ୍‌ରେ ଛୋଟ ପୁଡିଆ ଓ ଦଶ ସେନ୍‌ରେ ବଡ ମିଠା ପୁଡିଆ ବାହାରୁଥିଲା । ଏବେ କିନ୍ତୁ ବେଶ୍ କିଛିଦିନ ହେଲା ଏହା ଖାଲି ପଡିଛି । ସେଥିରେ ଯେତେ ପଇସା ପକାଇଲେ ଓ ଯେତେ ଧଡ଼ ଧଡ କଲେ ବି ଏଥିରୁ କିଛି ବାହାରୁ ନଥିଲା । ଅନ୍ୟମାନଙ୍କ ଅପେକ୍ଷା ତୋତୋ-ଗ୍ୱନ୍ ଏଥିରେ ବେଶୀ ଲାଗିଥାଏ ।

''ହୁଏତ ଗୋଟିଏ ପୁଡ଼ିଆ କେଉଁଠି ଲାଗି ରହି ଯାଇଥିବ'', ସେ ଭାବୁଥିଲା, ତେଣୁ ପ୍ରତିଦିନ ସେ ତା' ଷ୍ଟେସନ୍ ଆଗରୁ ଏଠାରେ ଓହ୍ଲାଏ ଓ ପାଞ୍ଚ ବା ଦଶ ସେନ୍ (ପଇସା) ଗଳାଏ। କିନ୍ତୁ କେବଳ ତା' ପଇସା ଖଡ୍ ଖଡ୍ ଶବ୍ଦ କରି ଫେରିଆସେ।

ଏହି ସମୟରେ ତା' ବାପାଙ୍କୁ ଜଣେ କିଛି କହିଲେ। ଅଧିକାଂଶ ଲୋକ ଏହି ଖବରକୁ ସ୍ୱାଗତ କରିଥା'ନ୍ତେ। ସେ ଯଦି ତାଙ୍କ ବେହେଲା ନେଇ କୌଣସି ଗୋଳାବାରୁଦ କାରଖାନାରେ ଯୁଦ୍ଧବାଜା ବଜାନ୍ତି, ତେବେ ତାଙ୍କୁ ଚିନି, ଚାଉଳ ଓ ଅନ୍ୟ ଜିନିଷ ମିଳିବ। ସେତେବେଳେ ତା' ବାପାଙ୍କୁ ଗୋଟିଏ ସମ୍ମାନଜନକ ସଙ୍ଗୀତ ପୁରସ୍କାର ମିଳିଥାଏ। ସେ ଜଣେ ଭଲ ବେହେଲାବାଦକ ଭାବରେ ଜଣାଥା'ନ୍ତି। ତେଣୁ ସାଙ୍ଗ ଜଣକ କହିଲେ ଯେ ସେ ନିଶ୍ଚୟ ଅଧିକ ପରିମାଣର ଉପହାର ପାଇବେ।

''ତୁମେ କ'ଣ ଭାବୁଛ ?'', ମା' ବାପାଙ୍କୁ ପଚାରିଲେ, ''ତୁମେ କ'ଣ ଏ କାମ କରିବ ?''

ବେଳକୁବେଳ ଗୀତ, ବାଜା ଆଦି ବିରଳ ହୋଇ ଯାଉଥାଏ। ଅଧିକରୁ ଅଧିକ ବାଜାବାଲାଙ୍କୁ ସୈନିକ ହେବାକୁ ପଡୁଥାଏ, ତେଣୁ ଅର୍କେଷ୍ଟ୍ରା ଦଳରେ ଲୋକ କମି ଯାଉଥା'ନ୍ତି। ରେଡିଓରେ କେବଳ ଯୁଦ୍ଧ ପ୍ରଚାର ହିଁ ଚାଲିଥାଏ। ତେଣୁ ବାପା ଓ ସାଥିଙ୍କ ପାଇଁ ବିଶେଷ କାମ ନଥାଏ। ସେ ବାଜା ବଜାଇବା ପାଇଁ ଏପରି ଏକ ସୁଯୋଗକୁ ନିଶ୍ଚୟ ଗ୍ରହଣ କରିଥା'ନ୍ତେ।

ବାପା କିଛି ସମୟ ଭାବି କହିଲେ, ''ମୋ ବେହେଲାରେ ମୁଁ ସେ ସବୁ ବଜାଇବାକୁ ଚାହେଁନାହିଁ।''

''ମୁଁ ଭାବୁଛି ତୁମେ ଠିକ୍ କହିଛି'', ମା' କହିଲେ, ''ମୁଁ ବି ମନା କରିଥା'ନ୍ତି। ଆମେ କେମିତି ହେଲେ **ଖାଦ୍ୟ ପାଇବା**।''

ବାପା ଜାଣିଥିଲେ **ଯେ** ତୋତ୍ତୋ-ଚାନ୍‌ର ଖାଇବା ଅଣ୍ଟ ନିଅଣ୍ଟ। ପ୍ରତିଦିନ ସେ ମିଠେଇ ବିକା ଯନ୍ତ୍ରରେ ବୃଥାରେ ପଇସା ଗଳେଇ ଚେଷ୍ଟା କରୁଛି। ସେ ଏହା ବି ଜାଣିଥିଲେ ଯେ ଯୁଦ୍ଧ ଗୀତ ବଜାଇ ସେ ଯାହା ଉପହାର ପାଇବେ ସେ ସବୁ ତାଙ୍କ ପରିବାର ପାଇଁ ବେଶ୍ କାମ ଦେବ। କିନ୍ତୁ ବାପା ତାଙ୍କ ସଙ୍ଗୀତକୁ ବେଶୀ ମୂଲ୍ୟ ଦିଅନ୍ତି। ମା' ବି ଏହା ଜାଣିଥିଲେ। ତେଣୁ ତାହା କରିବାକୁ ସେ ଜୋର କଲେନାହିଁ। ''ମୋତେ କ୍ଷମା କରେ ତୋତ୍‌ସ୍କି !'' ବାପା ଦୁଃଖରେ କହିଲେ।

ତୋତ୍ତୋ-ଚାନ୍ ଭଳି ଛୋଟ ପିଲା ପାଇଁ କଳା, ମୂଲ୍ୟବୋଧ ଓ କାମ ଆଦି ବୁଝିବା ସମ୍ଭବ ନଥିଲା। କିନ୍ତୁ ସେ ଏତିକି ଜାଣିଥିଲା ଯେ ତା' ବାପା ତାଙ୍କ ବେହେଲାକୁ ବହୁତ ଭଲ ପାଉଥିଲେ। ସେଥିପାଇଁ ତାଙ୍କର ଅନେକ ବନ୍ଧୁ ବାନ୍ଧବ ତାଙ୍କୁ ଦୂରେଇ ଦେଇଥିଲେ- ଏପରିକି ତାଙ୍କୁ କଥା ବି କହୁନଥିଲେ। ସେ ବହୁତ ଅସୁବିଧାରେ ପଡିଥିଲେ। ତଥାପି ସେ ବେହେଲା ବଜାଇବା ବନ୍ଦ କରିନଥିଲେ। ତେଣୁ ତୋତ୍ତୋ-ଚାନ୍ ବାପାଙ୍କର ନିଷ୍ପତ୍ତି - ନିଜ ମତ ବିରୋଧି କାମ ନକରିବାକୁ ଉଚିତ ମନେକଲା। ତୋତ୍ତୋ-ଚାନ୍ ବାପାଙ୍କ ଚାରିପଟେ ଖୁସିରେ ଡେଇଁ ଡେଇଁ କହିଲା, ''ମୋର ମନରେ ଦୁଃଖ ନାହିଁ। କାରଣ ମୁଁ ବି ତୁମ ବେହେଲାକୁ ଭଲପାଏ।''

କିନ୍ତୁ ତା'ପରଦିନ ତୋତ୍ତୋ-ଗ୍ୱନ୍ ଉକାୟାମାଠାରେ ଓହ୍ଲାଇ ମିଠାଇବିକା ଯନ୍ତ୍ର ଭିତରକୁ ଉଣ୍ଡିଲା। ସେଥିରୁ କିଛି ବାହାରିବାର ସମ୍ଭାବନା ନଥିଲା, କିନ୍ତୁ ତଥାପି ସେ ଆଶା ଛାଡ଼ି ନଥିଲା।

## *ଶପଥ*

ଖାଇବା ବେଳେ ଚଉକି ଟେବୁଲ୍‌ଗୁଡ଼ିକ ଗୋଲ୍ କରି ସଜାଇ ଦିଆଯାଉଥିଲା। ସରିଲା ପରେ ଏଗୁଡ଼ିକୁ ପିଲାମାନେ ଘୁଞ୍ଚାଇ ଦିଅନ୍ତି। ଫଳରେ ସଭା ଘରଟି ବେଶ୍ ଫର୍ଚ୍ଛା ଦିଶେ।

ତୋତ୍ତୋ-ଗ୍ୱନ୍ ଦିନେ ଠିକ୍ କଲା, ''ଆଜି ମୁଁ ସବା ଆଗ ପ୍ରଧାନ ଶିକ୍ଷକଙ୍କ ପିଠିରେ ଚଢ଼ିବି।''

ସେ ସବୁବେଳେ ଏହା କରିବାକୁ ଗ୍ୱହୁଁଥିଲା। କିନ୍ତୁ ସେ କୁଣ୍ଡା କରି ଭାବିଲା ବେଳକୁ କିଏ ତାଙ୍କ କୋଳରେ ବସି ଯାଉଥିଲା ତ ଆଉ କିଏ ପିଠିରେ ଚଢ଼ି ଯାଉଥିଲା। ସଭାଘର ମଝିରେ ଚକାମାଡ଼ି ବସିଥିବା ପ୍ରଧାନ ଶିକ୍ଷକଙ୍କ ଆଖିରେ ପଡ଼ିବା ପାଇଁ ସମସ୍ତେ ଏଭଳି ଠେଲାପେଲା ହେଉଥିଲେ।

''ଆରେ ହେ, ରୁହ ରୁହ'', ପ୍ରଧାନ ଶିକ୍ଷକ କହୁ କହୁ ତାଙ୍କ ହସିଲା ମୁହଁଟା ଲାଲ ପଡ଼ିଯାଇଥାଏ। କିନ୍ତୁ ତାଙ୍କ ପିଠିରେ ଚଢ଼ି ବସିଗଲା ପରେ ପିଲାଏ ଆଉ ନଓହ୍ଲାନ୍ତି। ତେଣୁ ଟିକିଏ ବି ଥମେଇଗଲେ ପ୍ରଧାନ ଶିକ୍ଷକଙ୍କ ପିଠିରେ ଭିଡ ବଢ଼ି ଯାଉଥିଲା। କିନ୍ତୁ ଏଥର ତୋତ୍ତୋ-ଗ୍ୱନ୍ ଠିକ୍ କରିସାରିଥିଲା ଯେ ସେ ଆଗ ଚଢ଼ିବ ଓ ପ୍ରଧାନ ଶିକ୍ଷକ ଆସିଲା ବେଳକୁ ସେ ସଭାଘର ମଝିରେ ସେ ଅପେକ୍ଷା କରିଥାଏ। ସେ ପହଞ୍ଚିବା କ୍ଷଣି ତାଙ୍କୁ ପାଟି କରି କହିଲା, ''ସାର, ମୁଁ କିଛି କହିବାକୁ ଗ୍ୱହୁଁଛି।''

''କ'ଣ କହୁଛ ?'' ପ୍ରଧାନ ଶିକ୍ଷକ ଖୁସିରେ ପଗ୍ୱରିଲେ। ତୋତ୍ତୋ-ଗ୍ୱନ୍‌ର କଥା ଶୁଣିବାକୁ ସେ ଚକାମାଡ଼ି ତଳେ ବସିଲେ।

ତୋତ୍ତୋ-ଗ୍ୱନ୍ ଗତ କିଛି ଦିନ ଧରି ଭାବି ଯାହା ଠିକ୍ କରି ଥିଲା ତାହା କହିବାକୁ ଗ୍ୱହୁଁଥିଲା। ପ୍ରଧାନ ଶିକ୍ଷକ ଯେତେବେଳେ ଚକାମାଡ଼ି ବସିଗଲେ ସେ ହଠାତ୍ ଠିକ୍ କଲା ଯେ ସେ ପିଠିରେ ଚଢ଼ିବନାହିଁ। ମୁହଁକୁ ମୁହଁ ବସି କଥାଟା କହିଲେ ବେଶୀ ଭଲ ହେବ। ତେଣୁ ସେ ତାଙ୍କ ଆଗରେ ପୂରା ପାଖରେ ବସିଲା। ମୁଣ୍ଡ ଝୁଙ୍କାଇ ଟିକେ ହସିଲା। ତା'ର ଏହି ଭଙ୍ଗୀକୁ ପିଲାବେଳୁ ମା' 'ସୁନ୍ଦର ମୁହଁ' ବୋଲି କହୁଥିଲେ। ଏଇଟା ତା'ର ''ସବୁଠାରୁ ସୁନ୍ଦର'' ଠାଣି ଥିଲା। ସେ ଯେତେବେଳେ ଟିକିଏ ପାଟି ଖୋଲି ସେଭଳି ହସେ ତା'ର ଦମ୍ଭ ବଢ଼ିଯାଏ ଓ ସେ ନିଜେ ବିଶ୍ୱାସ କରେ ଯେ ସେ ଗୋଟିଏ ସୁନା ଝିଅ।

ପ୍ରଧାନ ଶିକ୍ଷକ କିଛି ଗୋଟେ ଶୁଣିବାକୁ ଆଶା କରି ଆଗକୁ ଝୁଙ୍କି ତା'କୁ ଆଉ ଥରେ ପଗ୍ଚରିଲେ "କ'ଣ କହୁଥିଲ ?"

ତୋତ୍ତୋ-ଗ୍ଚନ୍ ମଧୁର ଓ ଧୀର ଭାବରେ ଜଣେ ମା' ବା ବଡ ଭଉଣୀ ପରି କହିଲା, "ମୁଁ ବଡ ହେଲେ ଏ ସ୍କୁଲରେ ପଢାଇବାକୁ ଗ୍ଚହେଁ। ମୁଁ ସତରେ ଗ୍ଚହେଁ।"

ତୋତ୍ତୋ-ଗ୍ଚନ୍ ଆଶା କରିଥିଲା ପ୍ରଧାନ ଶିକ୍ଷକ ହସିବେ, କିନ୍ତୁ ତା' ବଦଳରେ ସେ ଗମ୍ଭୀର ହୋଇ ପଗ୍ଚରିଲେ, "କଥା ଦେଉଛ ?" ମନେହେଲା ଯେ ସେ ସତରେ ଏହା ଗ୍ଚହୁଁଥିଲେ। ତୋତ୍ତୋ-ଗ୍ଚନ୍ ଜୋରରେ ମୁଣ୍ଡ ହଲାଇ କହିଲା, "ମୁଁ ଶପଥ କରୁଛି।" ନିଶ୍ଚିତ ଭାବରେ ସେଠାରେ ଶିକ୍ଷୟିତ୍ରୀ ହେବା ପାଇଁ ସେ ମନ ଟାଣ କଲା। ସେତେବେଳେ ସେ ଭାବୁଥାଏ ତୋମୋଏର ତା'ର ପ୍ରଥମ ସକାଳ କଥା, ଯେବେ ସେ ନୂଆ କରି ପ୍ରଧାନ ଶିକ୍ଷକଙ୍କୁ ତାଙ୍କ ଅଫିସରେ ଭେଟିଲା, ତାକୁ ଲାଗୁଥିଲା ଏହା ବହୁତ ଦିନ ତଳର କଥା। ସେ ଧୈର୍ଯ୍ୟ ଧରି ଗ୍ଚରି ଘଣ୍ଟା ଯାଏଁ ତା'ର କଥା ଶୁଣିଥିଲେ। ତା'ର କଥା ସରିବା ପରେ ସେ କହିଥିଲେ, "ଏବେ ତୁମେ ଏ ସ୍କୁଲର ଜଣେ ଛାତ୍ରୀ।" ତାଙ୍କ ସ୍ୱରର ଉଷ୍ମତା କଥା ସେ ଭାବୁଥିଲା। ଏବେ ସେ ଶ୍ରୀ କୋବାୟାଶିଙ୍କୁ ଆହୁରି ଅଧିକ ଭଲ ପାଉଥିଲା। ତାଙ୍କ ପାଖରେ କାମ କରିବାକୁ ଓ ତାଙ୍କୁ ଯେ କୌଣସି ପ୍ରକାରରେ ସାହାଯ୍ୟ କରିବାକୁ ସେ ପଣ କରିଥିଲା।

ତୋତ୍ତୋ-ଗ୍ଚନ୍ ଯେତେବେଳେ ଶପଥ କଲା, ସେ ଖୁସିରେ ହସିଲେ-ତାଙ୍କର ଗଳିପଡିଥିବା ଦାନ୍ତଗୁଡିକ ପାଇଁ ଟିକିଏ ବି ସଙ୍କୋଚ ନକରି। ତୋତ୍ତୋ-ଗ୍ଚନ୍ ତା'ର କାଣି ଆଙ୍ଗୁଠି ଦେଖାଇଲା। ପ୍ରଧାନ ଶିକ୍ଷକ ବି ସେଇଆ କଲେ। ତାଙ୍କ କାଣି ଆଙ୍ଗୁଠିଟି ଟାଣୁଆ ଦିଶୁଥାଏ- ତା' ଉପରେ ବିଶ୍ୱାସ ରଖାଯାଇ ପାରିବ। ତୋତ୍ତୋ-ଗ୍ଚନ୍ ଓ ପ୍ରଧାନ ଶିକ୍ଷକ ତାଙ୍କ କାଣି ଆଙ୍ଗୁଠିକୁ ଛନ୍ଦିଲେ ଓ ଯୁଗ ଯୁଗ ଧରି ଚଳି ଆସୁଥିବା ଜାପାନୀ ଧାରାରେ ଶପଥ କଲେ। ପ୍ରଧାନ ଶିକ୍ଷକ ହସୁଥା'ନ୍ତି, ତୋତ୍ତୋ-ଗ୍ଚନ୍ ମଧ୍ୟ ଆଶ୍ୱସ୍ତ ହୋଇ ହସିଲା। ତୋମୋଏର ସେ ଜଣେ ଶିକ୍ଷୟିତ୍ରୀ ହେବ ! କି ଚମତ୍କାର ଚିନ୍ତା।"

"ମୁଁ ଯେବେ ଶିକ୍ଷିକା ହେବି...." ସେ ଖୁସିରେ ଭାବିଲା। ତା'ର ଭାବନା ଭିତରେ ଥିଲାଃ ପାଠର ବୋଝ କମ୍, ଅନେକ ଖେଳଦିନ, ବଣଭୋଜି ଶିବିର ଓ ବୁଲାବୁଲି ! ପ୍ରଧାନ ଶିକ୍ଷକ ଖୁବ୍ ଖୁସି ହୋଇଗଲେ। ତୋତ୍ତୋ-ଗ୍ଚନ୍‌ର ବଡ ଅବସ୍ଥା କଳ୍ପନା କରିବା କଷ୍ଟକର କଥା। କିନ୍ତୁ ସେ ନିଶ୍ଚିତ ଥିଲେ ଯେ ତୋତ୍ତୋ-ଗ୍ଚନ୍ ଶିକ୍ଷୟିତ୍ରୀ ହୋଇ ପାରିବ। ସେ ଭାବୁଥିଲେ ଯେ ତୋମୋଏର ପ୍ରତ୍ୟେକ ପିଲା ଜଣେ ଭଲ ଶିକ୍ଷକ ହୋଇ ପାରିବ, କାରଣ ସେମାନେ ଏଠାରେ ତାଙ୍କ ପିଲାବେଳର ମଜାଟା ଖୁବ୍ ଭଲ ଭାବରେ ମନେ ରଖିଥିବେ।

ତୋମୋଏଠାରେ ପ୍ରଧାନ ଶିକ୍ଷକ ଓ ତାଙ୍କର ଜଣେ ଛାତ୍ରୀ ଅନ୍ତତଃ ଦଶ ବର୍ଷ ପରର ଗୋଟିଏ କାମ ପାଇଁ ଗମ୍ଭୀର ଶପଥ କରୁଥିଲେ। ସେତେବେଳେ କିନ୍ତୁ ସମସ୍ତେ କହୁଥିଲେ ଯେ ଆଉ କିଛି ସମୟ ପରେ ଆମେରିକାର ବୋମାଭରା ଉଡାଜାହାଜ ସବୁ ଜାପାନ ଆକାଶରେ ଦେଖାଦେବ।

# ରକି ହଜିଗଲା

ଅନେକ ସୈନ୍ୟ ମରିଯାଇଥା'ନ୍ତି, ଖାଦ୍ୟ ପ୍ରାୟ ମିଳୁ ନଥାଏ, ସମସ୍ତେ ଭୟରେ କାଳ କାଟୁଥାନ୍ତି- କିନ୍ତୁ ଖରାଦିନ ଠିକ୍ ସମୟରେ ଆସିଗଲା । ହାରଜିତ୍ ନ ବାଛି ସୂର୍ଯ୍ୟ ସବୁ ଦେଶରେ ତା'ର କିରଣ ଢାଳିଲା ।

କାମାକୁରାରେ ତା'ର ବଡବାପାଙ୍କ ଘରୁ ତୋତୋ-ଗ୍ୱିନ୍ ଟୋକିଓ ଫେରିଥାଏ । ତୋମୋଏରେ ଏବେ ଆଉ ଶିବିର ବା ଉଷ୍ଣପ୍ରସ୍ରବଣ ବୁଲା ହେଉ ନଥାଏ । ଲାଗୁଥାଏ ଯେପରି ପିଲାମାନେ ଆଗଭଳି ଆଉ ଖରାଛୁଟିର ମଜା ପାଇ ପାରିବେ ନାହିଁ । ତୋତୋ-ଗ୍ୱିନ୍ ସବୁ ଖରା ଛୁଟି ତା'ର ସମ୍ପର୍କୀୟ ଭାଇମାନଙ୍କ ସହ କାମାକୁରାରେ କାଟୁଥିଲା । ଏବର୍ଷ କିନ୍ତୁ ସବୁ ଅଲଗା ଲାଗୁଥିଲା । ଜଣେ ସମ୍ପର୍କୀୟ ବଡ ପିଲା ଯେ ସେମାନଙ୍କୁ କେତେ ମଜାଳିଆ ଭୂତ କଥା କହୁଥିଲା, ସେ ଯୁଦ୍ଧକୁ ଯାଇଥାଏ । ତେଣୁ ଭୂତ କଥା ବି ବନ୍ଦ । ଆଉ ତା' ବଡବାପା ତାଙ୍କ ଆମେରିକା ରହଣି ବିଷୟରେ ଅନେକ ମଜା କଥା କହୁଥିଲେ- ଯଦିଓ ସେ ସବୁ ସତ କି ମିଛ ତାହା ସେମାନେ ଜାଣି ନଥିଲେ, ସେ ବି ଏବେ ସୀମାନ୍ତରେ ଥା'ନ୍ତି । ତାଙ୍କ ନାଁ ଥିଲା ଶୁ ତାଗୁଚି । ସେ ଜଣେ ବିଖ୍ୟାତ ଫଟୋଉଠାଳୀ ଥିଲେ ।

'ନିହନ୍ ନିଉଜ୍'ର ନିଉୟର୍କ ଅଫିସ୍‌ର ମୁଖ୍ୟ ଓ ଆମେରିକା ମେଟ୍ରୋ-ନିଉଜ୍‌ର ଦୂର ପ୍ରାଚ୍ୟ ସାମ୍ବାଦିକ ରହିବା ପରେ ସେ ଶୁ ତାଗୁଚି ନାମରେ ବେଶୀ ଜଣାଶୁଣା ଥିଲେ । ସେ ବାପାଙ୍କର ବଡଭାଇ ଥିଲେ, ବାପା ତାଙ୍କ ନାଁରେ ମା'ଙ୍କ ପରିବାରର ସାଙ୍ଗିଆ ଯୋଡିଥିଲେ, ନହେଲେ ତାଙ୍କ ନାଁ ବି ତାଗୁଚି ହୋଇଥା'ନ୍ତା । 'ରାବୁଲ୍‌ର ଯୁଦ୍ଧ' ଭଳି ତାଙ୍କର ଅନେକ ସିନେମା ସବୁଆଡେ ଦେଖାହେଉଥାଏ । କିନ୍ତୁ ସେ କେବଳ ଯୁଦ୍ଧର ଚିତ୍ର ପଠାଉଥିବାରୁ ଘରେ ସମସ୍ତେ ବ୍ୟସ୍ତ ହେଉଥିଲେ । ସେ ଚିତ୍ରଗୁଡିକରେ ସୈନ୍ୟମାନଙ୍କର ବିପଦପୂର୍ଣ୍ଣ ଅବସ୍ଥାରେ ଆଗାଉଥିବାର ଦେଖାଯାଉଥିଲା । ଫଟୋଉଠାଳୀମାନେ ସୈନ୍ୟମାନଙ୍କ ଆଗରେ ଥାଇ ଏସବୁ ଉଠାଇଛନ୍ତି ବୋଲି ବଡମାନେ କହୁଥିଲେ ।

କାହିଁକି କେଜାଣି, ସେ ବର୍ଷ କାମାକୁରାର ବେଳାଭୂମିରେ ମଧ୍ୟ ବିଷାଦ ଖେଳୁଥାଏ । ଏସବୁ ସତ୍ତ୍ୱେ ୟାତ-ଗ୍ୱିନ୍ କିନ୍ତୁ ମଜାଳିଆ ରହିଥାଏ । ୟାତ-ଗ୍ୱିନ୍ ବଡବାପାଙ୍କର ବଡ ପୁଅ ଓ ତୋତୋ-ଗ୍ୱିନ୍‌ଠାରୁ ବର୍ଷେ ସାନ । ସବୁ ପିଲା ଏକାଠି ଗୋଟିଏ ବଡ ମଶାରୀରେ ଶୋଉଥିଲେ । ଶୋଇବା ଆଗରୁ ୟାତ-ଗ୍ୱିନ୍ ପାଟି କରି କହୁଥିଲା, "ସମ୍ରାଟ ଜିନ୍ଦାବାଦ ।" ଆଉ ଗୁଳି ଖାଇଥିବା ସୈନିକଭଳି ତଳେ କଚ୍ରିଡି ହୋଇ ପଡୁଥିଲା ଓ ମରି ଯାଇଥିବାର ଛଳନା କରୁଥିଲା । ଥରକୁ ଥର ସେ ଏପରି କରିବ । ମଜାର କଥା ଯେ ଯେବେ ବି ସେ ଏଭଳି କରିବ ସେ ରାତିରେ ସେ ନିଶ୍ଚୟ ନିଦରେ ଗ୍ଭଲିବ ଓ ବାରଣ୍ଡା ଉପରୁ ଗଳିପଡି ଚିତ୍କାର କରିବ ।

ବାପାଙ୍କର ଟୋକିଓରେ କାମ ଥାଏ । ତେଣୁ ମା' ତାଙ୍କ ସାଙ୍ଗରେ ରହିଥା'ନ୍ତି । ଖରାଛୁଟି ସରିଲା । ଭୂତଗପ କହୁଥିବା ପିଲାର ଭଉଣୀ ତୋତୋ-ଗ୍ୱିନ୍‌କୁ ଟୋକିଓ ଫେରାଇ ଆଣିଲା ।

ଫେରିବା ମାତ୍ରେ ତୋତ୍ତୋ-ଗ୍ୱନ୍ ରକିକୁ ଖୋଜିବାରେ ଲାଗିଗଲା । କିନ୍ତୁ ରକି ଦେଖା ଗଲାନାହିଁ । ଘରେ, ବଗିଗ୍ୱରେ ବା ବାପାଙ୍କର ପୁଷ୍ପାଳୀ ଗ୍ୱରା ଘରେ କେଉଁଠି ବି ରକି ନଥିଲା । ତୋତ୍ତୋ-ଗ୍ୱନ୍ ବ୍ୟସ୍ତ ହୋଇ ପଡ଼ିଲା । ସାଧାରଣତଃ ସେ ଘରେ ନପଶୁଣୁ ରକି ତା' ପାଖକୁ ଦଉଡ଼ି ଆସେ । ରାସ୍ତାକୁ ଯାଇ ସେ ରକିକୁ ଡାକ ପକାଇଲା । ହେଲେ ତା'ର ସେ ପ୍ରିୟ ଆଖି, କାନ ବା ଲାଞ୍ଜର ଚିହ୍ନ ବି ଦିଶୁ ନଥାଏ । ତୋତ୍ତୋ-ଗ୍ୱନ୍ ତରତର ହୋଇ ଘରକୁ ଫେରି ଆସିଲା; କାଳେ ଏଭିତରେ ରକି ଆସି ଘରେ ପହଞ୍ଚି ଯିବଣି । କିନ୍ତୁ, ରକି ଆସି ନଥିଲା ।

"ରକି କାହିଁ ?" ସେ ମା'ଙ୍କୁ ପଗ୍ୱରିଲା । ମା' ଜାଣିଥିଲେ ଯେ ତୋତ୍ତୋ-ଗ୍ୱନ୍ ନିଶ୍ଚୟ ସବୁଆଡେ ରକିକୁ ଖୋଜି ବୁଲୁଛି । ସେ କିନ୍ତୁ କିଛି କହିଲେନାହିଁ ।

"ରକି କାହିଁ ?" ତୋତ୍ତୋ-ଗ୍ୱନ୍ ମା'ଙ୍କ ଲୁଗା ଝିଙ୍କି ପୁଣି ପଗ୍ୱରିଲା ।

ମା' ଖୁବ୍ କଷ୍ଟରେ ଉତ୍ତର ଦେଲେ, "ସେ ହଜି ଯାଇଛି ।"

ତୋତ୍ତୋ-ଗ୍ୱନ୍ ଏକଥା ବିଶ୍ୱାସ କରିବାକୁ ରାଜି ନଥିଲା । ରକି ପୁଣି କେମିତି



ହଜିଯିବ ଯେ ? ମା'ଙ୍କୁ ସିଧା ଅନାଇ ସେ ପଗ୍ଭରିଲା, ''କେବେ ?''

ମା' କଥା କହି ପାରୁନଥା'ନ୍ତି । ମନଦୁଃଖରେ ସେ କହିଲେ, ''ତୁ କାମାକୁରା ଯିବା ପରେ ପରେ ।'' ଆଉ ତରବର ହୋଇ ଯୋଡିଦେଲେ, ''ଆମେ ତାକୁ ଖୋଜିଲୁ, ସବୁଆଡେ ବୁଲିଲୁ, ସମସ୍ତଙ୍କୁ ପଗ୍ଭରିଲୁ । କିନ୍ତୁ ତାକୁ ପାଇଲୁନାହିଁ । କେମିତି ତତେ କହିବି ସେ କଥା ମୁଁ ଭାବି ପାରୁନଥିଲି । ମୋ ମନ ସତରେ ବଡ କଷ୍ଟ ।''

ଏବେ ତୋତ୍ତୋ-ଗ୍ୱନ୍ ମୁଣ୍ଡରେ କଥାଟା ପଶିଲା । ରକି ନିଶ୍ଚୟ ମରିଯାଇଥିବ । ସେ ଭାବିଲା ''ମା' ଗ୍ଭହୁଁନାହାନ୍ତି ଯେ ମୋ ମନଦୁଃଖ ହେଉ, କିନ୍ତୁ ରକି ଆଉ ନାହିଁ ।''

ତୋତ୍ତୋ-ଗ୍ୱନ୍ ପାଇଁ ଏହା ପରିଷ୍କାର ଥିଲା । ଏବେ ଯାଏଁ ତୋତ୍ତୋ-ଗ୍ୱନ୍ ଯେତେଦିନ ଧରି ବାହାରକୁ ଗଲେ ବି ରକି ବେଶୀ ଦୂର ଯାଉନଥିଲା । ରକି ଜାଣୁଥିଲା ଯେ ତୋତ୍ତୋ-ଗ୍ୱନ୍ ନିଶ୍ଚୟ ଫେରି ଆସିବ । ତୋତ୍ତୋ-ଗ୍ୱନ୍ ଭାବିଲା, ''ରକି ମୋତ ନକହି କେବେ ବି ପଳାଇବ ନାହିଁ ।'' ଏ କଥାରେ ତା'ର ଦୃଢ ବିଶ୍ୱାସ ଥିଲା ।

ତୋତ୍ତୋ-ଗ୍ୱନ୍ ଏକଥା ମା'ଙ୍କୁ କହିଲାନାହିଁ । ମା'ଙ୍କ ମନ କଷ୍ଟ କଥା ସେ ବୁଝୁଥାଏ । ତେଣୁ ମୁହଁ ତଳକୁ କରି ସେ ଖାଲି କହିଲା, ''କୁଆଡେ ସେ ଗଲା ଯେ !''

ଅତି କଷ୍ଟରେ ଏତକ କହି ସେ ଉପର ମହଲାରେ ତା' କୋଠରୀକୁ ଗ୍ଭଲିଗଲା । ରକି ବିନା ଘରଟା ତାଙ୍କ ଘର ଭଳି ଲାଗୁ ନଥାଏ । ସେଠାରେ ପହଞ୍ଚି ସେ ନ କାନ୍ଦିବାକୁ ଖୁବ୍ ଚେଷ୍ଟା କଲା ଓ ଏ ବିଷୟରେ ଆଉ ଥରେ ଭାବିଲା । କାଳେ ସେ ରକିକୁ କିଛି ହଇରାଣ କରିଥିବ- ଯେଉଁଥି ପାଇଁ ରକି ପଳାଇବା ପାଇଁ ଗ୍ଭହିଁଥିବ ।

''ଜୀବଜନ୍ତୁଙ୍କୁ କେବେ ଚିଡାଇବ ନାହିଁ'', ଶ୍ରୀ କୋବାୟାଶି ତାଙ୍କୁ ସବୁବେଳେ କୁହନ୍ତି । ''ଯେଉଁ ଜୀବ ତୁମକୁ ବିଶ୍ୱାସ କରେ ତାକୁ ଭରସା ନଦେବା ନିଷ୍ଠୁର କଥା ; କୁକୁରକୁ କିଛି ଦେଖାଇ ନେଇଯାଅନାହିଁ । ଏପରି କଲେ ସେ ତୁମକୁ ଆଉ ବିଶ୍ୱାସ କରିବନାହିଁ । ଆଉ ତା'ର ସ୍ୱଭାବ ଖରାପ ହୋଇଯିବ ।''

ତୋତ୍ତୋ-ଗ୍ୱନ୍ ସବୁବେଳେ ସେ ନିୟମ ମାନୁଥିଲା ଏଥିରେ ସେ କିଛି ବି ଭୁଲ କରିଥିବା କଥା ଭାବିପାରୁ ନଥିଲା ।

ଠିକ୍ ଏତିକିବେଳେ ଚଟାଣ ଉପରେ ଗଡୁଥିବା କଣ୍ଢେଇ ଭାଲୁର ପାଦରେ କିଛି ଲାଗିଥିବାର ସେ ଦେଖିଲା । ଏବେ ଯାଏଁ ସେ କାନ୍ଦି ନଥିଲା, କିନ୍ତୁ ଏବେ ଆଉ ସମ୍ଭାଳି ପାରିଲା ନାହିଁ । ଭାଲୁ ଗୋଡରେ ରକିର ଫିକା ମାଟିଆ ରୁମରୁ ମେଞ୍ଚାଏ ଲାଗିଥିଲା । କାମାକୁରା ଯିବା ଦିନ ସକାଳେ ରକିର ତା'ର ଚଟାଣରେ ଖେଳରେ ଗଡାଗଡି ହେଉଥିଲେ । ସେତିକିବେଳେ ଏ ରୁମ ମେଞ୍ଚାକ ବୋଧେ ଉପୁଡି ଆସିଛି । ସେଇ ରୁମ କେରାକ ହାତରେ ଧରି ସେ କାନ୍ଦି ଗ୍ଭଲିଲା । ତା'ର ଲୁହ ଓ କୋହ ଆଦୌ ବନ୍ଦ ହେଉ ନଥାଏ ।

ଆଗ ୟାସୁଆକି-ଗ୍ୱନ୍, ଏବେ ରକି - ତୋତ୍ତୋ-ଗ୍ୱନ୍ ଆଉ ଗୋଟିଏ ସାଙ୍ଗ ହରାଇଲା ।

# ଗ୍ ଭୋଜି

ତୋମୋଏର ମାଳୀ ରୟୋ-ଗ୍ରିନ୍ ସବୁ ପିଲାଙ୍କର ପ୍ରିୟ ଥିଲେ । ତାଙ୍କୁ ବେଶ୍ ବୟସ ହୋଇଥିଲା, କିନ୍ତୁ ପିଲାମାନେ ତାଙ୍କର ପିଲାଳିଆ ଡାକ ନାଁରେ ଡାକୁଥିଲେ । ସେ ସମସ୍ତଙ୍କର ରକ୍ଷାକର୍ତ୍ତା ଭଳି ଥିଲେ, କାରଣ କାହାର କିଛି ବି ଅସୁବିଧା ହେଲେ ସେ ସାହାଯ୍ୟ କରୁଥିଲେ । ତାଙ୍କୁ ସବୁ କାମ ଜଣାଥିଲା । ସେ ବେଶୀ କଥା କହୁନଥିଲେ, କେବଳ ହସୁଥିଲେ ଓ କାମଟି ଠିକ୍‌ରେ ସାରି ଦେଉଥିଲେ । ଯେବେ ତୋତୋ-ଗ୍ରିନ୍ ମଇଳା ଖାତରେ ଗଳି ପଡିଥିଲା ସେହି ରୟୋ-ଗ୍ରିନ୍ ହିଁ ତାକୁ ଉଠାଇ ଆଣିଥିଲେ, ଆଉ ଟିକିଏ ବି ଗୁଁ ଗାଁ ନ ହୋଇ ସଫା କରିଥିଲେ ।

ଯୁଦ୍ଧକୁ ଯିବା ପାଇଁ ଦିନେ ତାଙ୍କୁ ଆଦେଶ ମିଳିଲା । ''ଗ୍ରିଲ ଆମେ ଗୋଟିଏ ବଢ଼ିଆ ଗ୍' ଭୋଜି କରି ତାଙ୍କୁ ବିଦାୟ ଦେବା'', ପ୍ରଧାନ ଶିକ୍ଷକ କହିଲେ ।

ଦିନ ଭିତରେ ଜାପାନରେ ଅନେକ ଥର ଶାଗୁଆ ଗ୍ ଖିଆଯାଏ । କିନ୍ତୁ ଭୋଜି ପାଇଁ ସ୍ୱତନ୍ତ୍ର ଗୁଣ୍ଡ ଗ୍ କାମରେ ଲାଗେ । ତୋମୋଏ ପାଇଁ 'ଗ୍ ଭୋଜି' ଗୋଟିଏ ନୂଆ କଥା ହେବ । ପିଲାମାନଙ୍କ ମନକୁ କିନ୍ତୁ କଥାଟା ପାଇଲା । ନୂଆ ଜିନିଷ କରିବା ପାଇଁ ତାଙ୍କୁ ଖୁବ ଭଲଲାଗେ । ପିଲାମାନେ ଅବଶ୍ୟ ଜାଣିନଥିଲେ ଯେ ପ୍ରଧାନ ଶିକ୍ଷକ 'ବିଦାୟ ଭୋଜି' (ସୁବେଟ୍‌ସୁକାଇ) ବଦଳରେ 'ଗ୍ ଭୋଜି' (ସାୱାକାଇ) ଶବ୍ଦଟି ଜାଣିଶୁଣି ବାଛିଥିଲେ । ବିଦାୟ ଭୋଜି ଖୁବ୍ ଦୁଃଖଦାୟକ ଶୁଣାଯିବ । ବଡ ପିଲାମାନେ ବୁଝିପାରିବେ ଯେ ଯଦି ରୟୋ-ଗ୍ରିନ୍ ଯୁଦ୍ଧରେ ମରି ଯାଆନ୍ତି ତେବେ ଏହା ସତ ବିଦାୟ ହେବ, ଆଗରୁ କେହି ଗ୍ ଭୋଜିକୁ ଯାଇ ନଥା'ନ୍ତି, ତେଣୁ ସମସ୍ତେ ଖୁବ୍ ଉତ୍ସାହ ଦେଖାଉଥା'ନ୍ତି ।

ସ୍କୁଲ୍ ଛୁଟି ପରେ ପିଲାମାନେ ତାଙ୍କ ଡେସ୍କଗୁଡ଼ିକୁ ଗୋଲ କରି ସଭାଘରେ ପକାଇଲେ- ଠିକ୍ ଖାଇବା ବେଳ ପରି । ସମସ୍ତେ ବସିଗଲା ପରେ ଶ୍ରୀ କୋବୟାଶି ଶାଗୁଆ ଗ୍ ସାଙ୍ଗରେ ଖଣ୍ଡେ ଲେଖାଏଁ ପତଳା ସ୍କ୍ୱିଡ୍ (ସମୁଦ୍ର ଜୀବ) ଭଜା ଦେଇଗଲେ । ସେ ସମୟରେ ଏତିକି ବି ପାଇବା କଷ୍ଟ ଥିଲା । ଶେଷରେ ସେ ରୟୋ-ଗ୍ରିନ୍ ପାଖରେ ବସିଗଲେ ଓ ଛୋଟ ଗିଲାସରେ କିଛି 'ସାକେ' (ଏକ ପ୍ରକାରର ମଦ) ଆଗରେ ରଖିଲେ । ସେବେ ଏହି ସାକେ କେବଳ ଯୁଦ୍ଧକୁ ଯାଉଥିବା ଲୋକଙ୍କୁ ମିଳୁଥିଲା ।

''ତୋମୋଏରେ ଏହା ପ୍ରଥମ ଗ୍ ଭୋଜି'', ପ୍ରଧାନ ଶିକ୍ଷକ ଆରମ୍ଭ କଲେ, ''ଆସ, ସମସ୍ତେ ଖୁବ୍ ମଜା କରିବା । ତମେ ଯଦି ରୟୋ-ଗ୍ରିନ୍‌ଙ୍କୁ କିଛି କହିବ, ତେବେ କୁହ । କେବଳ ରୟୋ-ଗ୍ରିନଙ୍କୁ ନୁହେଁ, ନିଜ ନିଜକୁ ମଧ୍ୟ କହି ପାରିବ, ତେବେ ଜଣ ଜଣ କରି ମଝିରେ ଛିଡା ହୋଇ ।''

ପ୍ରଥମ ଥର ପାଇଁ ତୋମୋଏରେ ସେମାନେ ସ୍କ୍ୱିଡ୍ ଖାଇଲେ । ପ୍ରଥମ ଥର ପାଇଁ ରୟୋ-ଗ୍ରିନ୍ ସେମାନଙ୍କ ସହିତ ବସିଲେ ଏବଂ ପ୍ରଥମ ଥର ପାଇଁ ସେମାନେ ରୟୋ-ଗ୍ରିନ୍‌ଙ୍କୁ ସାକେ ପିଇବାର ଦେଖିଲେ ।

ପିଲାମାନେ ରୟୋ-ଗ୍ରିନ୍‌ଙ୍କୁ ସାମନା କରି ଛିଡା ହେଲେ ଓ କିଛି କିଛି କହି

ଗ୍ଲିଲେ । ପ୍ରଥମ କେତେ ଜଣ ତାଙ୍କୁ କେବଳ ନିଜର ଯତ୍ନ ନେବାକୁ କହିଲେ ଯେପରି ସେ ଅସୁସ୍ଥ ନହୁଅନ୍ତି । ତୋଓ୍ତୋ-ଗ୍ୱନ୍ ଶ୍ରେଣୀର ମିଗିତା କହିଲା, ''ଆସନ୍ତା ଥର ମୁଁ ଗାଁକୁ ଗଲେ ସମସ୍ତଙ୍କ ପାଇଁ ଶବସଂସ୍କାର ଜଳଖିଆ ଆଣିବି ।''

ସମସ୍ତେ ହସିଲେ, କାରଣ ବର୍ଷକରୁ ବେଶୀ ଦିନ ତଳେ ମିଗିତା ତାଙ୍କୁ ଏହି ସୁଆଦିଆ ଶବସଂସ୍କାର ଜଳଖିଆ ଖାଇଥିବା କଥା କହିଥିଲା । ସାଙ୍ଗମାନଙ୍କ ପାଇଁ ଏଥିରୁ କିଛି ଆଣିବ ବୋଲି ସେ ଅନେକ ଥର କହିଥିଲା, କିନ୍ତୁ କେବେ ଆଣି ନଥିଲା ।

ଶବସଂସ୍କାର ଜଳଖିଆ କଥା ଶୁଣି ପ୍ରଧାନ ଶିକ୍ଷକ ଖୁବ୍ ଚମକି ପଡିଲେ । କାରଣ ବିଦାୟ ସମୟରେ ଶବସଂସ୍କାର ଜଳଖିଆ କଥା କହିବାଟା ଅଶୁଭ ବୋଲି ସାଧାରଣ ଭାବେ ଧରାଯାଏ । କିନ୍ତୁ ମିଗିତା ଏହା ପୂରା ନିରୀହ ମନରେ କହିଥିଲା; ତେଣୁ ପ୍ରଧାନ ଶିକ୍ଷକ ମଧ୍ୟ ହସିଲେ । ଏହା ଆଣିବ ବୋଲି ମିଗିତା ତାଙ୍କୁ ମଧ୍ୟ ଅନେକ ଥର କହିଥିଲା ।

ଓଏ ଉଠିଲା ଓ ରୟୋ-ଗ୍ୱନ୍‌ଙ୍କୁ କଥା ଦେଲା ଯେ ସେ ଜାପାନର ସବୁଠାରୁ ଭଲ ଫଳଚାଷୀ ହେବ । ତୋଦୋରୋକିଠାରେ ବାପାଙ୍କର ଏକ ବିରାଟ ଗ୍ୱରା ବଗିଚା ଥିଲା । କାଇକୋ ଆଓକି ଛିଡା ହେଲା କିନ୍ତୁ କିଛି କହିଲା ନାହିଁ । ସବୁବେଳ ଭଳି ଲାଜରା ହସ ହସି ସେ ମୁଣ୍ଡ ନୁଆଁଇଲା ଓ ତା' ଜାଗାକୁ ଫେରିଗଲା । ଏହା ଦେଖି ତୋଓ୍ତୋ-ଗ୍ୱନ୍ ଆଗକୁ ଦଉଡି ଗଲା ଆଉ ତା' ପାଇଁ କହିଲା, ''କାଇକୋ-ଗ୍ୱନ୍‌ର କୁକୁଡାମାନେ ଉଡିପାରନ୍ତି ! ମୁଁ ଅଳ୍ପଦିନ ତଳେ ଦେଖିଛି !''

ଏହାପରେ ଆମାଦେରା କହିଲା, ''କେହି କୌଣସି ଖଣ୍ଡିଆ ଖାବରା ବିଲେଇ ବା କୁକୁର ମୋ ପାଖକୁ ଆଣିଲେ ମୁଁ ଭଲ କରିଦେବି ।''

ତାକାହାଶି ଏତେ ଛୋଟ ଥିଲା ଯେ ସେ ଟେବୁଲ ତଳେ ଗଳି ଖୁବ୍ ଜଲ୍‌ଦି ମଝିକୁ ଗ୍ୱଲି ଆସିଲା । ହସଖୁସିଆ ସ୍ୱରରେ କହିଲା, ''ରୟୋ-ଗ୍ୱନ୍ ତୁମକୁ ଧନ୍ୟବାଦ । ସବୁକିଛି ପାଇଁ ଓ ସବୁ ପ୍ରକାରର କାମ ପାଇଁ ଧନ୍ୟବାଦ ।''

ଆଇକୋ ସାଇଶୋ ତା' ପାଳିରେ ଛିଡା ହେଲା ଓ କହିଲା- ''ରୟୋ-ଗ୍ୱନ୍, ମୁଁ ପଡି ଯାଇଥିଲା ବେଳେ ତୁମେ ମୋ ଖଣ୍ଡିଆରେ ପଟି ବାନ୍ଧି ଦେଇଥିଲ ।' ମୁଁ କେବେ ଏହା ଭୁଲିବି ନାହିଁ । ସେଥିପାଇଁ ତୁମକୁ ଧନ୍ୟବାଦ ।

ଆଇକୋ ସାଇଶୋର ଜେଜେ ଥିଲେ ଋଷ୍-ଜାପାନ ଯୁଦ୍ଧର ବିଖ୍ୟାତ ସେନାପତି ତୋଗୋ । ତା'ର ଆଉ ଜଣେ ସମ୍ପର୍କୀୟ, ଅତ୍ସୁକୋ ସାଇଶୋ, ସମ୍ରାଟ ମାଇଜୀଙ୍କ ଦରବାରରେ ଜଣେ ଖ୍ୟାତନାମା କବି ଥିଲେ । କିନ୍ତୁ ଆଇକୋ ଏମାନଙ୍କ କଥା କେବେ କହୁନଥିଲା ।

ପ୍ରଧାନ ଶିକ୍ଷକଙ୍କ ଝିଅ ମିୟୋ-ଗ୍ୱନ୍ ରୟୋ-ଗ୍ୱନ୍‌ଙ୍କୁ ସବୁଠାରୁ ଭଲ କରି ଜାଣିଥିଲା । ତା'ର ଆଖିରେ ଲୁହ ଭରି ଯାଇଥିଲା । ସେ କହିଲା, ''ନିଜର ଯତ୍ନ ନେବ ନିଶ୍ଚୟ, ଆମେ ଚିଠି ଲେଖିବା ।''

କହିବା ପାଇଁ ତୋଓ୍ତୋ-ଗ୍ୱନ୍‌ର ଏତେ କଥା ଥିଲା ଯେ ସେ କେଉଁଠୁ ଆରମ୍ଭ କରିବ ଜାଣିପାରୁ ନଥିଲା । ତେଣୁ ସେ ଖାଲି କହିଲା, ''ରୟୋ-ଗ୍ୱନ୍, ତୁମେ ଗ୍ୱଲି

ଗଲେ ବି ଆମେ ସବୁଦିନ ଗ୍ୱ ଭୋଜି କରିବୁ।''

ପ୍ରଧାନ ଶିକ୍ଷକ ଓ ରୟୋ-ଗ୍ୱନ୍ ହସିଲେ। ସବୁ ପିଲା ବି ହସିଲେ, ତୋତ୍ତୋ-ଗ୍ୱନ୍ ମଧ୍ୟ ହସି ପକାଇଲା।

କିନ୍ତୁ ତା' ପରଦିନଠାରୁ ହିଁ ତୋତ୍ତୋ-ଗ୍ୱନ୍‌ର କଥା ସତ ହେଲା। ସମୟ ପାଇଲା ମାତ୍ରେ ପିଲାମାନେ ଗୋଟିଏ ନୂଆ ଖେଳରେ ଲାଗିଗଲେ। ଦଳଟିଏ ହୋଇ ସେମାନେ 'ଗ୍ୱ ଭୋଜି' ଖେଳ ଖେଳିଲେ, ଷ୍ଟିଡ୍ ଭଜା ବଦଳରେ ସେମାନେ କାଠି ବା ଛେଲି ଚୁଚୁମିବେ, ଗ୍ୱ ବଦଳରେ ପାଣି ପିଇବେ। ବେଳେ ବେଳେ ପାଣିକୁ ସାକେ ବୋଲି କହିବେ। କିଏ କହି ପକାଇବ, ''ମୁଁ ଶବସଚ୍ଛାର ଜଳଖିଆ ଆଣିବି'', ଆଉ ସମସ୍ତେ ହସିବେ। ତା'ପରେ ସେମାନେ ନିଜ ନିଜର ମନ କଥା କହିବେ। କିଛି ଖାଇବାକୁ ନଥିଲେ ବି ଏହି 'ଗ୍ୱ ଭୋଜି'ରେ ଖୁବ୍ ମଜା ହେଉଥିଲା।

କହିବାକୁ ଗଲେ 'ଗ୍ୱ ଭୋଜି' ଖେଳଟି ରୟୋ-ଗ୍ୱନ୍‌ର ଅତି ମୂଲ୍ୟବାନ ବିଦାୟ ଉପହାର ଥିଲା। ପିଲାମାନଙ୍କର କିନ୍ତୁ ଟିକିଏ ବି ଧାରଣା ନଥିଲା ଯେ ନିଜ ନିଜଠାରୁ ଅଲଗା ହୋଇଯିବା ଆଗରୁ ତୋମୋଏରେ ଏହା ତାଙ୍କର ଶେଷ ଖେଳ ଥିଲା।

ଟୋକିଓ ରେଳଗାଡ଼ିରେ ରୟୋ-ଗ୍ୱନ୍ ଚଢ଼ିଲା ବେଳକୁ ଆମେରିକାର ଯୁଦ୍ଧ ବିମାନ ଆସି ପହଞ୍ଚୁଥିଲେ। ଏହା ପରେ ପରେ ବିମାନଗୁଡ଼ିକ ଟୋକିଓ ଉପରେ ଉଡ଼ି ସବୁଦିନ ବୋମା ପକାଇବା ଆରମ୍ଭ କରିଦେଲେ।

## ବିଦାୟ

ତୋମୋଏ ଜଳିଗଲା, ଦିନେ ରାତିରେ ଏହା ଘଟିଲା। ମିୟୋ-ଗ୍ୱନ୍, ତା' ଭଉଣୀ ମିଶା-ଗ୍ୱନ୍ ଓ ତାଙ୍କ ମା' ସ୍କୁଲକୁ ଲାଗିଥିବା ଘରଟିରେ ରହୁଥିଲେ। ସେମାନେ କୁହୋନ୍‌ବୁସୁ ମନ୍ଦିରର ପୋଖରୀ ପାଖରେ ଥିବା ତୋମୋଏର ବଗିଚାକୁ ଚାଲିଗଲେ ଓ ବଞ୍ଚିଗଲେ।

B29 ଯୁଦ୍ଧ ବିମାନରୁ ପଡୁଥିବା ନିଆଁଲଗା ବୋମାରୁ ଅନେକ ରେଳ ଡବାର ଶ୍ରେଣୀ ଘରଗୁଡ଼ିକ ଉପରେ ପଡ଼ିଲା।

ପ୍ରଧାନ ଶିକ୍ଷକଙ୍କର ସ୍ୱପ୍ନର ସ୍କୁଲଟି ନିଆଁର ଶିଖାରେ ଲୁଚିଗଲା। ତାଙ୍କର ଅତି ପ୍ରିୟ ପିଲାଙ୍କର ହସ ଖେଳର ଶବ୍ଦ ବଦଳରେ ସ୍କୁଲ ଭାଙ୍ଗି ପଡ଼ିବାର ଭୟଙ୍କର ଶବ୍ଦ ଆସିଲା। ଏହି ନିଆଁକୁ ଲିଭାଇବା ଅସମ୍ଭବ ଥିଲା। ପୂରା ସ୍କୁଲଟି ଏଥିରେ ଜଳି ମୂଳପୋଛ ହୋଇଗଲା, ଜିଉଗାଓକା ସାରା ନିଆଁ ଜଳୁଥାଏ।

ଏସବୁର ମଝିରେ ପ୍ରଧାନ ଶିକ୍ଷକ ରାସ୍ତାରେ ଛିଡ଼ା ହୋଇ ତୋମୋଏକୁ ଜଳିବାର

ଦେଖୁଥା'ନ୍ତି । ସବୁବେଳ ଭଳି ସେ ତାଙ୍କର କଳା ରଙ୍ଗର ମଇଳା କୋଟ୍ ପିନ୍ଧିଥା'ନ୍ତି ଓ ପକେଟରେ ଦୁଇ ହାତ ପୁରାଇ ଛିଡ଼ା ହୋଇଥା'ନ୍ତି ।

ବିଶ୍ୱବିଦ୍ୟାଳୟରେ ପଢୁଥିବା ତାଙ୍କର ବଡ ପୁଅ ତୋମୋଏ ପାଖରେ ଛିଡ଼ା ହୋଇଥାଏ । ସେ ତାକୁ ପଚାରିଲେ, ''ଆଗକୁ ଆମେ କି ଭଳି ସ୍କୁଲ୍ ଗଢ଼ିବା ?'' ସେ କାବା ହୋଇ ତାଙ୍କ କଥା ଶୁଣୁଥାଏ ।

ପିଲାଙ୍କ ପାଇଁ ଶ୍ରୀ କୋବାୟାଶିଙ୍କର ଶ୍ରଦ୍ଧା ଓ ପାଠ ପଢ଼ାଇବା ପାଇଁ ଆଗ୍ରହ ସ୍କୁଲକୁ ଘେରିଥିବା ନିଆଁଠାରୁ ଟାଣୁଆ ଥିଲା । ପ୍ରଧାନ ଶିକ୍ଷକଙ୍କର ମନ ଖୁସିଥାଏ ।

ଉତ୍ତର-ପୂର୍ବରେ ଥିବା ନିରାପଦ ଅଞ୍ଚଳକୁ ଯାଉଥିବା ରେଳଗାଡ଼ିରେ ଲୋକ ଖୁନ୍ଦାଖୁନ୍ଦି ହୋଇ ଥାଆନ୍ତି । ବଡ଼ମାନଙ୍କ ଭିତରେ ତୋତୋ-ଚ୍ୟାନ୍ ଚିପି ହୋଇ ପଡ଼ିଥାଏ । ଝରକା ବାହାରର କିଟିମିଟି ଅନ୍ଧାରକୁ ଚାହିଁ ସେ ପ୍ରଧାନ ଶିକ୍ଷକଙ୍କ ବିଦାୟ ବେଳର କଥା ମନେ ପକାଉଥାଏ, ''ଆମେ ପୁଣି ଭେଟିବା, ନିଶ୍ଚୟ !'' ଆଉ ତା'ପାଇଁ ତାଙ୍କର ସବୁବେଳର କଥା, ''ତୁମେ ସତରେ ଗୋଟିଏ ସୁନା ଝିଅ, ଜାଣିଛ ନା ।'' ଏହି ଶବ୍ଦଗୁଡ଼ିକୁ ସେ କେବେ ଭୁଲିବାକୁ ଚାହୁଁ ନଥିଲା । ପୁଣି ଶୀଘ୍ର ଶ୍ରୀ କୋବାୟାଶିଙ୍କୁ ଭେଟିବାର ଆଶାରେ ସେ ନିଜକୁ ନିରାପଦ ମଣିଲା ଓ ଶୋଇପଡ଼ିଲା ।

ଉଦ୍‌ଗ୍ରୀବ ଯାତ୍ରୀରେ ଭରା ରେଳଗାଡ଼ିଟି ଅନ୍ଧାର ଭିତରେ ମାଡ଼ି ଚାଲିଲା ।

# ଶେଷକଥା

ସେମାନେ ଏବେ କ'ଣ କରୁଛନ୍ତି ? ମୋର ସେହି ସାଙ୍ଗମାନେ ଯେଉଁମାନେ ସେହି ଏକା ଶ୍ରେଣୀ ''ରେଳ''ରେ ''ଯାତ୍ରା'' କରିଥିଲେ ?

***ଆକିରା ତାକାହାଶୀ***

ତାକାହାଶି, ଯେ ସ୍ପୋର୍ଟସ୍ ଦିନ ସବୁତକ ପୁରସ୍କାର ଜିଣିଥିଲା, ସେ ଆଉ ଡେଙ୍ଗା ହେଲାନାହିଁ । କିନ୍ତୁ ଖୁବ୍ ଭଲ ଫଳ ଦେଖାଇ ଜାପାନରେ ରଗ୍‌ବୀ ଖେଳ ପାଇଁ ପ୍ରସିଦ୍ଧ ଗୋଟିଏ ହାଇସ୍କୁଲ୍‌ରେ ନାଁ ଲେଖାଇଲା । ସେ ମେଇଜି ବିଶ୍ୱବିଦ୍ୟାଳୟରୁ ଇଲେଟ୍ରୋନିକ୍ସ ଇଞ୍ଜିନିୟରିଙ୍ଗ୍ ଡିଗ୍ରୀ ହାସଲ କଲା ।

ଏବେ ହାମାନା ହ୍ରଦ ପାଖରେ ଥିବା ଗୋଟିଏ ବିରାଟ ଇଲେକ୍‌ଟ୍ରୋନିକ୍ସ କମ୍ପାନୀରେ ସେ ଜଣେ ମ୍ୟାନେଜର । କର୍ମଗ୍ରାରୀମାନଙ୍କ ଭଲ ମନ୍ଦ ବୁଝିବା ତା'ର ଦାୟିତ୍ୱ । ସମସ୍ତଙ୍କର ଅଭିଯୋଗ, ଅସୁବିଧା ଓ ଗଣ୍ଡଗୋଳର ସମାଧାନ ପାଇଁ ସେ ଚେଷ୍ଟା କରେ । ସେ ନିଜେ ଅନେକ ଅସୁବିଧାରେ ବଢ଼ିଥିବାରୁ ଅନ୍ୟ ଲୋକଙ୍କ ଅସୁବିଧାକୁ ବି ଭଲ ବୁଝିପାରେ । ଏହାଛଡ଼ା ତା'ର ଖୁସ୍‌ମିଜାଜ୍ ଓ ଆକର୍ଷଣୀୟ ବ୍ୟକ୍ତିତ୍ୱ ତା' କାମରେ ବେଶ୍ ସାହାଯ୍ୟ କରେ । ଜଣେ କାରିଗରୀ ବିଶେଷଜ୍ଞ ଭାବେ ସେ ବିଭିନ୍ନ ଜଟିଳ ଯନ୍ତ୍ରପାତି ବିଷୟରେ ଯୁବକମାନଙ୍କୁ ତାଲିମ ଦିଏ ।

ମୁଁ ତାକାହାଶି ଓ ତା' ସ୍ତ୍ରୀକୁ ଦେଖିବା ପାଇଁ ହାମାନାକୁ ଯାଇଥିଲି । ତା' ସ୍ତ୍ରୀ ଜଣେ ଭଦ୍ରମହିଳା ଓ ତା'କୁ ଠିକ୍ ବୁଝିପାରିଛନ୍ତି । ସେ ତୋମୋଏ ବିଷୟରେ ଏତେ ଶୁଣିଛନ୍ତି ଯେ ସେ ନିଜେ ସେଠାକୁ ଯାଇଥିଲା ଭଳି ମନେ କରନ୍ତି । ସେ ମୋତେ ନିଶ୍ଚିନ୍ତ କରାଇଲେ ଯେ ଗେଡା ବୋଲି ତାକାହାଶି ମନରେ ଟିକିଏ ବି ଅବଶୋଷ ନାହିଁ । ମୁଁ ନିଶ୍ଚିତ ଯେ ସେ ପୂରା ଠିକ୍ ବୁଝିଛନ୍ତି । ତା' ମନରେ ଯଦି ହତାଶା ଥା'ନ୍ତା ତେବେ ସେହି ସମ୍ମାନଜନକ ସ୍କୁଲ ଓ ବିଶ୍ୱବିଦ୍ୟାଳୟରେ ଚଳିବା ତା' ପାଇଁ କଷ୍ଟକର ହୋଇପଡ଼ିଥା'ନ୍ତା । ସେ ଏବେ ମାନବ ସମ୍ବଳ ବିଭାଗରେ ଯେପରି କାମ କରୁଛି ସେପରି କଦାପି କରିପାରି ନଥା'ନ୍ତା ।

ତୋମୋଏରେ ତା'ର ପ୍ରଥମ ଦିନ ବିଷୟରେ ସେ କୁହେ ଯେ ସେଠାରେ ଶାରୀରିକ ଅସୁବିଧା ଥିବା ଆଉ କେତେ ପିଲାଙ୍କୁ ଦେଖି ତାକୁ ବେଶ୍ ଆରାମ ଲାଗିଲା । ସେହି ମୁହୂର୍ତ୍ତରୁ ତା'ର ସବୁ ଶଙ୍କା ଉଭେଇ ଗଲା । ସେଠି ତା'ର ଦିନଗୁଡ଼ିକୁ ଏତେ

ଉପଭୋଗ କଲା ଯେ ଦିନେ ବି ସେ ଘରେ ରହିବାକୁ ଚାହିଁ ନଥିଲା । ପ୍ରଥମ କରି ଲଙ୍ଗଳା ହୋଇ ପୋଖରୀରେ ପହଁରିବାବେଳେ ତାକୁ ବଡ ଲାଜ ଲାଗିଲା । କିନ୍ତୁ ଗୋଟାକ ପରେ ଗୋଟିଏ ଜାମା ଖୋଲିବା ସହିତ ତା'ର ଲାଜ ବି ଟୁକୁରା ଟୁକୁରା ହୋଇ ବୁଡିଗଲା । ଏପରି ବି ହେଲା ଯେ ଖାଇବାବେଳେ ଧାଡି ଆଗରେ ଠିଆ ହୋଇ ସେ ଭାଷଣ ଦେଇପାରିଲା ।

ଅଧିକ ଉଚ୍ଚ ଡେଇଁବା ପାଇଁ ଶ୍ରୀ କୋବାୟାଶି ତାକୁ ଉତ୍ସାହିତ କରୁଥିଲେ, ତାହା ସେ ବର୍ଣ୍ଣନା କରୁଥିଲା । ଶ୍ରୀ କୋବାୟାଶି ତାକୁ ସବୁବେଳେ କହୁଥିଲେ ଯେ ସେ ନିଶ୍ଚୟ ପାରିବ । ଅବଶ୍ୟ ସେ ଏବେ ସନ୍ଦେହ କରୁଛି ଯେ ଶ୍ରୀ କୋବାୟାଶି ଶେଷ ମୁହୂର୍ତ୍ତରେ ତାକୁ ହାତରେ ଉଠାଇ ଦେଉଥିଲେ । କିନ୍ତୁ ସେ ଜାଣୁଥିଲା ଯେ ସେ ନିଜେ ହିଁ ଏହା କରିପାରିଛି । ଶ୍ରୀ କୋବାୟାଶି ତାକୁ ଆତ୍ମବିଶ୍ୱାସ ଆଣି ଦେଲେ ଓ ସଫଳତାର ଅପୂର୍ବ ଆନନ୍ଦ ଚଖାଇ ଦେଲେ । ଯେତେବେଳେ ବି ସେ ପଛରେ ଲୁଚିବାକୁ ଚେଷ୍ଟା କରୁଥିଲା, ପ୍ରଧାନ ଶିକ୍ଷକ ତାକୁ ଆଗକୁ ନେଇ ଆସୁଥିଲେ ଯେପରି ସେ ଜୀବନକୁ ସବୁବେଳେ ଭଲ ଅର୍ଥରେ ଗ୍ରହଣ କରିବ । ଏବେ ବି ତା'ର ମନେଅଛି ଏତେ ପୁରସ୍କାର ପାଇଲାବେଳେ ସେ କି ଆନନ୍ଦ ପାଇଥିଲା । ତୋମୋଏର ସ୍ମୃତିଚାରଣ କଲାବେଳେ ସବୁବେଳପରି ତା' ଆଖି ଦୁଇଟା ଝଲସି ଉଠୁଥାଏ ଓ ସେ ଉଲ୍ଲସି ଉଠୁଥାଏ ।

ତାକାହାଶିକୁ ଏପରି ଏକ ସୁନ୍ଦର ମଣିଷ କରାଇବା ଦିଗରେ ତା'ର ଘରର ପରିବେଶ ବି ଖୁବ୍ ଉପଯୋଗୀ ହୋଇଛି । ତଥାପି ଏଥିରେ ଟିକିଏ ବି ସନ୍ଦେହ ନାହିଁ ଯେ ଶ୍ରୀ କୋବାୟାଶି ଅତି ଦୂରଦୃଷ୍ଟି ସହିତ ଆମ ସମସ୍ତଙ୍କର ଯତ୍ନ ନେଉଥିଲେ । ଯେପରି ମୋତେ ସେ ସବୁବେଳେ କହୁଥିଲେ, ''ତୁମେ ଜାଣିଛ ତ, ତୁମେ ସତରେ ଜଣେ ସୁନା ଝିଅ ।'' ସେପରି ତାକାହାଶିକୁ ସେ କହୁଥିଲେ ''ତୁମେ ନିଶ୍ଚୟ ପାରିବ ।'' ଏହା ତା' ଜୀବନକୁ ଗଢି ତୋଳିଥିଲା ।

ମୁଁ ହାମାମାତ୍‌ସୁ ଛାଡିଲାବେଳେ ତାକାହାଶି ମୋତେ ଆଉ ଗୋଟିଏ କଥା କହିଲା ଯାହା ମୁଁ ପୂରା ଭୁଲିଯାଇଥିଲି । ବେଳେବେଳେ ତୋମୋଏକୁ ଯିବା ବାଟରେ ଅନ୍ୟ ସ୍କୁଲର ପିଲାମାନେ ତାକୁ ଚିଡାଉ ଥିଲେ ଓ ଭିଡା ଓଟରା କରୁଥିଲେ । ସେ ହତାଶ ହୋଇ ସ୍କୁଲରେ ପହଞ୍ଚିଲେ କିଏ ଏଭଳି କରିଛି ମୁଁ ପଚାରି ବୁଝୁଥିଲି । ଆଉ ଆଖି ପିଛୁଳାକେ ମୁଁ ଫାଟକ ଟପି ଯାଉଥିଲି । କିଛି ସମୟ ପରେ ମୁଁ ଦୌଡି ଦୌଡି ଫେରେ ଓ ତାକୁ କୁହେ ଯେ ଏବେ ସେମାନେ ଆଉ କିଛି ଅସୁବିଧା କରିବେ ନାହିଁ । ''ସେବେ ତୁ ମତେ କେତେ ଖୁସି କରୁଥିଲୁ,'' କହି ସେ ବିଦାୟ ନେଲା । ମୁଁ ଏ କଥା ଭୁଲିଯାଇଥିଲି । ଏକଥା ମନେ ରଖିଥିବାରୁ ତତେ ଧନ୍ୟବାଦ ତାକାହାଶି ।

## *ମିୟୋ-ଚ୍ୟାନ୍ (ମିୟୋ କାନେକୋ)*

ଶ୍ରୀ କୋବାୟାଶିଙ୍କ ତୃତୀୟ ଝିଅ, ମିୟୋ-ଚ୍ୟାନ୍, କୁନି-ତାଚି ସଙ୍ଗୀତ ମହାବିଦ୍ୟାଳୟର ଶିକ୍ଷା ବିଭାଗରୁ ସ୍ନାତକ ପାଶ୍ କଲା । ଏବେ ସେ ସେହି ମହାବିଦ୍ୟାଳୟ ସହିତ ଥିବା ପ୍ରାଥମିକ ସ୍କୁଲରେ ସଙ୍ଗୀତ ଶିଖାଉଛି । ତା' ବାପାଙ୍କ ପରି ସେ ସାନପିଲାଙ୍କୁ ପଢାଇବାକୁ

ଭଲପାଏ । ତାକୁ ତିନି ବର୍ଷ ବେଳଠୁ ଶ୍ରୀ କୋବାୟାଶି ଲକ୍ଷ୍ୟ କରୁଥିଲେ ଗୀତ ସହ ସେ କିପରି ତାଳ ଦେଇ ଘୁଲୁଛି ଓ ଦେହକୁ ହଲାଉଛି; ସେ କିପରି କଥା କହିଶିଖୁଛି । ପିଲାଙ୍କୁ କିଛି ଶିଖାଇବାରେ ଏହି କଥା ସବୁ ଶ୍ରୀ କୋବାୟାଶିଙ୍କୁ ସାହାଯ୍ୟ କରୁଥିଲା ।

## *ସାକୋ ମାତ୍ସୁୟାମା (ଏବେ ଶ୍ରୀମତୀ ସାଇତୋ)*

ତୋମୋଏରେ ମୋର ପ୍ରଥମ ଦିନରେ ସାକୋ-ଖ୍ୟନ୍ ବଡ ବଡ ଆଖି ଥିବା ସେ ଝିଅଟି-ଠେକୁଆ ଚିତ୍ର ଥିବା ଫ୍ରକ୍‌ଟିଏ ପିନ୍ଧିଥିଲା । ତୋମୋଏ ପରେ ସେ ଏବେକାର ମିତା ହାଇସ୍କୁଲକୁ ଗଲା । ସେ ସମୟରେ ସେଠାରେ ଜାଗା ପାଇବା ଝିଅମାନଙ୍କ ପାଇଁ କଷ୍ଟକର ଥିଲା । ପରେ ସେ ଟୋକିଓ ମହିଳା ଖ୍ରୀଷ୍ଟିଆନ୍ ବିଶ୍ୱବିଦ୍ୟାଳୟରେ ଇଂରାଜୀ ବିଭାଗରେ ପଢିଲା । ପଢାସାରି ସେ ଜଣେ ଇଂରାଜୀ ଶିକ୍ଷକ ହେଲା ଓ ଏବେ ବି ଅଛି । ତାଙ୍କର ଗ୍ରୀଷ୍ମ ଶିବିରରେ ସେ ତା'ର ତୋମୋଏର ଅନୁଭୂତିକୁ ଭଲ କାମରେ ଲଗାଉଛି ।

ଜାପାନ୍ ଆଲ୍‌ପାସ୍ ପର୍ବତ ଶ୍ରେଣୀ ହୋତାକୀ ଶୃଙ୍ଗ ଚଢିଲା ବେଳେ ଭେଟିଥିବା ଜଣେ ପୁଅକୁ ସେ ବାହାହେଲା । ସେମାନେ ତାଙ୍କର ପୁଅର ନାଁ ରଖିଲେ ୟାସୁତାକା । ଯେଉଁ ପାହାଡ ଚଢିଲା ବେଳେ ସେମାନେ ପରସ୍ପରକୁ ଭେଟିଥିଲେ ପୁଅ ନାଁର ପଛ ଅଧାଟି ତାହାକୁ ସୂଚାଏ ।

## *ତାଇଚୀ ୟାମାନୋଉଚୀ*

ତାଇ-ଖ୍ୟନ୍ ମୋତେ ବାହା ହେବାକୁ ଯିଏ ମନା କରିଥିଲା, ଜାପାନର ଜଣେ ଆଗୁଆ ପଦାର୍ଥବିଜ୍ଞାନୀ ହେଲା । ସେ ଏବେ ଆମେରିକାରେ ଅଛି (ବ୍ରେନ୍ -ଡ୍ରେନ୍‌ର ଏକ ଉଦାହରଣ) । ଟୋକିଓ ଶିକ୍ଷା ବିଶ୍ୱବିଦ୍ୟାଳୟର ବିଜ୍ଞାନ ବିଭାଗରୁ ସେ ସ୍ନାତକ ପାଠ ସାରିଲା । ସ୍ନାତକୋତ୍ତର ଶିକ୍ଷା ପରେ ଫୁଲ୍‌ବ୍ରାଇଟ୍ ବୃତ୍ତି ପାଇ ସେ ଆମେରିକା ଗଲା ଓ ରଚେଷ୍ଟର ବିଶ୍ୱବିଦ୍ୟାଳୟରୁ ପାଞ୍ଚବର୍ଷ ପରେ ଡକ୍ଟରେଟ୍ ଉପାଧି ପାଇଲା । ସେ ସେଠାରେ ରହି ଉଚ୍ଚଶକ୍ତି ପଦାର୍ଥ ବିଜ୍ଞାନରେ ଗବେଷଣା କଲା । ଏବେ ସେ ଇଲିନଏ ରାଜ୍ୟରେ ଥିବା ଫର୍ମି ନ୍ୟାସନାଲ୍ ଆକ୍ସିଲରେଟର୍ (ପୃଥିବୀର ବୃହତ୍ତମ) ଗବେଷଣାଗାରରେ ଉପନିର୍ଦ୍ଦେଶକ ଅଛି । ଏହି ଗବେଷଣାଗାରରେ ଆମେରିକାର ତେପନଟି ବିଶ୍ୱବିଦ୍ୟାଳୟର ପ୍ରତିଭାବାନ ଲୋକମାନେ କାମ କରନ୍ତି । ଏହି ବିଶାଳ ଅନୁଷ୍ଠାନରେ ଶହେ ପଇଁଖ୍ରିଶ ଜଣ ପଦାର୍ଥବିଜ୍ଞାନୀ ଓ ଚଉଦ ଶହ କାରିଗରୀ କର୍ମୀ ଅଛନ୍ତି । ଏଥିରୁ ଆପଣ ବୁଝିପାରୁଥିବେ ତାଇ-ଖ୍ୟନ୍ କେତେ ବିଚକ୍ଷଣ । ପାଞ୍ଚ ବର୍ଷ ତଳେ ଏହି ଗବେଷଣାଗାରଟି ପାଞ୍ଚ ଶହ ମିଲିଅନ୍ ଇଲେକ୍‌ଟ୍ରନ୍ ଭୋଲ୍ଟର ଉଚ୍ଚଶକ୍ତି ରଶ୍ମି ସୃଷ୍ଟିକରି ପୃଥିବୀ ସାରା ନାଁ କଲା ।

ନିକଟରେ ତାଇ-ଖ୍ୟନ୍ କଲମ୍ବିଆ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକଙ୍କ ସହ ମିଶି ଉପ୍‌ସିଲନ୍ ନାମକ କିଛି ଜିନିଷ ଆବିଷ୍କାର କରିଛି । ମୁଁ ନିଶ୍ଚିତ ଯେ ତାଇ-ଖ୍ୟନ୍

ଦିନେ ନୋବେଲ୍ ପୁରସ୍କାର ପାଇବ ।

ତାଇ-ଗ୍ୱନ୍‌ର ଚେଷ୍ଟର ବିଶ୍ୱବିଦ୍ୟାଳୟରୁ ଗଣିତରେ ସ୍ନାତକ ପଢିଥିବା ଜଣେ ପ୍ରତିଭାବାନ ଝିଅକୁ ବାହା ହୋଇଛି । ତାଇ-ଗ୍ୱନ୍ ଯେ କୌଣସି ପ୍ରାଥମିକ ସ୍କୁଲରେ ପଢିଥିଲେ ବି ଏଭଳି ମସ୍ତିଷ୍କ ବଳରେ ବହୁତ ଉଚ୍ଚକୁ ଉଠି ପାରିଥା'ନ୍ତା । କିନ୍ତୁ ମୋର ଧାରଣା ଯେ ତୋମୋଏରେ ଥିବା ବ୍ୟବସ୍ଥା ଯେଉଁଠି ପିଲାମାନେ ନିଜ ମନ ମୁତାବକ ଧାରାରେ ବିଭିନ୍ନ ବିଷୟ ପଢୁଥିଲେ- ତା'ର ପ୍ରତିଭାକୁ ବଢାଇବାରେ ସାହାଯ୍ୟ କରିଥିଲେ । ସେ ଶ୍ରେଣୀରେ କ'ଣ କରୁଥିଲା ମୋର ଠିକ୍ ମନେ ନାହିଁ । କିନ୍ତୁ ସେ ସ୍ପିରିଟ୍ ବତୀ, ଫ୍ଲାସ୍କ, ପରଖନଳୀ, ଆଦି ଧରି କାମ କରିବା ଓ ଅତି କଷ୍ଟ ଦିଶୁଥିବା ବିଜ୍ଞାନ ଓ ପଦାର୍ଥ ବିଜ୍ଞାନ ବହି ପଢିବା କଥା ମୋର ମନେ ଅଛି ।

## କୁନିଓ ଓଏ

ଓଏ, ସେ ପୁଅଟି ଯେ ମୋ ବେଣୀକୁ ଟାଣି ଦେଇଥିଲା, ଏବେ ସେ ଜାପାନର ପୁଷ୍ପାଳୀ ବିଷୟରେ ସବୁଠାରୁ ବଡ ବିଶେଷଜ୍ଞ । କିଛି ପୁଷ୍ପାଳୀ ମୂଳର ଦାମ୍ କେତେ ଲକ୍ଷ ଟଙ୍କା ମଧ୍ୟ ହୁଏ । ତା'ର ଏ କାମଟି ଅତି ବିଶେଷ ପ୍ରକାରର । ତେଣୁ ତାକୁ ବହୁତ ଆଡେ ଖୋଜା ପଡେ । ସେ ସବୁବେଳେ ଜାପାନ ସାରା ବୁଲୁଥାଏ । ବହୁତ କଷ୍ଟରେ ତା'ର ବୁଲିବା ମଝିରେ ମୁଁ ତାକୁ ଫୋନ୍‌ରେ ଯୋଗାଯୋଗ କରିପାରିଲି ଓ ଅଳ୍ପ କଥା ହେଇଥିଲି । ତାହା ଏହିପରି ଥିଲା । ''ତୋମୋଏ ପରେ ତୁ ଆଉ କେଉଁଠି ପଢିଲୁ ?'' ''ମୁଁ ଆଉ ପଢି ନାହିଁ ।'' ''ତୁ ଆଉ କେଉଁଠି ପଢିଲୁନି ? ତାହେଲେ କେବଳ ତୋମୋଏ ହିଁ ତୋର ଏକମାତ୍ର ସ୍କୁଲ ?'' ''ହଁ । ତା' ଠିକ ।'' ''ଆଶ୍ଚର୍ଯ୍ୟ କଥା । ଏପରିକି ତୁ ମାଧ୍ୟମିକ ସ୍କୁଲକୁ ବି ଗଲୁନି ?''

''ହଁ ଗଲି । ଏଇଟା ସେକଣ୍ଡରୀ ସକ୍ସୁଲରେ ମୁଁ କିଛି ମାସ କଟାଇଛି, କିନ୍ତୁ ଯୁଦ୍ଧ ଯୋଗୁଁ ସେ ଜାଗା ଖାଲି କରାଗଲା । ଆମେ କ୍ୟୁସୁ ଗ୍ୱଲିଗଲୁ ।''

''କିନ୍ତୁ ମାଧ୍ୟମିକ ସ୍କୁଲପାଠ ସାରିବା କଣ ବାଧ୍ୟତାମୂଳକ ନୁହେଁ ?''

''ହଁ ବାଧ୍ୟତାମୂଳକ, କିନ୍ତୁ ମୁଁ ସାରିନାହିଁ ।''

ମୁଁ ଭାବିଲି ''ବାଃ ଏ ପିଲାଟା କେତେ ଭାଗ୍ୟବାନ ସତେ !'' ଯୁଦ୍ଧ ଆଗରୁ ଓଏର ବାପା ଗୋଟିଏ ବିରାଟ ବଗିଗ୍ୱର ମାଲିକ ଥିଲେ । ଦକ୍ଷିଣ ପଶ୍ଚିମ ଟୋକିଓର ତୋଦୋରୋକି ଅଞ୍ଚଳକୁ ଏହା ମାଡି ରହିଥିଲା । କିନ୍ତୁ ଯୁଦ୍ଧବେଳେ ବୋମା ମାଡରେ ତାହା ପୂରା ନଷ୍ଟ ହୋଇଗଲା । ଆମର ବାକି କଥାବାର୍ତ୍ତାରୁ ଆପଣ ଜାଣିପାରିବେ ଓଏ କେତେ ସ୍ଥିର ପ୍ରକୃତିର ମଣିଷ ଥିଲା । ସେ କଥାର ବିଷୟ ବଦଳାଇ ପଗ୍ୱରିଲା ''ତୁ ଜାଣିଛୁ କେଉଁ ଫୁଲର ମହକ ସବୁଠୁ ବେଶୀ ? ମୋତେ ଲାଗୁଛି ଏହା ଚୀନ୍ ବସନ୍ତ ପୁଷ୍ପାଳୀ (ସିମ୍ବିଡିଅମ୍ ଭିତରସେନସ୍) । ଏହା ସହିତ କୌଣସି ଅତର ଏହାର ତୁଳନାରେ ଆସିବ ନାହିଁ ।''

''ଏହା କ'ଣ ବହୁତ ଦାମ ?''

''କେତେକ ଦାମୀ ଓ କେତେକ ନୁହେଁ ।''

''ଏହା ଦେଖିବାକୁ କିଭଳି ?''

''ଦେଖିବାକୁ ଏହା କିଛି ବିଶେଷ ନୁହେଁ । କହିବାକୁ ଗଲେ ବେଶ୍ ମାଡା । କିନ୍ତୁ ଏହା ହିଁ ତାହାର ଅସଲ ଗୁଣ ।''

ତୋମୋଏ ବେଳଠୁ ସେ ବିଶେଷ କିଛି ବଦଳି ନାହିଁ । ଓଏର ହାଲୁକା ସ୍ୱରରୁ ମୁଁ ଭାବିଲି, ''ସେ କୌଣସି ମାଧ୍ୟମିକ ସ୍କୁଲରେ ପଢ଼ିନି ବୋଲି ତା'ର ଟିକେ ବି ଚିନ୍ତା ନାହିଁ! ସେ ତା' ମନ ମୁତାବକ କାମ କରୁଛି ଓ ପ୍ରକୃତରେ ନିଜ ଉପରେ ପୂରା ଭରସା ରଖିଛି ।'' ମୁଁ ମାନିଗଲି ।

## *କାଜୁଓ ଆମଦେରା*

ଆମାଦେରା, ଯେ ପଶୁପକ୍ଷୀଙ୍କୁ ଭଲ ପାଉଥିଲା, ଚାହୁଁଥିଲା ଜଣେ ପଶୁଡାକ୍ତର ହେବ ଓ ଗୋଟିଏ ଫାର୍ମ କରିବ । କିନ୍ତୁ ଦୁର୍ଭାଗ୍ୟବଶତଃ ତା' ବାପା ହଠାତ୍ ମରିଗଲେ, ଆଉ ହଠାତ୍ ତା'ର ଜୀବନଧାରା ପୂରା ବଦଳିଗଲା । ନିହନ୍ ବିଶ୍ୱବିଦ୍ୟାଳୟର ପଶୁପାଳନ ଓ ଚିକିତ୍ସା ପାଠ ଛାଡି ତାକୁ କେଉଁ ହାସପାତାଳରେ ଗୋଟିଏ ଚାକିରୀ କରିବାକୁ ପଡିଲା । ଏବେ ସେ ଆତ୍ମ-ରକ୍ଷା ବାହିନୀର କେନ୍ଦ୍ରୀୟ ହାସପାତାଳରେ ଗୋଟିଏ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପଦବୀରେ ରହିଅଛି ।

## *ଆଇକୋ ସାଇଶୋ (ଏବେ ଶ୍ରୀମତୀ ତାନାକା)*

ଆଇକୋ ସାଇଶୋ, ଯାହାର ଅଜା ଥିଲେ ଆଡ୍‌ମିରାଲ୍ ତୋଗୋ, ଆଓୟାମା ଗାକୁଇନ୍‌ର ପ୍ରାଥମିକ ସ୍କୁଲରୁ ତୋମୋଏକୁ ଆସିଥିଲା । ସେତେବେଳେ ମୁଁ ତାକୁ ଜଣେ ଅତି ଶାନ୍ତ ଓ ଜଣେ ସମ୍ଭ୍ରାନ୍ତ ମହିଳା ବୋଲି ଭାବୁଥିଲି । ତା' ବାପା ତୃତୀୟ ଗାର୍ଡ ରେଜିମେଣ୍ଟରେ ଜଣେ ମେଜର ଥିଲେ ଓ ମାନ୍‌ଚୁରିଆ ଯୁଦ୍ଧ ବେଳେ ସେ ମରିଯାଇଥିଲେ । ବୋଧେ ତାଙ୍କୁ ହରାଇ ସେ ଏପରି ଜଣାପଡୁଥିଲା ।

କାମାକୁରା ବାଳିକା ଉଚ୍ଚ ବିଦ୍ୟାଳୟରୁ ସ୍ନାତକ ପଢ଼ିସାରିବା ପରେ ଆଇକୋ ଜଣେ ସ୍ଥପତିଙ୍କୁ ବାହା ହେଲା । ଏବେ ତା'ର ଦୁଇପୁଅ ବଡ ହୋଇ ବ୍ୟବସାୟ କରୁଛନ୍ତି । ଏବେ ସେ ତା'ର ଅଧିକାଂଶ ସମୟ କବିତା ଲେଖିବାରେ ବିତାଉଛି ।

ମୁଁ କହିଲି, ''ତେବେ ତୁ ଏବେ ତୋର ବିଖ୍ୟାତ ମାଉସୀ, ଯେ ସମ୍ରାଟ ମେଇଜିଙ୍କ ଦରବାରରେ ଜଣେ କବି ଥିଲେ - ଙ୍କ ପରମ୍ପରାକୁ ବଞ୍ଚାଇ ରଖୁଛୁ ।''

ସେ ଲାଜରେ ହସି କହିଲା, ''ଆରେ ନା.. ନା.. ।''

''ତୁ ଏବେ ବି ତୋମୋଏରେ ଥିଲା ପରି ନିରାଡମ୍ବର ଅଛୁ,'' ମୁଁ କହିଲି, ''ଜଣେ ଭଦ୍ର ମହିଳାଙ୍କ ପରି ।'' ଏହାର ଉତ୍ତରରେ ସେ କହିଲା ''ଜାଣିଛୁ ନାଟକରେ ବେଙ୍କେଇର ଅଭିନୟ କଲାବେଳେ ମୋର ଯେଭଳି ମୋଟାସୋଟା ଚେହେରା ଥିଲା ଏବେ ବି ସେଭଳି ଅଛି ।'' ତା' ସ୍ୱରରୁ ମୋତେ ଲାଗୁଥିଲା ତା'ର ପରିବାର କେତେ ସୁଖୀ ଓ ସୁନ୍ଦର ହୋଇ ନଥିବ ।

### କାଇକୋ ଆଓକି (ଏବେ ଶ୍ରୀମତୀ କୁଷାକାରା)

କାଇକୋ-ଗ୍ୱନ୍, ଯାହାର କୁକୁଡା ଛୁଆଗୁଡିକ ଉଡି ପାରୁଥିଲେ, ଏବେ କାଇକୋ ବିଶ୍ୱବିଦ୍ୟାଳୟର ପ୍ରାଥମିକ ସ୍କୁଲର ଜଣେ ଶିକ୍ଷକକୁ ବାହା ହୋଇଛି । ତା' ଝିଅ ବି ବାହା ହୋଇ ସାରିଲାଣି ।

### ୟୋଇଚି ମିଗିତା

ମିଗିତା, ଯେଉଁ ପୁଅଟି କଥା ଦେଇଥିଲା ଯେ ଶବସତ୍କାର ଜଳଖିଆ ଆଣିଦେବ, ଫଳ ଗ୍ୱଷରେ ଡିଗ୍ରୀ ପାଇଲା, କିନ୍ତୁ ସେ ଚିତ୍ର ଆଙ୍କିବାକୁ ବେଶୀ ଭଲ ପାଉଥିଲା ତେଣୁ ସେ ମୁସାଶିନୋ ଗ୍ୱରୁ କଳା କଲେଜରେ ପଢିବାକୁ ଗଲା ସେ ଏବେ ନିଜର ଗ୍ରାଫିକ୍ ଡିଜାଇନ୍ କମ୍ପାନୀ ଚଳାଉଛି ।

### ରୟୋ-ଗ୍ୱନ୍

ମାଳୀ ରୟୋ-ଗ୍ୱନ୍ ଯୁଦ୍ଧକୁ ଯାଇଥିଲେ ଓ ସୁସ୍ଥ ଅବସ୍ଥାରେ ଘରକୁ ଫେରିଲେ । ପ୍ରତିବର୍ଷ ନଭେମ୍ବର ତିନି ତାରିଖର ତୋମୋଏ ମିଳନୀରେ ସେ କେବେ ବି ଅନୁପସ୍ଥିତ ରହୁନଥିଲେ ।

*ତୋ'ତୋ-ଗ୍ୱାନ୍* ଗୋଟିଏ କୁନି ଝିଅର ମରମଭେଦୀ ସତ କାହାଣୀ । କିନ୍ତୁ ଅନେକ ଦୃଷ୍ଟିରୁ ଏହା କାହାଣୀଠାରୁ ବହୁତ କିଛି ଅଧିକ । ବର୍ତ୍ତମାନର ନିରସ ଶିକ୍ଷା ବ୍ୟବସ୍ଥା ଉପରେ ଏହା ଏକ ଗଭୀର ଅଭିଯୋଗ ତଥା ମାର୍ଗଦର୍ଶକ । ଶିକ୍ଷାବିତ୍, ଶିଶୁ ମନସ୍ତତ୍ତ୍ୱବିତ୍ ଏବଂ ସମାଜବିଜ୍ଞାନୀ ଆଦିଙ୍କ ପାଇଁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ସନ୍ଦର୍ଭ । କିନ୍ତୁ ପିଲା, ବଡ, ବାପା ମା', ଶିକ୍ଷକ ଶିକ୍ଷୟିତ୍ରୀ ଓ ସବୁ ଶ୍ରେଣୀର ଜନସାଧାରଣଙ୍କ ପାଇଁ ଏହା ଏକ ସରସ ସୁନ୍ଦର ଜୀବନ୍ତ କାହାଣୀ । ସନ୍ଦର୍ଭ ହେଉ ବା କାହାଣୀ ହେଉ ପିଲାଙ୍କୁ ତାଙ୍କ ଶୈଶବର ଖୁସି ଆଣିଦେବାରେ, ଶିକ୍ଷାକୁ ପ୍ରାଣବନ୍ତ କରିବାରେ ଏବଂ ଭବିଷ୍ୟତର ମଣିଷକୁ ଦରଦୀ କରି ଗଢିବା ଦିଗରେ *ତୋ'ତୋ-ଗ୍ୱାନ୍* ର ଧାରା ସଭିଙ୍କୁ ଆଗେଇ ନେଇପାରିବ ।

ବହିଟିର ଲେଖିକା ତେତ୍‌ସୁକୋ କୁରୋୟାନାଗି ଜାପାନର ଜଣେ ଅତି ଲୋକପ୍ରିୟ ଟିଭି ତାରକା । ସେ ଟୋକିଓ ସହରରେ ଜନ୍ମ ହୋଇଥିଲେ ଓ ଟୋକିଓ ସଙ୍ଗୀତ ମହାବିଦ୍ୟାଳୟରେ 'ଅପେରା' (ଗୀତିନାଟ୍ୟ) ଗାୟିକା ହେବାପାଇଁ ତାଲିମ ନେଇଥିଲେ । କିନ୍ତୁ ସେ ଅଭିନେତ୍ରୀ ପେଷା ବାଛିଲେ ଏବଂ 1972 ମସିହାରେ ନିଉୟର୍କଠାରେ ଅଭିନୟ ଶିକ୍ଷା କଲେ । 1975 ମସିହାରୁ ସେ 'ତେତ୍‌ସୁକୋ କୋଠରୀ' ନାମକ ଦୈନିକ ଟିଭି ଆଳାପ କାର୍ଯ୍ୟକ୍ରମ ଚଳାଇ ଆସୁଛନ୍ତି । ଏହା ଏବେ ଟିଭିର ସର୍ବୋଚ୍ଚ ପୁରସ୍କାର ପାଇଛି ଏବଂ ତାଙ୍କର ଅନ୍ୟ କାର୍ଯ୍ୟକ୍ରମଗୁଡିକ ଭଳି ଦର୍ଶକଙ୍କର ଅତି ପ୍ରିୟ ହୋଇପାରିଛି । ସମାଜ କଲ୍ୟାଣ ତାଙ୍କର ବ୍ରତ । ତାଙ୍କ ବହି ଲେଖା ପ୍ରାପ୍ୟରେ ଚାଲୁଥିବା 'ତୋତୋ ପ୍ରତିଷ୍ଠାନ' ବଧିର ଅଭିନେତାଙ୍କୁ ପେଷାଦାର ତାଲିମ ଦିଏ । ସେ 'ପାଣ୍ଡା ଓ ମୁଁ' ଓ 'ସପ୍ରେମ ନିଉୟର୍କରୁ' ନାମକ ଆଉ ଦୁଇଟି ବହି ଲେଖିଛନ୍ତି । ସେ 'ବିଶ୍ୱ ବନ୍ୟପ୍ରାଣୀ ପାଣ୍ଠି-ଜାପାନ ଶାଖା'ର ଜଣେ ନିର୍ଦ୍ଦେଶକ ଏବଂ ୟୁନିସେଫ୍‌ର ଜଣେ 'ଶୁଭେଚ୍ଛୁ ଦୂତ' । ବହିଟିର ଓଡିଆ ଅନୁବାଦକ ବିନୟ କୃଷ୍ଣ ପଟ୍ଟନାୟକ ଓ ନିଖିଳ ମୋହନ ପଟ୍ଟନାୟକ ଭୁବନେଶ୍ୱରର ସୃଜନୀକା ଅନୁଷ୍ଠାନ ମାଧ୍ୟମରେ ବୈଜ୍ଞାନିକ ଦୃଷ୍ଟିକୋଣର ପ୍ରସାର ପାଇଁ ଉଦ୍ୟମଶୀଳ ।



ଟ ୩୪.୦୦

ନ୍ୟାସନାଲ ବୁକ ଟ୍ରଷ୍ଟ, ଇଣ୍ଡିଆ